# ବନ୍ଦ ଘରର କବାଟ

**ଶ୍ରୀମତୀ ମନୋରମା ମହାପାତ୍ର**
ଅଧ୍ୟାପିକା, ଅର୍ଥନୀତି ବିଭାଗ
ରେଭେନ୍ସା ମହାବିଦ୍ୟାଳୟ, କଟକ

# ବନ୍ଦ ଘରର କବାଟ

ଶ୍ରୀମତୀ ମନୋରମା ମହାପାତ୍ର

ପ୍ରକାଶକ :
**ନାଲନ୍ଦା**
ବିନୋଦବିହାରୀ, କଟକ-୨

ପ୍ରଥମ ନାଲନ୍ଦା ସଂସ୍କରଣ : ୧୯୭୯

ମୁଦ୍ରଣ :
**ବୀଣାପାଣି ପ୍ରିଣ୍ଟର୍ସ**
କଟକ-୨

ମୂଲ୍ୟ—ପନ୍ଦର ଟଙ୍କା

**Banda Gharar Kabat**

**Smt. Manorama Mohapatra**

*Published by :*
**Nalanda**
Binodebehari, Cuttack-2

1st Nalanda Edition : 1979

*Printed by :*
**Binapani Printers**
Cuttack-2

Price : **Rupees Fifteen**

## ମୋ କଥା

ଏଇ ମଣିଷ ମନ ଭିତରେ ଅନେକ କୋଠରୀ, ଶ୍ରେଷ୍ଠ ଶ୍ରେଷ୍ଠ କେତେ-ଜାଗାକା ଚୂଉଁ କଉଡ଼ି ଘର । ତା'ର ଭିତରେ କେତେ ଅନୁଭୂତି, ଯନ୍ତ୍ରଣା, ବେଦନା, ହର୍ଷ ବିଷାଦର ଅଭିନବ ତ୍ରିକୋଣ—ବିଚିତ୍ର ତାର ରୂପ—ବିପୁଳ ତାର ଚେତନା—ସେହି ଅଜସ୍ର ଘରର କବାଟ କ'ଣ କେବେ ଆପେ ଆପେ ମେଲା ହୋଇ-ଯାଏ ? ହଁ—କବାଟ ଅଛି ସବୁ ଘରେ—କେଉଁଠି ବା ଯାଉଁଳ କବାଟ—ମଜଭୁତ ଆ ଲୁହା ତାଲା ପଡ଼ିଛି—କିଏ ଖୋଲିବ ତାକୁ ? ନିଷିଦ୍ଧ ଦ୍ୱାର । ଆଉ କିଏ ଅଧା ଦେଇଆଉଜା କବାଟ । ହାତ ମାରିଲେ ଫିଟିଯାଏ—ଖୋଲିଯିବ—ଝଟକିବ ଗୋଟି-ଗୋଟି ହୋଇ ଗୋଟାପଣେ ସାତ ରାଜାର ମାଣିକ । କିଏ ବା ଦେଉରୀ କବାଟ । ଅଗ୍ନିକ ପବନ ବାଜିଲେ ଫିଟିଯିବ, ଝଟକିବ ବିକଳିଙ୍କ ରୂପ । ସେ କୋଠରୀ ଦେଖିବାର ଶକ୍ତି କାହିଁ ? ସେ ଅବରୁଦ୍ଧ ଅଧ୍ୟାୟକୁ ନିରୀକ୍ଷଣ କରିବାର ଦିବ୍ୟ ଦୃଷ୍ଟି—ଆଗ୍ରହ—ସାଧନା ପାଇଁ ଯେ ଅଫୁରନ୍ତ ତପସ୍ୟା ଲୋଡ଼ା ! ତପଃ କରିବାର ସଂକଳ୍ପ ନେଇ ମୁଁ ବିଫଳତା କି ସଫଳତା ଆଡ଼କୁ ପାହୁଣ୍ଡଟିଏ ଆଗେଇଛି ସେ କଥା କହିବେ ସେମାନେ, ଯେଉଁମାନେ "ବନ୍ଦ ଘରର କବାଟ" ପଢ଼ିବେ । କିନ୍ତୁ ଯେଉଁ-ମାନଙ୍କର ତ୍ୟାଗ ନିଷ୍ଠା ଶାନ୍ତ-ସମାହିତ ଜୀବନରେ ଅନୁକ୍ଷଣ ଝଂମୁ ଚଲ... ସାଧନା ମୋ ଭିତରେ ଏଇ ବନ୍ଦଘରର କବାଟରେ ହାତ ମାରିବାର ପରମ ଆକାଂକ୍ଷା ଜାଗ୍ରତ କରିଥିଲା, ଯେଉଁମାନେ ଆପଣା ଅନୁଭୂତି ଟିକେଟିକୁ ମୋ କଲମର କାଳିରେ ରୂପାନ୍ତର କରି ଅଲକ୍ଷ୍ୟରେ ଆଡ଼େଇ ହୋଇ ଠିଆହେଲେ, ସେହି ଉଜ୍ଜ୍ୱଳ ଅଧ୍ୟାୟର ପବିତ୍ର ଆଲୋକ ଝରଣାରେ ମୁଁ ଶୁଚି ସ୍ନାନ କଲି । ଦୁର୍ଯୋଗ୍ନାତ ଅଙ୍ଗ ସାହସ କଲି, ଅବରୁଦ୍ଧ କବାଟ ଖୋଲିବାର ପ୍ରୟାସ କଲି । ସନ୍ତର୍ପଣରେ ପାଦ ବଢେଇଲି; ସେମାନେ, ଯଉ ଯଉ ଆସୁଥିବା ଯୁଗର ଧ୍ୱଂସାବଶେଷ—ଦ୍ରୁତନଷ୍ଟ କରୁଥିବା ମୋର ବୋଉ, ଶାଶୁ, ବୃଦ୍ଧୀ ମାଆ—ସାର ମାଇଁ ଓ ଅନ୍ୟମାନେ । ଶୁଣ, ସେମାନଙ୍କ ବନ୍ଦଘରର କବାଟ କେହି ଖୋଲିଲେ ନାହିଁ । ହାତ ମାରିବାର ଚେଷ୍ଟା ବା କେତେ କଲେ ! ହୁଏତ ସେ ଅବରୁଦ୍ଧ ଅଜସ୍ର କବାଟ ଭିତରେ କେତେ ଯନ୍ତ୍ରଣା, କେତେ ସମ୍ଭାବନା, କେତେ ପୁଲକ, କେତେ ପ୍ରତ୍ୟୟ । କେତେ ପ୍ରାଣପ୍ରାଚୁର୍ଯ୍ୟ ଅନୁକ୍ଷଣ କମ୍ପନ ସୃଷ୍ଟି କରୁଥିବ—ଚାଲୁଥିବ ଅବିରତ ଭଙ୍ଗା ଗଢ଼ା । ସାତରାଜା ମାଣିକ ଦାଉ ଦାଉ ଝଟକୁଥିବ ! ଅଗ୍ନିକ ପବନରେ ଅରେ ଅଧେ ଫିଟିଥିଲା ସେ ଘରର କବାଟ । ସେ ଗନ୍ଧାଘରର ସମ୍ବାଦ, ସମ୍ବେଦନା, ଧୂପଦୀପ ମହକ ବହି ଆଣିଲା ବିଚିତ୍ର ରହସ୍ୟ । ଝଟକି ଉଠିଲା

ଜୀବନର ବିଚିତ୍ର କାରୁଣ୍ୟଭରା ବନ୍ଦିତ ରୂପ । ଚିତ୍ତରେ ଜାଗ୍ରତ ହେଲା ସଂଭ୍ରମ, ଶ୍ରଦ୍ଧା ପୁଣି ଅସରନ୍ତି ବେଦନା ! କେତୋଟି ବନ୍ଦୀଘରର କବାଟ ଖୋଲିବାର ପ୍ରୟାସ କରିଛି, କ୍ଳାନ୍ତିଗ୍ରସ୍ତ ପଦ—ଶିଥିଳ ହାତରେ ସନ୍ତର୍ପଣରେ ଖୋଲି ଯାହା ଦେଖିଛି ମେଲି ଧରିଛି । ଆହୁରି ବହୁ ଅନାବିଷ୍କୃତ ଅପୂର୍ବ ସମ୍ପଦ ଲୁକ୍କାୟିତ । ତେବେ ଏ ପବିତ୍ର ତୀର୍ଥସ୍ନାନର ସୁଯୋଗ ମତେ ଅଜାଣତରେ ଦେଇଥିଲେ ଯେଉଁ ଦୁଇ ନାରୀ ସେମାନେ ମୋର ଆଦର୍ଶର । ଜଣେ ମୋ'ର ବୋଉ—ସିଏ ମତେ ପୃଥିବୀକୁ ଆଣିଛି । ଆଉ ଜଣେ ମୋ'ର ବୋଉ—ସିଏ ମତେ ଜନ୍ମ ନ କରି ମଧ୍ୟ ଝିଅ ବୋଲି କୋଳକୁ ଟାଣି ନେଇଥିଲେ, ସେ ମୋ ଶାଶୂ ( ସିଏ ଆଜି ଛପା ଅକ୍ଷରରେ ମୋ ଲେଖା ଦେଖିବାକୁ ନାହାନ୍ତି ) । ସେ ଶତାବ୍ଦୀର ଜ୍ୱଳନ ପବିତ୍ରତା ଓ ସଂସ୍କୃତିର ଛଟା ତାଙ୍କ ମନର ପରସ୍ତ ପରସ୍ତରେ ଲେପି ହୋଇ ରହିଥିଲା । ସେ ଦୃଷ୍ଟି ସ୍ୱର୍ଣ୍ଣ ଗଙ୍ଗାସ୍ନାନର ପୁଣ୍ୟ ଆଣି ଦେଉଥିଲା । ସେହି ଆଦର୍ଶର କଣିକାଏ ପ୍ରତିବିମ୍ବିତ ହେଲେ ମୁଁ ହେବି ସାର୍ଥକ । ସେ ପରମ ଶ୍ରଦ୍ଧେୟା ମହୀୟସୀ ନାରୀ ସିଏ ଚିରକାଳ ଅନ୍ତରାଳରେ ରହି ଆପଣାକୁ ଜାଳି ଆଲୋକ ଦେଖାଇ ଦେଲେ—ତାଙ୍କ ଭିତରୁ ଜଣେ ନାହାନ୍ତି ସେ ମୋର ଶାଶୂ—ଆଉ ଜଣେ ଜୀବନର ଅପରାହ୍ନରେ ନିଜକୁ ଜାଳି ଆଲୋକ ଦେଉଛି । ସେହି ପବିତ୍ର ସ୍ମୃତି ଉଦ୍ଦେଶ୍ୟରେ 'ବନ୍ଦୀଘରର କବାଟ' ଅର୍ପଣ କରି ଆଶୀର୍ବାଦ ଭିକ୍ଷା କରୁଛି । ମତେ ଋଣରୁ ମୁକ୍ତ ହେବା ନିମନ୍ତେ ହେ ମୋର ବନ୍ଦିତା ନାରୀମାନେ ପାଥେୟ ଦିଅ ।

ବିନୀତା

**ଲେଖିକା**

ମୋର ପରମ ପୂଜ୍ୟା ଏକାନ୍ତ ସ୍ନେହମୟୀ

ଶାଶୁଙ୍କ ପବିତ୍ର ସ୍ମୃତି ଉଦ୍ଦେଶ୍ୟରେ

ଅର୍ପଣ କଲି

ସ୍ୱର୍ଗଧାମରୁ ସେହି ଅନାବିଲ ସ୍ନେହାଶିଷ ମୋ ଲେଖିକା ଜୀବନର ପାଥେୟ ହେଉ—

ବିନୀତା

**ଲେଖିକା**

## ॥ ଏଥିରେ ଅଛି ॥





## ଶ୍ରୀମତୀ ମନୋରମା ମହାପାତ୍ରଙ୍କ ପ୍ରକାଶିତ ରଚନାବଳୀ

- ଜୁଆର ଯେଉଁଠି ଉଠେ ( କବିତା ସଂକଳନ )
- ଏ ପୃଥିବୀ ଶରଶଯ୍ୟା ( ଗଳ୍ପ ସଂକଳନ )
- ବେଙ୍ଗମାନଙ୍କର ଅନଶନ ( ଶିଶୁମାନଙ୍କ ପାଇଁ କ୍ଷୁଦ୍ର ଗଳ୍ପ )

# ● ବନ୍ଦ ଘରର କବାଟ

ନିତୁକୁ ଆଜିକାଲି ଭାରି ଆଶ୍ଚର୍ଯ୍ୟ ଲାଗେ···

ସମସ୍ତେ ଘରେ ଥିବେ । ରମେନ୍ କାକା, ଦୀପକ୍ କାକା, ସ୍ୱରୂପ ଭାଇନା, ଆୟା ବି ଥିବ । ପୂଜାଙ୍କ ପ୍ରେମେଇ ଘରେ ଥିବ । ବୁଢ଼ା ହରିଆ ସୁକରଟା ମଧ୍ୟ ଏପଟ ସେପଟ ହେଉଥିବ ।

ଅଥଚ···

ସେ ଠିକ୍ ସେଇ ଏକକଣିଆ ଘରଟାରେ ବନ୍ଦ ହୋଇ ରହିବ ।

"କାହିଁକି ???"

ଆଗେ ଆଗେ ଏମାନେ ତାକୁ ବହୁତ ଲେବନ୍‌ଚୁସ୍ ଓ ଚକୋଲେଟ୍ ଇତ୍ୟାଦି ଦେଉଥିଲେ । ସ୍ୱରୂପ ଭାଇନା କୋଳ କରି ଭାରି ଗେହ୍ଲା କରୁଥିଲେ ।

କିନ୍ତୁ ଆୟାଟା···

ନା ··ସେ ଖାଲି କାନ୍ଦିବ ।

ଭାରି ଗୁଳକ ! ଜାଣିଛନା, ସେ କାନ୍ଦିଲେ ତାର ସବୁ କଥା ମାନିଯାଏ ନିତୁ ! କାନ୍ଦ ସେ ନିତୁକୁ ଆଦୌ ଭଲ ଲାଗେନା ।

କିନ୍ତୁ ନିତୁ ଏଇତିକି ମାନିବାକୁ ଆଦୌ ପ୍ରସ୍ତୁତ ନୁହେଁ ।

ସାଜିଲି ଘର ଖେଳନା କେତେ ନାଁଡକା କେଜାଣି ଥୁଆ ହୋଇଥାଏ । କିନ୍ତୁ ସବୁ ଫିଙ୍ଗି ଦେଇ ଗୋଡ଼ ଛାଟି କାନ୍ଦେ ନିତୁ, ନାଇଁ·· ନାଇଁ·· ନାଇଁ

କିନ୍ତୁ କେହି ଶୁଣନ୍ତି ନାହିଁ···

ଲୁଗାକାନିରେ ମୁହଁ ଲୁଚେଇ କାଁ କାଁ ହୋଇ କାନ୍ଦେ ଆୟା···ତାକୁ ଜବରଦସ୍ତ କରି ରମେନ୍ କକା ସେ ଘରେ ପୂରେଇ ଦିଅନ୍ତି । ଗୋଡ଼କୁ ଖଟ ଖୁରାରେ ବାନ୍ଧି ଦିଅନ୍ତି । ରାଗରେ ଗର୍ଜିଉଠି ହାଲିଆ ହୋଇ ନିତୁ କେତେବେଳେ ଶୋଇପଡ଼େ ।

ଆଜକାଲି ଆଉ ସେ ବେଶି କାନ୍ଦକଟା କରେ ନାହିଁ···

ତାର ଅଭ୍ୟାସ ହୋଇଗଲାଣି ଯେ···

ଠିକ୍ ଦିନ ଆଉ ରାତିର ସେଇ ଦୁଇଘଣ୍ଟା ସମୟ ତାକୁ ବେଶ୍ ନିଦ ଲାଗେ !

ସେ ନରମ ଗଦିପକା ଖଟ ଉପରେ ଆନନ୍ଦରେ ଶୋଇପଡ଼େ···

ତଥାପି...

ତାକୁ ସେ ଘର ଭିତରେ ବନ୍ଦ କରିବା ପୂର୍ବରୁ ଆମ୍ବାଟା ଠିକ୍ ସେମିତି ଆଗଭଳି କାନ୍ଦେ...

କାହିଁକି ??

ସେଇଟା ତ ତାର ଅଭ୍ୟାସ ଯେ !

ଆମ୍ମା କହେ ପରା ..."ନରୁ ! ଅଭ୍ୟାସ ନ କଲେ କ'ଣ ପାଠ ହେବ ? ବାପାଟା ପରା, ପଢ଼ି ବସିବାକୁ ଅଭ୍ୟାସ କର ।"

ନରୁ ରାଗେ । କହେ...ହୁଁ...ଅଭ୍ୟାସ ନ କଲେ କ'ଣ କାନ୍ଦ ହେବ ? ସେଥିପାଇଁ ତୁ ନିତି ଅଭ୍ୟାସ କରୁ ।"

ଆଖିରେ ଲୁହ, ଆଉ ମୁହଁରେ ହସ...

ସେ ଆମ୍ମା...ସେଇ ଆମ୍ମା ନରୁକୁ କୋଳରେ ଚିପିଧରେ...

"ଛାଡ଼...ଛାଡ଼ନା...ଆରେ, ମୁଁ ବନ୍ଧୁକରେ ଖେଳିବ ଯେ ।" ରମେନ୍ କାକା ବନ୍ଧୁକ ଖେଳ ଶିଖାଏ ।

ଆଉ ଦୀପକ କାକା କ୍ରିକେଟ୍ ବ୍ୟାଟ୍ ଧରି ଶିଖାଏ । ସବୁବେଳେ ତା ହାତରେ କ୍ରିକେଟ୍ ବ୍ୟାଟ୍ । କେବେ ବା ସେ ଘରେ ରହେ—କଲେଜ ନ ହେଲେ କୁଆଡ଼େ କୁଆଡ଼େ ସୁଟକେଶ୍ ଓ ବ୍ୟାଟ୍ ଧରି ଯାଏ କ୍ରିକେଟ୍ ଖେଳ...

ସାନ କ୍ରିକେଟ୍ ବ୍ୟାଟ୍, ବଲ୍ ସବୁ ସେ ଦେଇଛି ନରୁକୁ । ସବୁବେଳେ ରହେନ କାହିଁକି ଯେ ସେ ଘରେ ? ନରୁ ବଡ଼ ହେଲେ ଏମିତି କ୍ରିକେଟ୍ ଖେଳିବ । ଘରେ ରହିବନି.. ନା—ଜମା ରହିବନି...

ନରୁକୁ କୋଳରେ ଚିପି ଧରି ଆମ୍ମା ବୁଝାଏ .."ତୁ ବି ଯିବୁ ନରୁ...ଆଜି ବମ୍ବେ—କାଲି ଦିଲ୍ଲୀ ।"

"କାଇଁ ବମ୍ବେ—କାଇଁ ଦିଲ୍ଲୀ—ଦେଖାନା ।" ନରୁ ଗୋଡ଼ ଛାଟେ, ବଡ଼ ମ୍ୟାପ୍ ଆଣି ଦେଇଛି ରମେନ୍ କାକା । ନାଲିଗାର ଦେଇ ସବୁ ଦେଖାଇ ଦିଏ ଆମ୍ମା...

ନରୁର ବଡ଼ ବଡ଼ ଆଖି ଆହୁରି ବଡ଼ ହୋଇଯାଏ । "ମୁଁ ଯିବି.. ତୁ କିନ୍ତୁ ଜମା କାନ୍ଦିବୁନି...ଦେଖ୍ ଏ ଅଭ୍ୟାସ ଛାଡ଼ିଦେ...ଖରାପ ଅଭ୍ୟାସ" ଗମ୍ଭୀର ଗଳାରେ ନରୁ କହେ ।

ଆମ୍ମା ହସେ—ହେଲେ କାନ୍ଦେ କାହିଁକି ?

"ଆମ୍ମା ତୋ ଆଖିରେ କ'ଣ ଖାଲି ପାଣି ଗୁଡ଼ାକ ଅଛି ? ଡାକ୍ତର ଦେଖାଉନୁ ତୁ ! ଫେରେ ବୋଧହୁଏ ଯାଉଛି ଯେ ଲୁହ ..ଯାଃ" ରାଗିଯାଏ ନରୁ । ଭାରି ରାଗିଯାଏ ।

"ନ—ଇ—ଇ ଉ—ଉ—ଉ ।" ଦୁଇ ଗୋଡ଼ ନଚେଇ ନଚେଇ ଧାଇଁଆସେ ଦୀପକ୍ କକା । ଟେକଧରେ ନରୁକୁ । ତା ସାଙ୍ଗରେ ବନ୍ଧୁକ ଖେଳ । ସାନ ସାନ ଠେକୁଆ, ହରଣ, ବାଘ ··ନରୁର ଠିକ ଜଙ୍ଗଲ···ନରୁ ଏକୁଟିଆ ବସି ବନ୍ଧୁକ ମାରେ । ଢୋ—ଢୋ—ଢୋ···ସେ ବଡ଼ ହେଲେ ଏମିତି ସତସତକା ବନ୍ଧୁକ ମାରିବ । ଯେମିତି ଦୀପକ୍ କକା ଟିଭିରେ ଜପ୍ ଧରି ଜନ୍ତୁମାରି ଯାଉଚ୍ଛ···ସେ ବି ସିବ ଯେ !

ନଷ୍ଟସ୍ତ···ନଷ୍ଟସ୍ତ···

ନରୁକୁ ଉପରକୁ ଟେକିଧରି ପାଟିକରେ ଦୀପକ୍···ହରି···ଦୁଇପ୍ଲେଟ୍ ଓମେଲେଟ୍···ନରୁ ଆଉ ମୁଁ, କେମିତି ?

ନରୁର ହସିଲା ମୁହଁକୁ ଧରି ଆଦର କରେ ଦୀପକ୍···

କିନ୍ତୁ ଏମାନେ ସବୁଦିନ ଠିକ୍ ସେହି ସମୟଟାରେ ଏମିତି ଚୁପ୍ ଆଉ ଗମ୍ଭୀର ହୋଇଯାନ୍ତି କାହିଁକି ???

କେହିତ ହସନ୍ତି ନାହିଁ···

ଆଉ ଆପ୍ପା ନା···ତାକୁ ଧରି ଆସି ସେଇ ବଡ଼ ଘରଟାରେ ବନ୍ଦ କରିଦିଏ ।

ନରୁ ସିନା ବଡ଼ ହୋଇଯାଇଚ୍ଛ ବୋଲି ଆଜିକାଲି ଲୁହରେ କାନ୍ଦେ ନାହିଁ; ହେଲେ ସେମାନେ ଜାଣିପାରନ୍ତି ନାହିଁ ନରୁକୁ କେତେ ରାଗ ଲାଗେ···ଖାଲି ରାଗ ନୁହେଁ ନରୁ ବି କାନ୍ଦେ ଯେ···ଆପ୍ପାପରି···ସେହି ବନ୍ଦ ଘର ଭିତରେ ସେ ବି ଠିକ୍ ଆପ୍ପାପରି ନିଜ ଜାମା ଆଖିରେ ମାଡ଼ି ଦେଇ ଫୁଲି ଫୁଲି କାନ୍ଦେ !

କାନ୍ଦି କାନ୍ଦି ଶୋଇପଡ଼େ···

ଆପ୍ପା ଦୁଆର ଖୋଲେ । ଦୀପୁକୁ ଛାତିରେ ଗୁଡ଼ିଧରି କୋଳକରି ନେଇଯାଏ ।

ଦୀପକ୍ କକା ଚଫି ଦିଏ···

ପୁଜାଙ୍କୀ ଓଭଲ୍ଟିନ୍ ଦିଏ···

ସ୍ୱରୂପ ଭାଇନା ଛବି ବହି ଦେଖାଇ ଦିଏ···

ଆଉ ଟିଭିରେ ???

ଟିଭିରେ ବି ଠିକ୍ ସେମିତି···

ଯଦି ପଡ଼ିରେ ନରୁ···ତେବେ

ଗୁଣୁ ଗୁଣୁ କରି ସିନେମା ଗୀତ ଗାଇ ଗାଇ ପକେଟ୍ ହଲାଇ ରମେନ୍ କାକା ଗ୍ଲଲିଯାଏ···

ଆଉ ଆପ୍ପା କହେ—'ସେଇଟା ନସ୍ତମ ବାବା, ନସ୍ତମ' ।

'ନସ୍ୱମ କଣ ? ରମେନ କକା, ସ୍ୱରୂପ ଭାଇନା, ଦୀପକ୍ କକା ସମସ୍ତେ କଣ ବନ୍ଦ ହେଉଛନ୍ତି ?"

"ହେଉଛନ୍ତି ରେ ବାବା, ସମସ୍ତେ ହେଉଛନ୍ତି । ଆମେ ସମସ୍ତେ ଏମିତି ବନ୍ଦ ଘର ଭିତରେ ରହିଛୁ । କେହି ଆମକୁ ଦେଖିପାରୁ ନାହାନ୍ତି । ତୁ ସାନ ପିଲା ନା, ଜାଣିପାରୁନୁ ଆମେ କେମିତି ବନ୍ଦ ହୋଇ ରହିଛୁ । ଆମେ ଯେଉଁ ଘରେ ବନ୍ଦ ହୋଇ ରହିଛୁ ସେ ଘରଟା ତୁ ଦେଖି ପାରୁନୁ ରେ" ଆଖି ପୋଛେ ଆଜ୍ଜା...

"ଦୂର୍ ଦେଖିପାରୁନି...ଘର ଜ...

ଦେଖ୍ ମୋର କେଡ଼େ ବଡ଼ ଆଖି ।

ଆଖିକୁ ଆହୁରି ବଡ଼ କରେ ନଉ...ଆଜ୍ଜା ହସିଉଠେ । (ଏଇ ଧାପୁ ପାଇଁ ତ ତାର ଏଇ ଆଜ୍ଜାର ...ବନ...ତା ନ ହେଲେ) ସେଦିନ...କିନ୍ତୁ ସେ ସେଇ ବଡ଼ ଘରଟାରେ ବନ୍ଦ ହୋଇ ନ ଥିଲା ଆଉ ଏମାନେ ସବୁ ଗଲେ ବା କୁଆଡ଼େ ?

ସ୍ୱରୂପ ଭାଇନା, ରମେନ୍ କାକା, ଦୀପକ୍ କକା ???

ଆଚ୍ଛା ମୁସ୍କିଲ ତ ।"

ନଉ ଜାମାରେ ଓଲଟା ବୋତାମ ଦେଇ ଖୋଲି ଯାଇଥିବା ପ୍ୟାଣ୍ଟକୁ ଦୁଇ ହାତରେ ଜାବୁଡ଼ି ଧରି ଘରଆଡ଼େ ଅରେ ଧୂରି ଆସିଲା..."ଆଜ୍ଜା...ଆଜ୍ଜା—"

ଏତେ ବଡ଼ ଘର, କେତେ ଭଲିବ ଯେ—

ଆଟପଟ ଘରକୁ ଯାଇନ ସେ ।

ସେଠାରେ ମୋଟା ନଶୁଆ ଦରୁଆନ୍‌ଟା ଅଛି । ଭାରି ଦୁଷ୍ଟ ସେ...ନା...ନଉ ସେଠାକୁ ଯିବନି । ଆଜ୍ଜା କାନ୍ଦି କାନ୍ଦି କେତେ ମନା କରିଛି ଯେ ..

ଓ—ଭାରି ତ ଆଜ୍ଜା କୁଆଡ଼େ ଗଲା ଯେ ?

ନଉ କଣ ଓଭାଲଟିନ୍ ଖାଇଲାପରେ ଚକୋଲେଟ୍ ଖାଇବନି ? ସେ ଛବି ବହି ପଢ଼ିବନି ? ମୂର୍ଖ ହେବ ? ଆଜ୍ଜା କୁଆଡ଼େ ଗଲା ଯେ...

ଯାଆ ..କିଏ ଶୁଣୁଛି ମ ଆଜ୍ଜା କଥା...

ନଉ ସେଇ ଗେଟ୍ ପାଖରେ ଆସି ଠିଆ ହେଲା...

ନାଇଁ ହେ, ନଶୁଆ ଦରୁଆନ୍‌ଟା ବି ନାହିଁ । ତାକୁ ବେଶ୍ ମଜା ଲାଗିଲା । ପାଦ ଟିପିଟିପି ଭିତରଆଡ଼କୁ ଗୃହିଁ ସେ କବାଟ ମେଲି କରି ବାହାରକୁ ଗୃହ୍ଣିଲା...ତାର ବଡ଼ ବଡ଼ ଆଖି ଆନନ୍ଦରେ ଚକ୍ ଚକ୍ ହୋଇ ଜଳିଲା, "ବାଃ...କି ସୁନ୍ଦର ! ବଡ଼ ଚମତ୍କାର କଳା ଗାଡ଼ିଟେ ଥୁଆ ହୋଇଛି । ଆଜ୍ଜା କହୁଥିଲା ଯେ ଏଇଟା ପରା ଆମ୍ବାସାଡର ..

କେଡ଼େ ସୁନ୍ଦର ଝିଅ ଦିଟା...ସାନ ଝିଅ ଦୁଇଟା ଠିକ୍ ସେହି କ୍ୟାଲେଣ୍ଡରର ଝିଅ ଦିଟା ପରି...

ଦୋକାନର କଣ୍ଟେଇ ଝିଅ ଦ'ଟା ପର ସେମାନେ ଜାମା ପିନ୍ଧିଛନ୍ତି·· ସୁନ୍ଦର ଜାମା···

ଆଉ ଗାଡ଼ି ଚଳାଉଥିଲା ଯେଉଁ ସ୍ତ୍ରୀ ଲୋକଟି ··

ସେ ବି ସେମିତି · ସୁ-ଆ-ନ୍ଦ ସୁନ୍ଦର—ଚକ୍ ଚକ୍ ।

ସେହି ବସ୍ତୁ ଟ୍ କ୍ୟାଲେଣ୍ଡରରେ ଦେହି ସ୍ତ୍ରୀ ଲୋକଟା ନା···ଆୟାଟା ଭଲ ଶାଢ଼ୀ ପିନ୍ଧେ ନାହିଁ । ଇଏ କେନ୍ତ ଭାରି ସୁନ୍ଦର ଶାଢ଼ୀ ପିନ୍ଧିଛି । ଘଣ୍ଟା ବାନ୍ଧିଛି ହାତରେ । ଆୟାର ଘଣ୍ଟା ନାହିଁ । ନଉ ଗାଡ଼ି ପାଖକୁ ଚାଲି ଆସିଲାଣି···

ଝିଅ ଦ'ଟା ପାଟି କରି ଉଠିଲେ—ମାମି ! ଦେଖ୍···ଦେଖ୍ ଇଏ ନା ଆମକୁ ଡାକୁଛି···

"ଯାଅ ଯାଅ ଖେଳିବ ଯାଅ !"

ନଉର ଗୋଡ଼ ଆଉ ଧୀରେ ଧୀରେ ପଡ଼ୁନି···

ବାଃ ··କି ମଜା ! ନଉର ହାତ ତାଳି ଦେଇ ନାଚିବାକୁ ମନ ହେଉଛି । ଏମାନେ ତା ସାଥିରେ ଖେଳିବେ···

ତା ବନ୍ଧୁକ, ତା ଜଙ୍ଗଲ, ତା ଠେକୁଆ, ତାର କ୍ରିକେଟ୍ ବ୍ୟାଟ୍, ନଉ ଅଥୟ ହେଲାଣି—

"ଆରେ···ଆରେ ଆୟାଟା କୁଆଡ଼େ ଗଲା ଯେ···

ନଉ ରହି ରହି ଅଟକେଇ ଅଟକେଇ ପାଖକୁ ଗଲା । ପଚାରିଲା ସେ କିଏ; ଯିଏ ଗାଡ଼ି ଚଳାଉଥିଲେ···

"ସେ ମାମି···ଆମର ମାମି"—

—'ମାମି !' ନଉ ଆଶ୍ଚର୍ଯ୍ୟ ହୋଇ ପଚାରିଲା ··

—"ତମର ମାମି କାହାନ୍ତି ?"

"ମାମି, ମାମି କିଏ ??" ନଉ ଆବାକାବା ହେଲା । ଆୟା—ଅଛି ! ଆମର ଆୟା ଅଛି । ନଉ ଓଠରେ ଗର୍ବମିଶ୍ରିତ ହସ ··

ଝିଅ ଦ'ଟା ହସି ଉଠିଲେ···ଖିଲଖିଲ୍ ହସର-ଝରଣା ବହିଗଲା । "ଏ ମାଆ—ଆୟା କ'ଣ ମାମି ?"

—"ଆମର ବି ଆୟା ଅଛି ଯେ !"

"···ମାମି···ମୁଁ ଜାଣିନି ତ ?"

—"ତମର କଣ ମା ନାହିଁ···?" ଟିକିଏ ବଡ଼ ଝିଅଟା ଗମ୍ଭୀର ହୋଇ ପଚାରିଲା । ନଉର ମୁହଁ ବି ଗମ୍ଭୀର ହୋଇଗଲା । ଭ୍ରୂ କୁଞ୍ଚିତ ହେଲା···

"ମା—କିଏ ତାର ମାଆ !

ସେ ତ ଜାଣିନି···

ବଦ୍‌ମାସ୍ ଆପ୍ପା, ତାକୁ କିଛି କହିନ···ମାଆ ତାର କିଏ ?

ଝଡ଼ର ବେଗରେ ଦଉଡ଼ିଲ ନଉ ··କାନମୂଳଟା ଜଳୁଛି !

"ମୁଁ ମାଆକୁ ଡାକି ଆଣୁଛି" ନଉ ଧାଉଁଛି···ଧାଉଁଛି···

ଅପମାନ ! ଆପ୍ପା କାହିଁକି ତାକୁ କହିନ ତା ମାଆ କିଏ ? ଆପ୍ପା··· ଆପ୍ପା···

ଧକ୍‌କା ଖାଇ ଯାଇଥାନ୍ତା ନଉ···

ଆପ୍ପା କୋଳକୁ ନେଲ । ଷ୍ଟୋରେଜ ଘର ପାଖ କୋଇଲା ଘର । ସେଇଠି ବସି ଆପ୍ପା ସୁଟ୍‌କେସ୍ ଖୋଲି କ'ଣ ଦେଖୁଥିଲ । ଦୁଆର ବନ୍ଦ ହୋଇଥିଲ । ଆଉ ଆପ୍ପା ଅଭ୍ୟାସ କରୁଥିଲ କାନ୍ଦି···

—"ଛି—ବାବୁ, ତୁ ଏତେଣେ ଯାଆନ ଧନ—ମୋ ସୁନାଟା ପରା !"

—"ଗୁଡ଼୍, ଗୁଡ଼୍ ମତେ । ତୁ ଆଗ କହ, ମୋ ମାଆ କାହିଁ ? ଆପ୍ପା ମାଆ ନୁହଁ । ମୁଁ ଠିକ୍ ଜାଣିଛି । କହନା—କହ ।" ଆପ୍ପାକୁ ଆହୁରି ଯୋର‌ରେ ହଲାଇ ଦେଲା ନଉ··

ଆପ୍ପା ଆହୁରି ଜୋରରେ କାନ୍ଦିଲ··ଛାତିରେ ଚାପି ଧରିଲ ନଉକୁ···ଆଉ କୋହରେ ଫାଟି ପଡ଼ୁଥିଲ ।

—"ଗୁଡ଼୍ ତୁ—ଗୁଡ଼୍; କହିବୁନ···କହନା ।"

କିନ୍ତୁ ନଉର ସେ ବେଳ ନାହିଁ ଜିଦ୍ ଧରିବାକୁ···

ସେ ସୁନ୍ଦର କ୍ୟାଲେଣ୍ଡରର ଝିଅଗୁଡ଼ାକ ଠକି ପଳେଇବେ ! ନା—ନା କହନା ! ଚୁପି ଚିପି ହୋଇ ପୁଣି ଧାଇଁଲ ନଉ !

ଆପ୍ପା ଖାଲି କାଠ ପରି ଠିଆ ହୋଇ ରହିଲ···ଲକ୍ଷ୍ମଣ ରେଖା ପଡ଼ିଛି । ଏହାକୁ ଟପି ସେ ପାରିବନି ଆପ୍ପା···

ରମେନ୍ କାକା···ରମେନ୍ କାକା···

ଦ୍ୱାର ବନ୍ଦ ହୋଇଛି—

ଭିତରୁ କବାଟ ଖୋଲିଲ ରମେନ୍—ଆଖି ଦୁଇଟା ଲାଲ ଲାଲ । ଏତେବେଳେ କେବେହେଲେ ରମେନ୍ ଘରେ ନ ଥାଏ । ତେବେ ଆଜି ବୋଧେ ସେ ବନ୍ଦ ହୋଇଛି । ଯେମିତି ଆପ୍ପା କହୁଥିଲ ।

ନଉ ଆଜି ଠିକ୍ ଦେଖି ଦେଇଛି ସେ ! କି ମଜା··ସମସ୍ତେ ଆଜି ଘରେ ବନ୍ଦ ହୋଇଛନ୍ତି···ଆପ୍ପା—ରମେନ୍ କାକା ବି ! ବାଃ, କିନ୍ତୁ··ନଉ ସେ ବାହାରେ ଅଛି । ଏକଦମ୍ ଖୋଲାରେ ଅଛି ସେ ।

"ରମେନ୍ କାକା···କ୍ୟାଲେଣ୍ଡରର ଝିଅମାନେ ଆସିଚନ୍ତି । ଟିକିଏ ଜଲଦି କୁହତ—ମୋ ମାଆ କାହାନ୍ତି ?"

"ମାଆ"···

ରମେନ୍ ଦୁଇ ହାତରେ ନଉକୁ ଟେକି ନେଲା ।

"ମାଆ ··ଜାଗିନ ତ !" ରମେନ୍‌ର ଓଠ ଥରୁଛି ! ! !

ଧେତ୍ ··ସାନ ସାନ ଝିଅମାନେ ଜାଗିଛନ୍ତି ଅଥଚ ତମେ ଜାଗିନ ! ଛାଡ଼, ମତେ ··ଛାଡ଼ନା !

ନଉ ସେତେବେଳକୁ ଛୁଟି ଆସିଲାଣି ଦୁଆର ମୁହଁକୁ ।

ନା···ତାର ଡେଉଁ ଦେଖି ସେ ଝିଅ ଦଶଟା ଯଦି ପଳେଇବେ···? ହଠାତ୍ ଥମକି ଠିଆହେଲା ନଉ !

ସେ ବଡ଼ଘରର ଦୁଆର ମୁହଁରେ ଗୋଟାଏ ହାତ ପକେଟରେ ପୂରାଇ ଠିଆହୋଇଛନ୍ତି ଜଣେ ଡେଙ୍ଗା ଲୋକ । ହଁ—ଛବି ବହିର ସେ ସାହେବ ପରି ସେ ଡ୍ରେସିଙ୍ଗ୍ ଗାଉନ୍ ପିନ୍ଧିଛନ୍ତି । କିନ୍ତୁ ସେ ମୁହଁରେ କ'ଣ ଧରିଛନ୍ତି ? କଳା ହୋଇ ବଙ୍କା କିନିଷ—ପୁଣି ଧୂଆଁ ବାହାରୁଛି ସେଥିରୁ ··

ଓହୋ···ଚୁରୁଟ୍—ଚୁରୁଟ୍ । ସାହେବମାନେ ଖାଆନ୍ତି ଯେ ! ସେହି ଝିଅମାନଙ୍କ ମାମି ସଙ୍ଗେ କ'ଣ କଥା ହେଉଛନ୍ତି···

ନଉ ଅବାକ୍ ହୋଇ ଚାହିଁଛି···ବାଃ ଏ ସାହେବ ଜଣଙ୍କୁ ଦେଖିବାକୁ ନଉକୁ ଖୁବ ଭଲ ଲାଗୁଛି । ସେ ସାହେବ ଜଣକ କ'ଣ ଏମିତି କହୁଛନ୍ତି···"ଅନିତା ' ଥରେ କହୁଛି ତମେ ଦୟାକରି ଅନିତା·· ନଉକୁ ମୋର ବଞ୍ଚାଅ ଅନିତା···ନଉକୁ ମୋର ବଞ୍ଚିବାକୁ ଦିଅ ।"

ବାଃରେ—ନଉ କଣ ବଞ୍ଚିନି ନା କଣ ? ନଉ ନିଜ ଦେହରେ ହାତ ମାରି ଅନୁଭବ କଲା ।

"କିନ୍ତୁ କାହିଁକି ଏ ଅନୁରୋଧ ଶୁଣେ ? ସେ ତ ବଞ୍ଚିଛି । ତେବେ, ଜୀବନରେ ତମେ କେବେ କଲ୍ୟାଣୀକୁ ଭଲ ପାଇ ନ ଥିଲ । ଆଉ ତା'ର ପୁଅ ପ୍ରତି ତମର ଏ ମମତା କାହିଁକି ???"

"ଭୁଲି ଯାଅନା ଅନିତା···ଖାଲି ତମରି ପାଇଁ । ତମରି କଥା ରକ୍ଷାକରି କୋର୍ଟରେ ଡିଗ୍ରୀ ହେବା ପର୍ଯ୍ୟନ୍ତ ଶପଥ କରି ମୁଁ ନଉକୁ ମୋର ଦେଖିନାହିଁ । କିନ୍ତୁ ·· ନ ଖାଲି ତ କଲ୍ୟାଣୀର ସନ୍ତାନ ନୁହେଁ, ସେ ଯେ ମୋର ରକ୍ତର ସନ୍ତାନ । କଲ୍ୟାଣୀ ତାର ମାଆ । କିନ୍ତୁ କେମିତି ଭୁଲିବି କହ, କେମିତି ଭୁଲିବି ମୁଁ ଯେ ନଉର ଜନ୍ମଦାତା ! ମୁଁ ଯେ ନଉର ବାପା ।

ତାର ବାପା···ନଉର ବାପା···ଆଃ—ନଉର ବାପା ଏଇ ସାହେବ ଜଣକ···ବାଃ କି ମଜା ନଉର···

ଆଃ···ଆପ୍ପା—ଆପ୍ପା କୁଆଡ଼େ ଗଲ ଯେ। ସେ ଯେ ତାକୁ କହିଥି କହିବନି !
ଦୁଷ୍ଟ ଆପ୍ପା !

ନବୁ ଆପ୍ପା ପାଖକୁ ଛୁଟିବାକୁ ଚେଷ୍ଟା କଲ। କିନ୍ତୁ ପାଦ ତାର ଆଉ ଚଳିଲିନ··ଆଖି ଆଉ କାନ ଲାଗି ହୋଇଯାଇଛି ସେଇ ଚରୁଟ୍ ଫଣା ସୁନ୍ଦର ମୁହଁଟାରେ···ଯିଏ ତାର 'ବାପା'।

ଲେଭେନ୍‌ଚୁସ୍ ଚୋଷିଲ ପରେ, ଚୁଇଙ୍ଗମ ଖାଇଲା ପରେ, ଆଙ୍ଗୁର ଚାଖିଲା ପରେ ଜୀବନରେ ପ୍ରଥମ ଥର ପାଇଁ ଏ ସ୍ୱାଦ ଅନୁଭବ କଲା ନବୁ··ସେ ସାହେବ କହି ଚାଲିଛନ୍ତି···

—"ନବୁ ଜାଣେନ ମୁଁ ତାର ବାପା ବୋଲି। ଏଇ ଆଶାରେ ମୁଁ କେତେଦିନ ଥିଲି ଅନିତା ! ନବୁ ତାର ମାଆକୁ ଚିହ୍ନେନି। ତମେ ତାର ମାଆ ହେବ ଅନୀତା। ତାର କାଙ୍ଗାଲ ବାପା ତାର ସର୍ବସ୍ୱ ଅର୍ପଣ କରି ଏତିକି ଅନୁରୋଧ କରୁଛି, ନବୁକୁ ମୋର ମଣିଷ ହେବା ପାଇଁ ଏତିକି ସୁଯୋଗ ଦିଅ ତୁମେ···ନବୁ ଜାଣୁ ତୁମେ ତାର ମାଆ ବୋଲି !"

ନବୁର ମାଆ ହେବ ସିଏ···
ସେଇ ସୁନ୍ଦର କ୍ୟାଲେଣ୍ଡରର ସ୍ତ୍ରୀଲୋକଟି···
ବାଃ—କି ମଜା। ଆଉ ମଣିଷ ହେବ ନବୁ ?
ଦୂର୍ ସେ କ'ଣ ମଣିଷ ନୁହେଁ ? ? ?
ହରିଣ, ଟେକୁଆ, ଚଢ଼େଇ, ବଲେଇ ? ନା ତ···କି ଆଶ୍ଚର୍ଯ୍ୟ ! ! !

ତାର ମାଆ ହେବ—ସେ ସୁନ୍ଦର ବ୍ରତେନିଆ ବିସ୍କୁଟ୍ କ୍ୟାଲେଣ୍ଡରର ଝିଅମାନଙ୍କ ମାମି···

ଆଉ ତାର ବାପା ··!!! ନବୁ ଆନନ୍ଦରେ ଥରିବାକୁ ଲାଗିଲା—ଆପ୍ପା··· ଆପ୍ପା ! ନବୁ ଛୁଟିଛି। ବେଶ୍ ଜୋର୍‌ରେ ଛୁଟିଛି ଆପ୍ପା ପାଖକୁ···ଆପ୍ପାକୁ ଏ ଖବରଟା ଦେବାକୁ ହେବ ଯେ···

ନବୁ ଛୁଟିଛି···
ଏପଟେ ଶବ୍ଦ ଶୁଣାଗଲାଣି ଆରେ···
ହଠାତ୍ ଗାଡ଼ି ଷ୍ଟାର୍ଟ ହେବାର ଶବ୍ଦ ହେଲାଣି ଯେ···

ଠିକ ଠିକ ଝିଅ ଦିଟା କ'ଣ ସତରେ ପଳେଇବେ ? ହଠାତ୍ ବୁଲିପଡ଼ି ନବୁ ଜୋର୍‌ରେ ଗେଟ୍ ପାଖକୁ ଧାଇଁବାକୁ ଲାଗିଲା। ଖୁବ୍ ଜୋର୍‌ରେ···ଏକଦମ୍ ଜୋର୍‌ରେ···

ଆଃ – ହା···

ବିକଟ ଶବ୍ଦ କରି ପ୍ରବଳ ବେଗରେ ଯାଉଥିବା କାର୍‌ଟି ଏକ ବିକୃତ ଚିତ୍କାର କରି ଅଟକି ଯାଇଛି ··କନ୍ଦୁ—ଆହା କେତେ ବିଳମ୍ବରେ;

× × ×

ନିତୁର ରକ୍ତାକ୍ତ ଶରୀରଟାକୁ ଦୁଇ ହାତରେ ଚିପିଧରି ଚିତ୍କାର କରି କାନ୍ଦି ଉଠିଛନ୍ତି ସେ ସାହେବ ପୋଷାକଧାରୀ ଭଦ୍ରଲୋକ ଜଣକ । ପାଗଳ ପରି ଚିପିଧରି ଚିତ୍କାର କରୁଛନ୍ତି ।

—"ଅନିତା ! ତମେ ମୋ ନିତୁକୁ ସବୁଦିନ ପାଇଁ ମୋ ପାଖରୁ ଛଡ଼େଇ ନେଲ । ନେଇପାରିଲ ଅନିତା—ନିତୁ···ମୋ ଧନ···

ଫାଟି ପଡ଼ୁଥିଲା ବହୁଦିନର ଜମାଟବନ୍ଧା କୋହ···

ସେହି ବନ୍ଦ ହୋଇଥିବା ଘରର କବାଟଟା ଅସ୍ବାଭାବିକ ଭାବରେ ଖୋଲି ଯାଇଛି । ଖୁବ୍ ଭୟଙ୍କର ଭାବରେ···

ଆତ୍ମା···ରମେନ କାକା—ସ୍ଵରୂପ

ଫିଟିଯାଇଛି ନିଷିଦ୍ଧ କବାଟ – ବନ୍ଦ ଘରର କବାଟ···



● ନିକଟ

ଯାତନା ଏକ ଉଚ୍ଚକୋଟିର ଅସ୍ତ୍ର ! ପ୍ରେମ ଓ ଯାତନା ସତେ ଯେମିତି ଯାଆଁଳା ଭାଇ ପରି । ଆଦୌ ବାରି ହୁଏନା ପାର୍ଥକ୍ୟ !

କିନ୍ତୁ…

ଏଇ ଦାନ୍ତୁଆ ଅସ୍ତ୍ର କୁଆଡ଼େ ସବୁ ପ୍ରତିବନ୍ଧକକୁ ଖଣ୍ଡନ କରିପାରେ !!!

କାହିଁକି କେଜାଣି ନର୍ମଦାର ମନେହୁଏ ତା ନିଜ ଅନୁଭୂତିରୁ କଥାଟା ବୋଧହୁଏ ସତ ।

ଦିନର ଏହି ସମୟଟା କେତେ ଯନ୍ତ୍ରଣାଦାୟକ ସତେ !!!

ସ୍କୁଲ, କଲେଜ, କଚେରୀ ବେଳ । ସମସ୍ତେ ତରବର ହେଉଥିବେ । ଏଇ ସମୟଟା ଓଲେଇ ଝଲେଇ ପରି ନିଜକୁ ମନେ ହୁଏ ନର୍ମଦାର ।

ଗୋଟି ଗୋଟି କରି ଯାତଟି ପ୍ଲେଟରେ ସେ ଭାତ ବାଢ଼ି ଜଣ ଜଣ କରି ସବୁରି ପାଇଁ ଟେବୁଲ ଉପରେ ସଜେଇ ରଖେ । ହେଲେ ମାଛ ତରକାରୀ ଦେବାର ଦାୟିତ୍ୱ ଶାଶୁଙ୍କର । ସମସ୍ତଙ୍କୁ ବାଣ୍ଟି କରି ବାଢ଼ିଦେଇ ଠିଆହୁଅନ୍ତି ଶାଶୁ । ଗୋଟି ଗୋଟି କରି ଟେବୁଲ ଉପରେ ସବୁରି ପାଇଁ ଥୋଇଦିଏ ନର୍ମଦା ।

"ଏଇତକ ଆଉ କେଉଁଠୁ ଆଣିବ ? କିଏ ଆଉ ଦେଢ଼ଶୁରଙ୍କ ଆଗରେ ବାଢ଼ି ବସନ୍ତା ଯେ ! ଆମେ ତ ଆଉ ଆଧୁନିକା ପାଠୋଇ ବୋହୂ ନୁହଁ" ଶାଶୁ ହେମାଙ୍ଗିନୀ ଓଠ ଚିପି ହସନ୍ତି । ଈଷତ୍ ବଙ୍କା ହସ । ବିଦ୍ରୂପ ଓ ଅକ୍ଷେପ କରି କରିଣେଇ ଗୃହାନ୍ତ ଶିଉଳିଆଡ଼େ ।

ନର୍ମଦାର ସ୍ୱାନ ସୁଆ ଶିଉଳି । ଆଉ ଶିଉଳି ଠିକ୍ ସେତିକବେଳେ ଚୁଆଟାକୁ କ୍ଷୀର ଦେଉଥାଏ । ପିଲାଟାକୁ ଛୁଇଁତେ ଚିପିଧରି ଓଠ ବୁଲେଇ ସେ ଅଳପ ହସେ । କିଭଳି ଓଠକୁ ଭଜେଇ ଦେଇ ଓଠ କଣକୁ ଦାନ୍ତରେ ଚାପି ଧରେ ।

ବିଦ୍ରୂପ !

ଇର୍ଷା !

କା ଉପହାସ ! !
ନର୍ମଦା ଅପ୍ରତିଭ ହୁଏ ।
ଆଚ୍ଛା ଶିଉଳିର ପିଲାଟା କଣ ଠିକ୍ ଏତିକିବେଳେ କାନ୍ଦେ ?

ଖାଲି ସେତିକି ନୁହେଁ, ଠିକ୍ ଏତିକିବେଳେ ସମସ୍ତେ ସ୍କୁଲ, କଲେଜ, ଆଉ ଅଫିସ ଯିବାକୁ ତରବର ହେଉଥିବେ । ପିଉସୀଶାଶୁ ଦାଣ୍ଡଘରେ ଉପରେ ବସି ଯାଆନ୍ତି । ଶାଶୁ ପୁରୁଣି ଶାଗ ଖରଡ଼ୁ ଥାଆନ୍ତି । ଏଇ ଉଷୁମ ଶାଗ ଟିକିକ ଶଶୁରଙ୍କର ଏକାନ୍ତ ପ୍ରିୟ ଆଉ ଦେବକାନ୍ତର ମଧ୍ୟ । ତେଣୁ ସମସ୍ତଙ୍କ ଆଗରେ ନାଲିଆଙ୍କ ପରି ବାରମ୍ବାର ନର୍ମଦାର ସ୍ୱାମୀ ଦେବକାନ୍ତକୁ ହିଁ ପାଟିକରି କହିବାକୁ ପଡ଼େ—

"କଲେଜ ବେଳ ହୋଇଗଲା ନାହିଁ । ଜଲଦି ଜଲଦି ଖାଇବସ ।"

କିନ୍ତୁ ନର୍ମଦା ନିଜ ପାଇଁ ବାଢ଼ି ଖାଇବସିପାରେ ନାହିଁ; ଯଦିଓ ଛୁଆକୁ ବଳେଇ ଧରି ନିଜର ହାତଘଣ୍ଟାକୁ ସେ ବାରମ୍ବାର ଚାହୁଁଥାଏ । ସେପଟେ କର୍ତ୍ତବ୍ୟର ଆହ୍ୱାନ ଆଉ ଏପଟେ ଶ୍ୱଶୁର ଖାଇ ନାହାନ୍ତି । ଉଭୟ ଦିଗର ସମାନ ଆକର୍ଷଣ ମଧ୍ୟରେ ସେ ଅସହାୟ ଭାବରେ ଦୋହଲୁଥାଏ ହୁଏ ।

କିନ୍ତୁ…ଶାଶୁହିଁ ବାଢ଼ି ଦିଅନ୍ତି ନର୍ମଦାକୁ । ଭାତ ପାଖରେ ସବୁଥିରୁ ଟିକେ ଟିକେ ନେଇ ହାତ ହଲାଏ ନର୍ମଦା—"ଆଉ ବୋଉ ଥାଉ, ଏତେ ଲୋକ ଖାଇବେ । କେହି ଖାଇ ନାହାନ୍ତି ପରା ଘରେ !"

ରୋଷେଇ ଘର କଣରେ ଯେଉଁଠି ପଇବା ଗୋପା ଗଦା ହୋଇଥାଏ, ସେଇଠି ଠୁଙ୍କ ହୋଇ ଖାଇ ବସେ ନର୍ମଦା । ତରବରରେ ପିଢ଼ାଟାଏ ବି ମିଳେନାହିଁ । ସବୁଯାକ ଗୋଲେଇ ପୋଲେଇ ତରବର କରି ଦି' ଗୁଣ୍ଡା ଖାଇଦିଏ ସେ ପୁଣି ଦେବକାନ୍ତର ବାରମ୍ବାର ତାଗିଦ୍‌ରେ ।

ଏତିକିବେଳେ ଠିକ୍ ରୋଷେଇ ଘର ଆରପଟ ବାରଣ୍ଡାରେ ବସି ଛୁଆକୁ କ୍ଷୀର ଦେଉଥାଏ ଶିଉଳି । ଆଉ ଖୁଡ଼ୀଶାଶୁ ସେଇଠି ବସି ପାନ ଭାଙ୍ଗି ଲେଞ୍ଜରେ ଗୁଣ୍ଡି ଘୋରି ଗୁହା ପିଉଥାନ୍ତି । ଶୁଣିବାକୁ ଇଚ୍ଛା ନ ଥିଲେ ମଧ୍ୟ କଥାଗୁଡ଼ାକ ଠିକ୍ ତୀର ପରି କାନରେ ଫୋଡ଼ି ହୋଇଯାଏ ନର୍ମଦାର ।

ନରମ ଗଳାରେ ନଚେଇ ନଚେଇ ପଚାରେ ଶିଉଳି—"ଏତେବେଳେ ଗୁହା ପିଇଲେ ଯେ ଖୁଡ଼ି ! ଭାତ ଖାଇବେନି କି ?"

"ଭାତ ! ! ଆହା ବଡ଼ ଦେଢ଼ଶୁରଙ୍କ ସାଥିରେ ବାଦକରି ଭାତ ନ ଖାଇଲେ ଆଉ ଚଳୁଛି ମୋର ! ମାଇକିନିଆ ଜନମ ପାଇ ପୋଡ଼ିଯାଉ ମୋ ଓପାଦ ପଣ ।

"କ'ଣ ହୋଇଛି କି ମ ! କକେଇ କ'ଣ ତାକୁ ନାହାନ୍ତି ଖାଇବାକୁ ? ଏ କିନ୍ତୁ କକେଇଙ୍କର ଭାରି ଅନ୍ୟାୟ ।" ମୁହଁ ଚିପି ବୋଧହୁଏ ହସେ ଶିଉଲି···

"ହଁ ଲୋ ଝିଅ, ଯାହା ନ ହୋଇଛି ବାଳକାଳେ, ତା' କି ହେବ ପାଚିଲା କାଳେ ! ଆମ କପାଳରେ ସବୁବେଳେ ପଖାଳ କଂସା । ସୁଣ୍ଟା ସୁଣ୍ଟା ଭାତ । ଚାରିଅଣ ଥାଉ କି ନ ଥାଉ । ଯିଏ ଯିଆଖିଆ ତାର ସିନା ମୁଁ, ମୋ ବରି ଆଉ ସବୁ ଯେ କ ସାତପର । ତାଙ୍କର ସେ ଉପ୍ପୁମ ଉପ୍ପୁମ ଖାଇଦେଇ ବରୋଯାଙ୍କେ କ୍ଲବ—ସ୍କ୍ଳୁଟରେ ।"

"ତମେ କେବେ ଖୁଡ଼ୀ ସ୍କ୍ଳୁଟରରେ ଯାଇଛ ? ଯାଉନା !"

ଶିଉଲି ପୁଅ କଣ ଘଣ୍ଟା ଘଣ୍ଟା ଧରି କ୍ଷୀର ଖାଏ ?

ଛି—ଛି—ଛି—ଏମିତି ଶ୍ରେଷ୍ଠକଥା ଭାବି ପାରୁଛି ନର୍ମଦା—

ତଥାପି—

ତର୍ଣ୍ଣି ପାଖରେ ସେହି ଲଣ୍ଠନମାନଙ୍କର କଣ୍ଟେନ୍ସ ଫଣ୍ଡେ (ଯାହା ତା ଭାଗରେ ପଡ଼େ) ତାର କଣ୍ଠନାଟା ଅଜାଣତରେ ଫୋଡ଼ ହୋଇଯାଏ । ତତେବେ କରି ନିଜର ଅଇଁଠା ଥାଳି ଉଠେଇ ଟେବୁଲ ଉପରୁ ବାସନ ନେଇ ବାହାରିଯାଏ ନର୍ମଦା । ବେଶଭୂଷା ହୋଇ ବେଢେଇ ଘର ଦୁଆର ମୁହଁରେ ଠିଆହୋଇ ପୁଣି ଥକ୍କା କ ହୁଏ । ଏସବୁ ନିଜକୁ ପ୍ରହସନ କଲି ପରି ମନେହୁଏ । ତଥାପି ଡୋକ ଗିଳି କହେ—ବୋଉ ମୁଁ ଆସୁଛି ।

ଶାଶୁ ଉଁ କି ଚୁଁ କିଛି ଜବାବ ଦିଅନ୍ତି ନାହିଁ । ବୋଧହୁଏ ଅନ୍ତରରେ ଅନୁମୋଦନ କରି ପାରନ୍ତି ନାହିଁ ନର୍ମଦାର ଏଇଭଳି ଦେବକାନ୍ତ ସଙ୍ଗେ ଚାଲି-ଯିବାଟାକୁ । ନର୍ମଦା କିନ୍ତୁ ତରବର ହୋଇ ଚାଲିଯାଏ । ହେଲେ କଥାଗୁଡ଼ାକ କ'ଣ ଏତେ ଦୂର ତା ସଙ୍ଗେ ଚାଲିଯାଇ ପାରନ୍ତି ?

ଖୁଡ଼ୀଶାଶୁଙ୍କ ତୁଣ୍ଡ ବେଶ୍ ବାରିପାରେ ସେ ! "ଶ୍ରେୟପରି·· କଥାର ଢଙ୍ଗ ଦେଖ ! ସତେ ଅବା ଶାଶୁ ମନା କଲେ ଅଟକିଯିବେ ! ଛୁଡ଼ିଦେବେ ଚାକିରି—"

ଶିଉଲି ମଧ୍ୟ ସମସ୍ୱରରେ କହିଉଠେ—"ଛିଙ୍ଗ—ଅଭିନେତ୍ରୀ ପରି, ଜାଣୁନ କି ?"

ନର୍ମଦାର ମନେହୁଏ ଫେରି ଆସନ୍ତା । ଦି'ପଦ ବେଶ୍ କରି ଶୁଣେଇ ଦିଅନ୍ତା ଏମାନଙ୍କୁ । ତା ତୂଣୀରରେ ମଧ୍ୟ ଆଘାତ ଦେଲି ପରି ଯଥେଷ୍ଟ ଶର ଅଛି··· ଯଥେଷ୍ଟ···

କିନ୍ତୁ—

ହଠାତ୍ ମନେପଡ଼େ ସମ୍ମୁଖୀନ ହେବାକୁ ହେବ ଆଉ ଏକ ପ୍ରଶ୍ନବାଚୀର । ଅନେକ ଯୋଡ଼ା କଅଁଳ ନରମ ଆଖିର ଅଜସ୍ର ପ୍ରଶ୍ନବାଚୀର ଉତ୍ତର ଦେବାକୁ ହେବ ଯେ···

× × ×

ସେମାନେ କେଉଁଦିନ ଲୁଡ଼ୁ କିମ୍ବା ତାସ୍ ଖେଳୁଥାନ୍ତି । ନ ହେଲେ ବାରିକଆଣୀ ପାଖେ ବସି ନଖ କାଟି ଅଳତା ଲଗାଉଥାନ୍ତି । ନଚେତ୍ ପାନପେଡ଼ି ପାଖରେ ବସି ଯୋଡ଼ିଦେଇଥାନ୍ତି ଗ୍ରାମ୍ୟଯାକର ଗପ । କେବେ ଅବା ରେଡ଼ିଓ ବାଜୁଥାଏ । କେଉଁଦିନ ରେକର୍ଡ଼ ପ୍ଲେୟାର ବା ଟେପ ରେକର୍ଡ଼ର । ଶିଉଳି ତା ଗହଣା ବାକ୍ସଟା ମେଲେଇ ଧରି ବସିଥାଏ । ବାସନ୍ତୀ ରଙ୍ଗର ହାଲୁକା ସୁନ୍ଦର ଶାଢ଼ୀ ଫନ୍ଦେ ପିନ୍ଧିଥାଏ । ପିଠି ଖୋଲା ଲମ୍ବା ଓଦା ବାଳ ।

ଶିଉଳି ସୁନ୍ଦର ।

ମୁଣ୍ଡ ଉପରେ ପଙ୍ଖା ଘୂରୁଥାଏ । ପାଖରେ ଆସର ଜମିଥାଏ । ଆଉ ଗୋଟି ଗୋଟି କରି ତାର ଶହେ ଭରି ଓଜନର ବିଭିନ୍ନ ଡିଜାଇନ୍‌ର ସୁନାଗହଣା ଦେଖାଉଥାଏ ଶିଉଳି । ସେ ତାର ରୋମାଞ୍ଚକର ଇତିହାସ ବର୍ଣ୍ଣନା କରୁଥାଏ । କେଉଁଠୁ କେତେ ସ୍ୱଳ୍ପକରେ ସେ କେଉଁ ଡିଜାଇନ୍ ସଂଗ୍ରହ କରି ଆଣିଥିଲି । କେଉଁ ବଣିଆ ପାଖରେ ଗଢ଼ାଇଛି ।

ବିଧବା ପିଉସୀ ଶାଶୁ ନଈଁପଡ଼ି ହାତରେ ଓଜନ କରୁଥାନ୍ତି ଗହଣାଗୁଡ଼ିକର ଗୁରୁତ୍ୱ । ପଡ଼ିଶା ଘରର ବହୁନାନୀ ପିଇଯାଉଥାନ୍ତି କଥାଗୁଡ଼ାକ ··

ଆଚ୍ଛା ଝୁଡ଼ୀ କ'ଣ ନର୍ମଦାର କଲେଜ ଫେରିବା ବେଳ ଠିକ୍ ଜାଣିପାରନ୍ତି ?

କେଜାଣି, କଲେଜରୁ ଆସି ଘରେ ଗୋଡ଼ ଦେଉ ଦେଉ ଶୁଣାଯାଏ ତାଙ୍କ କଣ୍ଠସ୍ୱର । ନର୍ମଦା ମନ ଦବିଯାଏ ।

"କ'ଣ ଦେଖୁଛ କି ହେ ! ମୋହନ କଣ୍ଟ୍ରାକ୍ଟରକୁ ଭଲ ଝୁଣିବାକୁ କିଏ ଜନ୍ମ ହୋଇଛି । ତାଙ୍କରୁ ଚଳିଯାଏ କୋଉଟା ଅବା ଊଣା ରଖିଛି ? କାହିଁକି— ଏ ସାହିକୁ ପରା ଏତେ ବୋହୂ ଆସିଛନ୍ତି ! ଏମିତି ଫର୍ଣ୍ଣିଚର୍ ଭଲା କାହାର ଦେଖିଲଣି ତମେ ?"

ବହୁବୋଉ ନାନୀ ପାଳି ଧରନ୍ତି—"ମଲା—ଏଇ ଘରକଥା ଦେଖୁନ ? ଦାଣ୍ଡକୁ ଭଲ ଯାଉଛି କଅଁ ! ହେଇଟି ପରା ବୋହୂ ଆସିଛି । କ'ଣ ନା—ଘରର ବଡ଼ବୋହୂ ଭୁଲର ଶୀଖ, ଏକା କଥାକୁ ସିନା ରହିଲା ଦୁଃଖ । କାନ ଜାଣିଛ ? ମିଠେଇ ଟୋପେ ବୋହୂଘର ଦରବ ବୋଲି ଏ ତୁଣ୍ଡ ଚାଖିଚି ନା ଆଗ ! ଯାଉନ —ସାଇପାକ ପଚାରି ଆସ !"

ନଠେଇ ହୋଇ ବୁଲିପଡ଼ି କହେ ଶିଉଳି—ତାଙ୍କ କଥା ଛାଡ଼ିଦିଅ ନାନୀ, ସେ ପରା ରୋଜଗାରିଆ ବୋହୂ । ମନକୁ ପସନ୍ଦ କରି ଦେଢ଼ଶୁର ଆମର ଘରକୁ ଆଣିଛନ୍ତି ଯେତେ ଯେ ପାଟି ଫିଟେଇବାକୁ ଆଉ ସୁରା କାହାର ଅଛି ? ଆଉ ଆମ ବାପାଙ୍କର ? ବା—ବା—ନ ଦେବାକୁ ସୁରା ଅଛି ନା ! ତାଙ୍କ ଝିଅଟିମାନଙ୍କ ପାଇଁ

ଦ' ପଇସା ନ ରଖିଲେ ବାହାଘରର ଆଶା ଛାଡ଼ିବାକୁ ହେବ । ଝିଅମାନଙ୍କୁ ଯେମିତି କଣ୍ଟକଣାରେ ବଢ଼େଇଛନ୍ତି ନା ସାତ ଜନ୍ମେ ବି ମନକୁ ବର ଖୋଜି ଆଣି ପାରିବେ ନାହିଁ । ପଚ୍ଛକେ ଜନ୍ମ ଜନ୍ମ ଅଭିଆଡ଼ି ରହିଯିବେ ।"

ଖୁଡ଼ୀଶାଶୁ ଉପରେ ପଡ଼ି କହନ୍ତି—"କଅଣ ଯେମିତି ଟ୍ରେନିଂ ଦେଲେନି । ମାଗଣାରେ ଝିଅ ଉଠିଯାଆନ୍ତା । ଏବେ ତୋର ଝିଅ ହେଲେ ଶିଖା । ଘରେ ତ ହେଲେଣି । ଶିଖିବେନି କଅଣ ?

"ଦରକାର ନାହିଁଲେ ମାଆ । ଏଇ ଆମର ଭଲ ।" ମୁହଁ ବୁଲେଇ ଅଳପ ହସେ ଶିଉଳି ।

ନର୍ମଦା ଗାଧୁଆ ଘର କଳ ଖୋଲି ହୁଏତ ଲୁଗା ଧୋଉଥାଏ ଅଥବା ଗାଧୋଉଥାଏ । ତାହା ସମସ୍ତେ ଜାଣନ୍ତି । ନର୍ମଦାର କାହିଁକି କେଜାଣି ମନେହୁଏ ବୋଧହୁଏ ତାକୁ ଶୁଣେଇ ଶୁଣେଇ ଏଇ ବାକ୍ୟବାଣଗୁଡ଼ାକ ପ୍ରୟୋଗ କରୁଛନ୍ତି ଏମାନେ !

ନିଜକୁ ଶାସନ କରେ ନର୍ମଦା । ହୁଁ—ସବୁ କଥାର ଝପସା ଦିଗଟା ଦେଖିବା ତାର ଅଭ୍ୟାସ ହୋଇଚାଲିଛି ଯେମିତି । ଏତେ ପାଠଶାଠ ପଢ଼ି ମଧ୍ୟ ସେଇ ଛୋଟ ଛୋଟ କଥାରେ ନଜର । ସବୁ କଥା ନିଜ ଦେହକୁ ଟାଣି ଆଣିବ । ଯେତେହେଲେ ସ୍ତ୍ରୀ ଲୋକ ପ୍ରକୃତି ଯିବ କୁଆଡ଼େ ? ହଁ—ପ୍ରେମ କଲେ ଯନ୍ତ୍ରଣାକୁ ନବ ଯନ୍ତ୍ରଣା ମଧ୍ୟ ଦେଇ ଗଢ଼ କରିବାକୁ ହୁଏ । ଆତ୍ମତ୍ୟାଗର ଆନନ୍ଦ ଯେ ଅନୁଭବ ନ କରିଛି, ସବୁ ଶିକ୍ଷା ତାର ବୃଥା ( ଏଗୁଡ଼ାକ ସବୁ ଦେବକାନ୍ତର କଥା ) ।

ଯଥେଷ୍ଟ ମନକୁ ଶାସନ କରି ସନ୍ତର୍ପଣରେ ମନରୁ ବିକାର ପୋଛି ପୁଣି ସେଇ ଘରେ ପଶେ ନର୍ମଦା । ବନ୍ଧୁନାନଙ୍କୁ ମୁଣ୍ଡିଆ ମାରେ । ନଇଁପଡ଼ି ଟିକିପୁଅକୁ ଗେହ୍ଲା କରେ ।

ଶିଉଳି ହସେ । କହେ—"ବସିବ ନାହିଁ ନା ଯିବ କୁଆଡ଼େ ? ଆଉ କିଛି ଏନ୍‌ଗେଜ୍‌ମେଣ୍ଟ ଅଛି ନା କଣ ? ମିଟିଂ ଅଛି କି କଲେଜରେ ?"

ଚର୍ଆଁ ମାଡ଼ିଯାଏ ଦେହରେ । କିଛି ନ କହି ତଳେ ବସିପଡ଼େ ନର୍ମଦା । ଶିଉଳି ଏଥର କଡ଼ ଲେଉଟାଇ ଝିଅକୁ କ୍ଷୀର ଦିଏ ।

ଖୁଡ଼ୀଶାଶୁ ଦୁଇହାତ ଉପରକୁ ଟେକି ହାଇ ମାରନ୍ତି । ଅଳସ ଭାଙ୍ଗି କହନ୍ତି, ଓହୋ—ଦେହଟା ବଡ଼ ଛେଚକୁଟି ଲାଗୁଛି ଲୋ ଶିଉଳି ! ଅବେଳ ଝିଆ ଆଉ ଏବେ ଏ ବୟସରେ ଦେହରେ ଯିବ କି ? ଯାଏଁ ଟିକିଏ ଗଡ଼ପଡ଼ ହୁଏ । ପୁଣି ହାଇ ମାରନ୍ତି ଖୁଡ଼ୀ ।

ନର୍ମଦା କହେ—"ଖୁଡ଼ୀ ଅଦା ପକେଇ ଗୁହା ଟିକଏ ଆଣେ ! ପିଇଦେଲେ ଦେହଟା ଟିକଏ ଭଲ ଲାଗିବ । ବସମ ନାମି ଏଇନେ ମୁଁ ଆସୁଛି ଗୁହା ।" ନର୍ମଦା ଗୁହା କରିବାକୁ ଉଠିପଡ଼େ ।

ହିଁ – ହିଁ ହୋଇ ପାନଖିଆ ଦ'ଧାଡ଼ି ଦାନ୍ତ ଦେଖାଇ ହସିଉଠନ୍ତି ଖୁଡ଼ିଶାଶୁ । କହନ୍ତି—"ଆଲୋ ଭୁଗ୍ରଲ୍, ଏଡ଼େବଡ଼ ଲୋକଟିଏ ଲେଖିଛି—ଲୋଖ ଭୋଜେ ଯଥା ସ୍ୱାର୍ଥାଦ କରି, ଦ୍ରୌପଦୀ ପରେ କହେ ଦେବାଲାଗି । କ'ଣ କହନ୍ତନ—ପିଲା ଆଳରେ ମାଆ ଖାଏ, ବାଛୁରି ଗୁଳ ଗୁଲୋଉ ଥାଏ । କହିବୁ ତ ତୋର ମନ ହେଉଛି ଗୁହା ପିଇବାକୁ । ଆଉ, ଖୁଡ଼ୀକୁ କଅଁ ସାଙ୍ଗ କରାହେଉଛୁ ? ନାହିଁଲେ ମାଆ । ମୋର ଲୋଡ଼ା ନାହିଁ ଗୁହା । ଶୁଖିଲ ଘନ ପୁଞ୍ଜେ ଖାଇ ଉଠିଛି ଯେ, ଖାଲି ଆମ୍ବିଲା ହାକୁଟି ଆସୁଛି ।"

ଓଠ ଚପି ହସେ ଶିଉଲି । ଆସର ଭାଳିଯାଏ ।

ନର୍ମଦା ଯେମିତି ଗୋଟିଏ ଦୁଷ୍ଟ ଗ୍ରହ । ଗୋଟାଏ ଲଜ୍ଜା ତା'ର । ସିଏ ଯେମିତି କେଉଁଠି ଖାପ ଖାଇପାରେ ନାହିଁ । କିନ୍ତୁ କାହିଁକି ?? ସ୍ୱାଭାବିକ ହେବାର ଆପ୍ରାଣ ଚେଷ୍ଟା ତ କରିଆସିଛି ।

ତେବେ ?

ପ୍ରଶ୍ନ ପରେ ପ୍ରଶ୍ନ ନିଜକୁ ପଗ୍ଲୁରି ଗୁହା କରେ ନର୍ମଦା । ଶ୍ୱଶୁରଙ୍କୁ ଗ୍ଲା' ବଢ଼ାଇ ଦିଏ, ଅନ୍ୟମାନଙ୍କୁ ଦିଏ, ନିଜେ ବି ପିଏ ।

ଆଉ ଦିନେ ଦିନେ ନର୍ମଦା କଲେଜରୁ ଫେରିଲାବେଳକୁ ସେମାନେ ବସି ଖାଉଥାନ୍ତି । ଥାଳିଆରେ ଗରମ ଚୁଡ଼ି, ବାଇଗଣ ସିଝୁଲା, ପୋଇ ଶାଗ, ଶୁଖୁଆମୁଣ୍ଡ ଛଅଣ ଇତ୍ୟାଦି । ପୋଇଖାଡ଼ି ରହି ରହି ଗ୍ରେବାଉଥାଏ ଶିଉଲି । ତା ପାଖରେ ତା ସାନ ଭଉଣୀ ଉମା ଆଉ ଖୁଡ଼ୀଶାଶୁ ଚୁଡ଼ି ଗ୍ରେବାଉଥାନ୍ତି । ନର୍ମଦାକୁ ଖୁବ୍ ଭଲଲାଗେ ଏଇ ପରିବେଶ । ତାର ବି ଲୋଭ ହୁଏ ଏମିତି ଟିକଏ ଗିଥିଲ ଜୀବନର ସ୍ୱାଦ ପାଇବା ପାଇଁ । ନର୍ମଦାର ହଠାତ୍ ଖୁସିର ଆନନ୍ଦରେ ଉଜ୍ଜ୍ୱଳ ଦିଶୁଥିବା ମନଟାରେ ଅଗ୍ନକଣ କାଳ ଢାଳି ଦିଅନ୍ତି ଖୁଡ଼ୀଶାଶୁ—ନିଷ୍ଠୁର ଭାବରେ—

"କଣ ଦେଖୁଛୁ ? ଆଲୋ ଏ ମାଇପିଖିଆ । ଇଏତ ଆଉ ଅଣ୍ଟିରଙ୍କ ସଙ୍ଗେ ସମାନ ହୋଇ ବସି ଭୋଜନ ଖାଇବା ନୁହେଁ ? ଏଣେ ବଡ କୁଟୁମ୍ବ ଘରେ ଛଅଣ କ'ଣ ଅଣ୍ଟୁଛି ? ପଢ଼ିଲୁ ରହିଲେ ଖାଆ ପୋଇ ଡାଙ୍ଗ ।"

ଥାଳି ପାଖରେ ଯଦିଓ ମାଛ କଣ୍ଟା, ମୁଣ୍ଡର ଖୋଳପା ସବୁ ଜୁଡ଼ା ହୋଇଥାଏ, ତଥାପି ନିଜକୁ ଅପରାଧିନୀ ପରି ମନେହୁଏ ନର୍ମଦାର । ଏ ଘର ବୋହୂହୋଇ ସେ

ସମସ୍ତ ଆଗରୁ ଖାଉଛି । ସେ ମଧ୍ୟ କଲେଜରୁ ଫେରି ଏମାନଙ୍କ ସଙ୍ଗେ ଖାଇପାରନ୍ତା ତ ! ତାର କଣ ଲୋଭ ହୁଏନା ଏମିତି ଏକ ଅଳସ ଦ୍ୱିପ୍ରହରରେ ବନ୍ଧୁ ବାନ୍ଧବୀ ସମସ୍ତଙ୍କୁ ଡାକି ଡାକି କରି ଉପଭୋଗ କରିବାକୁ ? ଉତ୍କଣ୍ଠା ନ ଥିବ, ବ୍ୟସ୍ତତା ନ ଥିବ, ଏମିତି ହାଲୁକା ଭାବରେ ପଡ଼ି ମାଜି ହୋଇ ଗାଧୋଇ ଦର୍ପଣ ପାଖରେ ବସି ସୁନ୍ଦର କରି ଟିକି ଟିପାଟିଏ ପିନ୍ଧି ହାଲୁକା ଶାଢ଼ୀ ସଙ୍ଗେ ହାଲୁକା ଗୀତ ଦୁଇପଦ ଗୁଣୁଗୁଣୁ କରି ଗାଇବାକୁ । ଏମିତି ହାଲୁକା ମନ ନେଇ ଗତ ରାତିର ସ୍ମୃତିର ଫଗୁଆ ଫିଟେଇବାକୁ ତାର କ'ଣ ମନ ହୁଏନା ?

ଏମିତି ନରମ ଦ୍ୱିପ୍ରହରରେ ବସି ଟିକେ ଟିକେ ଶୋଷିବେଇ ଶୋଷିବେଇ ପୋଇଖାଡ଼ାର ସ୍ୱାଦ ପାଇବାର ସ୍ୱପ୍ନ ସିଏ କ'ଣ ଦେଖି ନ ଥିଲା ?

ପୋଇଖାଡ଼ାର ରସ, ସଜନା ଛୁଇଁର ସ୍ୱାଦ, ବିଗତ ରାତିର ମଧୁର ସ୍ମୃତିର ରୋମନ୍ଥନ ।

ବେଳ କାହିଁ ? ବେଳ କାହିଁ ?

ଜୀବନଟା ଖାଲି ଦୁଃଖର ବେଗରେ ଧାଉଁଛି । ଏକତରଫା ରାସ୍ତା—ଫେରିବାକୁ ବାଟ ନାହିଁ ।

କେତେଥର ଭୁକ୍ତଭୋଗୀ କହୁଛି ନର୍ମଦା "ଥାଉ ବୋଉ, ଆସିଲେ ଭାତ ଖାଇବ ।" ହେଲେ ଶାଶୂ ଶୁଣନ୍ତି ନାହିଁ । ଖାଲି ପେଟରେ ପିତ୍ତ ପଡ଼ିଯିବ । ପିଲାବୟସ ।

ଝୁଡ୍ଡୀଶାଶୂ ଓଠ ନେଫେଡ଼ି ହସନ୍ତି । ମୁହଁମୋଡ଼ି ଶିଉଳି କହେ, "ମୋଠୁ କମା ପାଞ୍ଚବରଷ ବଡ଼ । ହୁଁ—ପିଲା ହେବେନି କାହିଁକି ? ରୋଜଗାରିଆ ବୋହୂ ପରା ! ମାସପୂରିଲେ ଶାଶୂ ହାତରେ ଟଙ୍କା ଦେଉଛନ୍ତି ଯେ !

ଝୁଡ୍ଡୀଶାଶୂ ଉହୁଁଙ୍କି ଉଠନ୍ତି । "ଯା—ଯା—କଣ କହୁନ୍ତନ କହିବ ନାଇଁ, କହିଲେ ଏଘରେ ରହିବ ନାଇଁ ! ଖଣ୍ଡିଆ ପଥର ଧୋଇବ ନାହିଁ, ତାଟିକିଲା ଭାତ ଖାଇବ ନାହିଁ । ଆଲେ କ ଟଙ୍କା ! ତୋର ବାପା ତତେ ଯାହା ଦେଇଛି, ଶହେବନ-ଯାକ ରୋଜଗାର କରିଦେଲେ ସମାନ ହେବ ତା ସାଥିରେ ? ଶୁନହ ଲୋ; ଏଇନେ କ'ଣ ବୋଲି କଣ ବାହାରୁଥିଲ ତୁଣ୍ଡରୁ । କାଟକିଆଣୀ ଛଅଟଙ୍କି । ସୁହାଗି ହୋଇ ମଠାଶାଢ଼ୀରେ ଆସିଛୁ, କେତେଟା ବା ଟଙ୍କା ହେବ ! କ'ଣ ନା ବୋଉ ମ, ତମ ପାଇଁ ଆସିଛୁ । ଶ୍ୱଶୁର ପାଇଁ ବସ୍ତୁ ଟିଣେଟାଏ, ଫଳ ଦଇଟା, ମଠାହେଲେ । ଅଉ ମୋ ପାଇଁ ଟଙ୍କାଇ ଶାଢ଼ୀ ଖଣ୍ଡେ । ସ୍ତା ନା ଦରବ ! ସେ ଶାଢ଼ୀ ମୁଁ ଧୋବଣୀକୁ ଦେଇଦେବି । ହଇ ଲୋ କଥା ରଖିଲୁ ? ବୁଢ଼ା ଶୁଦ୍ଧରେ କରତ

ଚଟ୍‌କାଇ ଦେଲୁ । ସେଇ ଶୋକରେ ବୁଢାଟା ଶେଯରେ ଲାଗିଗଲାଣି । ଏ ବଂଶ ମୁହଁ ପୋଡ଼ିଦେଲୁ । ଆଜ, ଲକ୍ଷ ଦଆ ହେଉଛୁ, ଲକ୍ଷ, ଦ ପଇସାର ଦରବ ।"

"ସିଏତ ବାପାଙ୍କ ପାଇଁ ସ୍ୱେଟର ବୁଣୁଛନ୍ତି !"

"ଆଲୋ, ଯା ଲୋ ! ତୋ ବର ଜୀବନ ଆମେରିକାରୁ ଯେଉଁ କୋଟ୍ ପଠେଇଛୁ, ତାର କୋଉ ଗୁଣକୁ ଭଲ ସରି ହେବ ଏ ସ୍ୱେଟର ! ମୁଁ କିଛି କହେନି ବୁଝିଲୁ । ଧନ୍ତ ଚପି ଅଛୁ ବୋଲି ଏ ଘର ରହିଛୁ, ନ ହେଲେ ଦେବୁ ଯାହା କଲାନା "ଛି—ଛି—ଛି—ଏ ବଂଶରେ କାଳି ବୋଳି ଦେଲା !"

"ଏ ଝିଅଟି ଆସିଲେଣି ହେ କଲେଜରୁ । ଶୁଣିବ ମ !"

"ମଲା ମୁଁ ଡରିଚି କି ? ଆସୁ—ମୁଁ କାହାର ଖାଉଚି ନା ଧାରୁଚି, ସତ କହିବାକୁ ଗଲେ ମୋର ବୋପା ଘର କୋଠାରେ ଏମାନେ ସଭିଏଁ ଅଛନ୍ତି । କୋଉଥିପାଇଁ ଏତେ ଟାଣ ପଣ ଯେ !"

ଏ କଥାଗୁଡ଼ାକ ସେମାନେ କହନ୍ତି କେତେବେଳେ ? ସେଇ ନିଘୁଞ୍ଚିଆ ଉଦୁଉଦିଆ ଦିପ୍ରହର ବେଳେ । ସେତେବେଳେ କେହି ଅଫିସରୁ ଫେରି ନ ଥାନ୍ତି, ଖାଲି ଫେରିଥାଏ ନର୍ମଦା । ଦେବକାନ୍ତର ଗେଞ୍ଜି, ଅଣ୍ଡରଓ୍ୱେୟାର, ଜାମା ପ୍ୟାଣ୍ଟ କାଚୁଥାଏ ଗାଧୁଆଘରେ । ନ ଶୁଣିବାକୁ ଦି କାନରେ ହାତ ଦେଲେ ମଧ୍ୟ ସବୁ ଗୋଟି ଗୋଟି ହୋଇ କାନ ଭିତରେ ପଶିଯାଏ । ଦେହ ଭିତର ଦୁଧ ହାଡ଼, ରକ୍ତକଣିକାକୁ ବିଚଳିତ କରି ପକାଏ । ରାଗ, ଘୃଣା, ଅଭିମାନ, ଅପମାନ, ସବୁ ମିଶି ଏକ ବିଚିତ୍ର ଅନୁଭୂତି । କାହାଆଗେ ଗୁହାରି କରିବ ସେ ???

ଦେବକାନ୍ତ ଆଗେ ??

ସିଏ ମଣିଷ ନୁହେଁ; ଦେବତା ।

ଦେବତା ମଣିଷର ଯନ୍ତ୍ରଣା ବୁଝିପାରେ ନାହିଁ ।

ହସି ଉଡ଼େଇ ଦେବ ଦେବକାନ୍ତ—"ଆଃ ଏଇ ଶ୍ରେଷ୍ଠ କଥାଗୁଡ଼ାକ ତୁମେ ଶୁଣିପାରୁଛ ନମି ! ସିଏ ଯାହା କହୁ ପଛେ ତମେ ଏତେ ତଳକୁ ଖସି ଯାଅନ ।"

ଖାଲି କ'ଣ ସେତିକ ? ଏପଟରେ କର୍ତ୍ତବ୍ୟ କ'ଣ ଠିକ୍ ଭାବରେ ପାଳନ କରିପାରୁଛି ? ପାଇପାରୁଛି ଅଧ୍ୟାପନାର ଅଖଣ୍ଡ ତୃପ୍ତି ? କେମିତି ଗୋଟାଏ ଅପରାଧବୋଧରେ ଛାତି ଭିତରଟା ଜଳି ଜଳି ଯାଉଛି !!! ନା···ସେ ଛାତ୍ରୀମାନଙ୍କ ପ୍ରତି ଠିକ୍ ସୁବିଚାର କରିପାରୁନ ! ନିଜେ ଛାତ୍ରୀ ଥିଲା ବେଳେ ପ୍ରତିଜ୍ଞା କରିଥିଲା ନର୍ମଦା, ପାଠ ପଢ଼େଇବାରେ ଯେପରି ତା'ର ଅଳପ ହେଲେ ତ୍ରୁଟି ନ ରହେ । ଜଙ୍କାସୁ

ଗୁରୁଗୁରୁଜୀଙ୍କ ମନର ଅସୁମାରି ପ୍ରଶ୍ନର ଉତ୍ତର ଦେବାକୁ ସେ ଯେମିତି ସମର୍ଥ ହୁଏ ! କାହିଁକି ନ ହୋଇ ପାରିବ ସେ ? ନିଜର ନିଷ୍ଠା ଓ ମନୋବଳ ଥିଲେ ସବୁ ସମ୍ଭବ । ସେ ନିଶ୍ଚୟ ପାରିବ ।

କିନ୍ତୁ......
ପାରୁଛି କି ନର୍ମଦା ???

ଏଇଠି କଣ୍ଟାଟା ଫୋଡ଼ି ହୋଇଯାଏ । ଭାରି ଅସହାୟ ଲାଗେ ନର୍ମଦାକୁ । ଯେଉଁଥିପାଇଁ ଏତେ ସମାଲୋଚନା, ସେଥିରେ କ'ଣ ତୃପ୍ତି ପାଇ ପାରୁଛି ସେ ???

ହେଲ ଏବେ; ସକାଳ ବେଳାଟାରେ ସେ ରୋଷେଇ କରେନି କିନ୍ତୁ ରାତିଏଳ ରୋଷେଇ କିଏ କରେ ? ପୁଣି ନିଜେ ପାଠ ପଢ଼ିଲେ ତ ପଢ଼ାଇବ କଲେଜରେ !! ତା ସଙ୍ଗେ ସଙ୍ଗେ ପ୍ରତି ଦିନର ସମ୍ବାଦପତ୍ର ତାକୁ ପଢ଼ିବାକୁ ହେବ ।

କିନ୍ତୁ ଆଶ୍ଚର୍ଯ୍ୟ !!!
ଏମାନେ କ'ଣ କେବେହେଲେ ସେ କଥା ଭାବନ୍ତି ???

ଅଦ୍ଭୁତ ଯୁକ୍ତି କରେ ତା ବାଅର ଶୁଭଚିନ୍ତକ—ସିନେ ତମେ ଭଲ ପାଠ ପଢ଼ୁଥିଲ ବୋଲି, ପରିଶ୍ରମ କରି ରାତି ଅନିଦ୍ରା ହୋଇଥିଲ ବୋଲି ତା'ର ପୁରସ୍କାର ସ୍ୱରୂପ ଚାକିରି ପାଇଛ । ସ୍ତ୍ରୀ ବୋଲି ପିଲାଙ୍କୁ ମନପ୍ରାଣ ଦେଇ ପଢ଼େଇବ ବୋଲି ତ ଲେଖିଦେଇ ନଥିଲ ! ସେମାନେ କ'ଣ ତମ ପାଠକୁ ଗ୍ରହଣ କରନ୍ତି ? ହୁଃ—ବିବେକ, ଅପରାଧବୋଧ, ଏଗୁଡ଼ାକ ସବୁ ପାଗଲାମି ଏ ଯୁଗରେ ! ସଙ୍କୋଚ ଚାକିରିରୁ କେହି ସହଜରେ କାଢ଼ି ଦେଉ ନାହାନ୍ତି ମ !

ନର୍ମଦାର କିନ୍ତୁ ଏ ପାଗଲାମିଟା ଅନୁକ୍ଷଣ ଦଂଶନ କରେ ତାକୁ । ରାତିର ଶେଷ ପ୍ରହରରେ ସବୁକାମ ସାରି ଯେତେବେଳେ ବିଛଣାରେ ବହି ଧରି ବସେ ନର୍ମଦା, ଦେବକାନ୍ତ ନରମ ଗଳାରେ ଡାକେ । କଣ୍ଠସ୍ୱରରେ ଅସମ୍ଭବ ଉତ୍ତାପ ଓ ଆବେଗ ଭରିଦେଇ ଅନୁଚ୍ଚ ଗଳାରେ କହେ—ଏଇ ନମି—ଆସନ୍ତ ଟିକେ ! ଲାଇଟଟା ଭଲ ଲାଗୁନି । ଟିକେ ଗୋଡ଼ଟା ଚିପିଦେବନି ? ଏଇଟା ପରା ତୁମର ଆଉ ଗୋଟିଏ କର୍ତ୍ତବ୍ୟ । ଭାରି ଭଲ ଲାଗିବ । ଆସ—ଆସ ଟିକେ !

ଆଉ ସ୍ତ୍ରୀ ପରେ ନର୍ମଦା କ'ଣ କରିବ ? ଖାଲି କଣ ବାଧ୍ୟବାଧକତା ? ନର୍ମଦାର ପ୍ରାଣ କ'ଣ ଚାହେଁନି ଏମିତି ଟିକିଏ ମଧୁର ସ୍ପର୍ଶ ! ଭଲ ପାଇବାର ବହୁତ ଜ୍ୱାଳା । ଯାହାକୁ ସେ ଭଲପାଏ, ତାକୁ ଖୁସି ନ କଲେ ଯେ ତାର ଶାନ୍ତି ନାହିଁ ! ଆଉ ତାର ଓଠର ହସରେ ଆପଣା ଛୁଏଁ ହସ ଫୁଟେ ଆପଣା ମୁହଁରେ !

ଅପୂର୍ବ ଏ ମୁହୂର୍ତ୍ତ । ଭୁଲିଯାଏ ନର୍ମଦା ଦିନର କ୍ଷୋଭ, ଦିନର ଗ୍ଳାନି । ଅପମାନର ଧୂମ୍ରୀକୃତ ତୁଷାରଖଣ୍ଡ ତରଳି ଯାଏ ଉତ୍ତପ୍ତ ସ୍ନେହର ପରଶରେ । ନର୍ମଦା ମୁକ୍ତିର ସ୍ୱାଦ ଅନୁଭବ କରେ ।

କିନ୍ତୁ ପର ମୁହୂର୍ତ୍ତରେ ? ?

ଆଚ୍ଛା ତା କାନଟା ଏତେ ତୀକ୍ଷ୍ଣ କାହିଁକି ??

ସବୁବେଳେ ଏହି କଥାଗୁଡାକ ତାକୁ ଏତେ ଶୁଣାଯାଏ କାହିଁକି ???

ରେଜିଷ୍ଟରଟା ଧରି କ୍ଲାସରୁ ବାହାରି ଆସିଲା ପରେ କିଏ ଜଣେ ପଛରୁ କହିଲା—"ଆଚ୍ଛା ଏ ପୂର୍ଣ୍ଣି ଫାଷ୍ଟ କ୍ଲାସ ଫାଷ୍ଟ ହୋଇଥିଲେ ତା ! ଆଶ୍ଚର୍ଯ୍ୟ ! କଣ ଯେ ପଢାନ୍ତି ?"

"ହୁଁ—ନ ହେବେ କାହିଁକି ? କାହିଁକି ? ସୁନ୍ଦର ମୁହଁର ସବୁ ଜୟ ।" ପ୍ରତିବାଦ କରି ଉଠିଲା ଶ୍ରୀବାଣୀ—"ଚୁପ୍‌କର, ମିଛ କହନା ! ରେବାଅପାର ସେ କ୍ଲାସମେଟ୍ । ଭାରି ଭଲ ଷ୍ଟୁଡେଣ୍ଟ । ଏକଦମ ବ୍ରାଇଟ୍ କ୍ୟାରିଅର । ଭଲ ପଢେଇ ପାରୁ ନାହାନ୍ତି ବୋଲି ମୁଁ କହିବାରୁ ରେବାଅପା ଆଦୌ ବିଶ୍ୱାସ କଲିନି । ଜାଣୁ ସେ କୁଆଡ଼େ କଲେଜ ସେମିନାର୍‌ରେ ଚମତ୍କାର କହୁଥିଲେ ।"

"ଦୂର୍—ବାହାଘର ପରେ ଆଉ ଏଥିରେ ମନ ଅଛି ନା ! ପୁଣି ଲଭ୍ ମ୍ୟାରେଜ୍ । ଏବେ ଖାଲି ସିନେମା, ପିକ୍‌ନିକ୍, ଆଉ ଫେସନ ଚାଲିଥିବ । ପାଠ ପଢ଼ିଲେ ସିନା ପଢ଼େଇବେ !!!"

"ଏଇ ଯା ଉଠିଲେ ଲେ ଶୁଣିବେ । କେତେ ପାଟି କରୁଛୁ !"

"ଶୁଣିଲେ ନା, ଶୁଣିଲେ ଟିକେ ସିନସିୟର ହେବେ । ଭଲ ପଢେଇବାକୁ ଟିକେ ଚେଷ୍ଟା କରିବେ ! ଶୁଣିବା ନିହାତି ଦରକାର !"

ଆଃ—ଗୁରୁକ ମାଡ଼ଟା କ'ଣ ବେଶୀ ଯନ୍ତ୍ରଣାଦାୟକ ଏଇ ବାକ୍ୟବାଣ ଅପେକ୍ଷା ? ନିଜପ୍ରତି ଅକାରଣ କ୍ଷୋଭ ଓ କ୍ରୋଧରେ ନର୍ମଦାର ଭିତରଟା ଜଳି ଜଳି ଯାଏ । ନା ହେଲି ଆଦର୍ଶ ବୋହୂ, ନା ଆଦର୍ଶ ଅଧ୍ୟାପିକା ? ମାନୁଛି—ସେ କର୍ତ୍ତବ୍ୟରେ ହେଳା କରୁଛି । କିନ୍ତୁ କ'ଣ କରିବ ସେ ! ଏଇ ରବିବାର ଗୋଟିଏ ଦିନ ମନ ଭରି ପଢ଼ିବା ପାଇଁ । କିନ୍ତୁ ସେ ଦିନଟାରେ ସେ କେତେ ସମୟ ଯେ ପାଏ ? ?

ସେଦିନ ଶିଉଳିର ବାପଘରୁ ମିଠେଇ ବୋଝ ସହ ଫିଆଟ୍ ଗାଡ଼ି ଆସେ । ଦି ବର୍ଷପାଇଁ କୋଉଁ ଯାଇଛନ୍ତି ଫରେନ୍ । ପିଲା ଝିଅଟା ଶାଶୁଘରେ ଖଟି ଖଟି ହାଲିଆ । ସପ୍ତାହରେ ଦୁଇଟା ଦିନ ମନ ଭୁଲେଇବା ଦରକାର । ସକାଳରୁ ଚାଲିଯାଏ ଶିଉଳି, ଆଉ ଚାଲିଯାନ୍ତି ଖୁଡ଼ୀ ତାଙ୍କର ଝାଇଘରକୁ ।

ବାପରେ ବାପ୍—ଝିକ୍ ମାରି ଏ ଘର କଂକାଳ । ଘର ତ ନୁହେଁ, ଡାକ୍ତରଖାନା !

ଆଉ ନର୍ମଦା ??? କୋଉ ମୁହଁ ଅଛି କହିବ ବାପଘରକୁ ଯିବାକୁ ??? ଭାଇ ନେଇ ଚାଲିନେଇ ଡାକି ଆସିଛି କି ଘରେ ?

ଘରେ !!!

ନର୍ମଦାର ଆଖି ଓଦା ହୁଏ । ଭାଇ ! ଜଏ ଦେବ ଆଉ ଭାଇ ! ଏକ ମାତ୍ର ଭାଇ ତାର ପ୍ଲୁରେସିରେ ଚାଲିଗଲା । ରିଟାୟାର୍ଡ କିରାଣି ବାପା ତାର ! ପାଞ୍ଚଟି ଭଉଣୀ । କେତେ ଆଶା ନେଇ ସେମାନେ ପଢ଼େଇଥିଲେ ନର୍ମଦାକୁ । ନର୍ମଦା କଥା ଦେଇଥିଲା ସେମାନଙ୍କୁ ମଣିଷ କରିବ । ପାରିଛି ସେ !

କିନ୍ତୁ…

କ'ଣ ଦେଇଛି ପ୍ରତିଦାନ ନର୍ମଦା ??

ଖାଲି ଯନ୍ତ୍ରଣା, ଅପମାନ । ପାଦତଳେ ମାଟି ଖସି ଖସି ଯାଇଛି । ସେ ପଛର ଡାକକୁ ଉପେକ୍ଷା କରି ଚାଲି ଆସି ପାରିଛି ତ ନର୍ମଦା ଏହି ମହାନ ଆମନ୍ତ୍ରଣରେ । ଚାହିଁନତ ପଛକୁ ? କ'ଣ ପାଇଛି ସେ ? ଏହି ସର୍ବସ୍ୱ ସମର୍ପଣ ପୂର୍ଣ୍ଣାହୁତିର ଆନନ୍ଦ ତ ଅନାବିଲ ହୋଇଥାନ୍ତା……

ତେବେ ???

ସେ କ'ଣ କିଛି ପାଇନି ???

ସଂଚୟ ପର କ'ଣ ଶୂନ୍ୟ ??

ଖାଲି ଅପଚୟ ??

ଛି, ଏତେ ଛୋଟକଥା କେମିତି ଭାବି ପାରୁଛି ସେ !!

ଦେବକାନ୍ତ କ'ଣ ଭରି ଦେଇନି ତା ଜୀବନକୁ ??

ଆହୁରି ସେ ପାଇଛି ଶାଶୁ, ଶ୍ୱଶୁର, ସ୍ନେହ, ସମ୍ମାନ, ବଧୂର ମର୍ଯ୍ୟାଦା…

ତେବେ…

ସାରା ଦିନ ଯଦି ସେ ସ୍ନେହର ପ୍ରତିଦାନ ପାଇଁ ଆପ୍ରାଣ ଚେଷ୍ଟା କରେ କେବଳ ଛଅଟି ଦିନର କ୍ଷତିପୂରଣ ପାଇଁ, ଟେକବୁକ୍ର ହାତରେ ଋଣ ଶୁଝିବା ପାଇଁ, ଏଇ ରବିବାର ଦିନଟା ଯେ ମନପ୍ରାଣ ଦେଇ କାମ କରିବ ଏଥିରେ ଆଶ୍ଚର୍ଯ୍ୟ ହେବାର କଣ ଅଛି ? କରିବା କ'ଣ ତାର କର୍ତ୍ତବ୍ୟ ନୁହେଁ ?

କର୍ତ୍ତବ୍ୟ କ'ଣ ନୁହେଁ ପାଠ ପଢ଼ିବା ଓ ପଢ଼ାଇବା ?

ନା—ସେ ପଛେ ଛାଡ଼ିଦେବ ଚାକିରି, ହେଲେ କର୍ତ୍ତବ୍ୟବୋଧ ହରାଇବ ନାହିଁ ।

ଚାକିରି !!!

ସେ'ତ ମହାକାବ୍ୟ ପାଇଥିଲ । ତା ଗର୍ଭରେ ଯେ ପଡ଼ୁଛି ତା'ର ମୁକ୍ତି କାହିଁ ? କୁଆଁରୀ ଜୀବନର ପ୍ରଥମ ପ୍ରେମପତ୍ର ବଚନ ସେ ଅନୁଭୂତ । ଧର ହୁଏନା, ପୁଣି ଟୁଡ଼ି ବି ହୁଏନା । ମାସ ଶେଷରେ ଦରମାର ମୋହ କ'ଣ କେବଳ ତା'ର ? ଏ ପରିବାରର କାହାର ନୁହେଁ ? କ'ଣ ପାଇଁ ଆଜି ଶାଶୂ ଆପଣା ହାତରେ ବାନ୍ଧି ପଠଉଛନ୍ତି ନର୍ମଦାକୁ ସକାଳ ପ୍ରହରୁ ? ଠିଆ ହେବାର ମାଟି ଟିକକ କ'ଣ ଏଇ ଗୃହକର୍ମ ଯୋଗରେ ସେ ହାସଲ କରି ପାରିନ ?

ଅନେକ ବାହ ପାର୍ଣ୍ଣି ସାରିସାରି ପରେ ଠିକ୍ କଲେଜ ଜୀବନ ପରି ଥର୍ଡ଼ ଫ୍ଲାସରେ ଗ୍ରହାରଖି ସେ ନୋଟ୍ କଲ । ମନପୂତ ହେଲପରି ସେ ପଢ଼େଇ ପାରୁନ୍ଥି କ୍ଲାସ୍‌ରେ । ପାଉନ ଅଖଣ୍ଡ ତୃପ୍ତି ...

ଆଃ ··· କି ଅଦ୍ଭୁତ ଆନନ୍ଦରେ ଭରିଯାଉଛି ନର୍ମଦାର ଅନ୍ତର ! ନିଜକୁ ସମ୍ପୂର୍ଣ୍ଣ ହଜେଇ ଦେଉଛି ନର୍ମଦା ପାଠ ଭିତରେ, ଯେମିତି ହଜେଇ ଦେଉଥିଲା କଲେଜ ଜୀବନର ଛଅଟି ବର୍ଷ । ଆଉ ସେଇଥିପାଇଁ ବିଶ୍ୱବିଦ୍ୟାଳୟର କୃତିଗ୍ରହଣ ବକ୍ତା ଦେବକାନ୍ତ ମୁଗ୍ଧ ହୋଇଥିଲ, ବିହ୍ୱଳ ହୋଇଥିଲ । କେଡ଼େ ଆଗ୍ରହରେ ହାତ ବଢ଼େଇଥିଲ ·

ତିନିଥର ଆସି ଫେରିଗଲେଣି ଦେବକାନ୍ତ । ନର୍ମଦା କ'ଣ ଦେଖି ପାରୁନ ???

"ଟଉଲ୍‌ଆଟା କୁଆଡ଼େ ଗଲ ଯେ ! ପେଷ୍ଟ ଟା କିଏ ନେଲ ?"

ନର୍ମଦା କଣ ଶୁଣି ପାରୁନାହିଁ ।

ଖୁଁ—ଖୁଁ—ଖୁଁ—ଅନବରତ କାଶ । ବେଲତ କେତେ ହେଲଣି । କିନ୍ତୁ ଚାହା କାହିଁ ?

ସକାଳୁ ଏଇ ଚାହା ଟୋପାଟା ପେଟରେ ପଡ଼ିଲେ ଶାଶୂଙ୍କ ହାତ ଗୋଡ଼ରେ ବଳ ପଶେ । ଶ୍ୱାସରୋଗୀ, ବହୁ ସନ୍ତାନର ଜନନୀ ହେଲେ ମଧ୍ୟ ଅଭ୍ୟାସବଶତଃ ଘୋଡ଼ାଭିଡ଼ି ହୋଇ ରାନ୍ଧବାଢ଼ିକ ଘରକାମରେ ଲଗିଥାନ୍ତି । ସେ କାଳର ମଣିଷ ଅଧେ ବେଳଯାଏ ସ୍ୱାମୀଙ୍କ ସେବାରେ । ସ୍ୱାମୀ ସାତ ଥର ଡାକିଲେଣି, ନର୍ମଦା କ'ଣ ଆଜି ଚାହା ଦେବନ ?

ଶାଶୂଙ୍କ କାଶଟା ବଢ଼ି ଗଲଣି । ଲଣ୍ଠନଟା ଚଢ଼ିଗଲଣି । ଷ୍ଟୋଭ୍‌ଟା କେତେଦିନ ହେଲ ଖରାପ ହୋଇଛି କେହି ଠିକ୍ କରି ପାରି ନାହାନ୍ତି । ସକାଳୁ କେହି ଉଠିବା ଆଗରୁ ସବୁଦିନେ କୋଇଲା ଚୁଲି ଧରେଇ ସାରିଥାଏ ନର୍ମଦା । କିନ୍ତୁ ଆଜି ଯେ ବ୍ୟତିକ୍ରମ !

କାହିଁ ଦେବକାନ୍ତ କ'ଣ ନରୁକୁ କହିପାରି ନ ଥାନ୍ତା ? ପରୀକ୍ଷା ସରିଛି । ଚଟିଘୋଷାରି ଘରେ ବୁଲିବା, ଦିନରାତି ସିନେମା ଦେଖିବା, ଗୀତ ଗାଇବା, ରେଡ଼ିଓରୁ ଗୀତ ଶୁଣିବା ଛଡ଼ା କ'ଣ କରୁଛି ସିଏ ?

ନା—ଏ ଘରେ ପୁଅମାନେ ପାଣି ଗିଲାସେ ହାତରେ ନେଇ ପିଇବେନି ! ଦେବକାନ୍ତ ତ ଏ କଥା ବୁଝିଥାନ୍ତା···

କିନ୍ତୁ···

ନିଶ୍ଚୟ ସେ ପଟରେ କିଛି ବଡ଼ ଧରଣର ଅଘଟଣ ଘଟିଥିଲା । ନଚେତ୍ ଦେବକାନ୍ତର ସଦାପ୍ରସନ୍ନ ଉଜ୍ଜ୍ୱଳମୁହଁ ଏମିତି ଅସାଧାରଣ ଭାବରେ ଗମ୍ଭୀର ହୋଇଥାନ୍ତା କାହିଁକି ?

—ତେବେ ଜାଣି ଜାଣି ନର୍ମଦା କ'ଣ ତାଙ୍କୁ ଦେଖାଢର କରୁଥିଲା ??? ନଚେତ୍ କାହିଁକି ଏମିତି ଫାଟି ପଡ଼ିଲା ଦେବକାନ୍ତ ଚାପା ଆକ୍ରୋଶରେ ?

"କ'ଣ କରୁଥିଲା ଶୁଣେ ? ସକାଳୁ ବୁଢ଼ା ଶାଶୂ ଶଶୁର ପାଠପଢ଼ିଲା ବୋହୂ ହାତରୁ କପେ ଚା ପାଉଥିଲେ । କୃତାର୍ଥ ହୋଇଯାଉଥିଲେ । ଅନୁଗ୍ରହ କରୁଥିଲା··ଦୟା କରୁଥିଲା । ଅଭିନୟତ ବେଶ୍ କରିଆସେ । ଦିନାକେତେ ଅଭିନୟ କରି ଏବେ ପ୍ରକୃତ ସ୍ୱରୂପ ପ୍ରକାଶ ପାଇଲା ! ବାସ୍ତବିକ ଠିକ୍ ଚିହ୍ନିଛନ୍ତି କକେଇ । ପାଠପଢ଼ା ଝିଅଙ୍କର ରକ୍ତରେ ଗର୍ବ, ଅହଂକାର, ଦେଖାଢର !"

ବହୁଦିନର ପ୍ରପୀଡ଼ିତ ଲକ୍ଷ ସୁପ୍ତ ଆଗ୍ନେୟଗିରିକୁ ବିଦୀର୍ଣ୍ଣ କରି ଯେତେବେଳେ ଫାଟି ପଡ଼ିବାର ଉପକ୍ରମ ହୁଏ, ସେତେବେଳେ କ'ଣ ଇମିତି ଏକ ବିଚିତ୍ର ଅନୁଭୂତି ଉପଲବ୍ଧି କରିହୁଏ ?

ସମସ୍ତ ଶକ୍ତି ସଞ୍ଚୟ କରି ଦାନ୍ତଚିପି ନୀରବ ହୋଇ ଠିଆ ହେଲା ନର୍ମଦା । ଅସହ୍ୟ ଯନ୍ତ୍ରଣା ଓ ଅଭିମାନରେ ଫାଟିପଡ଼ିବାକୁ ଯାଉଥିବା ଆଗ୍ନେୟଗିରି ମୁହଁଟିରେ ବିଚାରବୁଦ୍ଧି, ସହନଶୀଳତା ଆଉ ଦୂରଦୃଷ୍ଟିର ସିଧାରୁ ମିଶ୍ରିତ ଅଥଚ ନିର୍ମମ ଠିପିଟାକୁ ଖୁବ୍ ଯୋରରେ ଚାପିଧରିଲା ନର୍ମଦା···

ରୁଦ୍ଧ ହୋଇ ଆସୁଥାଏ ଆଗ୍ନେୟଗିରିର ମୁଖ···

ବହୁଥାଉ ପଛେ ଅନ୍ତରରେ ତରଳ ଲଭା···

ବଡ଼ ନିର୍ଦ୍ଦୟ ଏ ମଣିଷ ସମାଜ । ମଣିଷ ସହିତ ମଣିଷର ସମ୍ପର୍କ ଏଠି ଖାଲି ନିକିତିର କଣ୍ଟାରେ ମପାଯାଏ । ଟିକିଏ ଅସତର୍କ ହୋଇଗଲେ କମ୍ପା

ନିକଟ କଣ୍ଟାଟି ଟିକଏ ଏପଟ ସେପଟ ହୋଇଗଲେ ଜୀବନର ସବୁ ସଂକଳ୍ପ, ସବୁ ସାଧନା ବ୍ୟର୍ଥ ହୋଇଯାଏ । ସତ ହୁଏ ଖାଲି ଅସହନୀୟ ମୁହୂର୍ତ୍ତର ସେଇ ପଦୁଟିଏ ଉତ୍ତପ୍ତ କଥା, ଟିକେ ବିଚ୍ୟୁତି । ବିଶ୍ୱବିଦ୍ୟାଳୟରୁ ଏତିକି ଶିକ୍ଷା କ'ଣ ସେ ପାଇନାହିଁ ?

ଏ ଚରମ ପରୀକ୍ଷା କଣ ସରିନାହିଁ ?

ସେ ଜାୟା, ସେ ବଧୂ, ସେ କନ୍ୟା, ସେ ଅଧ୍ୟାପିକା, ହୁଏତ କାଲି ସେ ଜନନୀ ହେବ । ପାରିବ—ପାରିବ—ପାରିବ ସେ ନିକଟର କଣ୍ଟା ସଳଖି ରଖି ?



## ● ଚେନାଏ ଆଲୁଅ

ଗୋଟିଏ ନାଲିଗାର । ଆଉ ତା ଉପରେ ସିଧା ହୋଇ ଲମ୍ବି ଯାଇଛି ଆଉ ଗୋଟିଏ ନାଲିଗାର...

ଆମ୍ବାସାଡ଼ର ଗାଡ଼ିର ଏଇ ଗୋଟିଏ ଚିହ୍ନର ପୁଣି ଏତେ ବେଶୀ ଲୋଭନୀୟ ଆକର୍ଷଣ ଏଇ ପ୍ରଥମ ଥର ପାଇଁ ଅନୁଭବ କଲା ସମ୍ପୂର୍ଣ୍ଣା...

ଘଡ଼ିରେ ବ୍ୟାଣ୍ଡ ବାନ୍ଧୁ ବାନ୍ଧୁ ସେ ଷ୍ଟାଣ୍ଡ ପାଖକୁ ଚାଲି ଆସିଥିଲା । ଆଉ ଆସୁ ନ ଆସୁଣୁ ନଜର ପଡ଼ିଗଲାଣି, "ଆରେ ଏଇତ, ହୁଁ ଠିକ୍ ଷ୍ଟାର୍ଟ କରିବ । ଆଉ ଗୋଟିଏ ସିଟ୍ ବାକି ଯେ ।"

"ଆ...ବଞ୍ଚିଗଲା ବାପା ବଞ୍ଚିଗଲା" ଘଡ଼ିକୁ ଚାହିଁ ତରବର ହୋଇ ପାଦ ପକାଇ ଟ୍ୟାକ୍ସିକୁ କେତେବେଳେ ଅଜାଣତରେ ସମ୍ପୂର୍ଣ୍ଣା ଉଠିସାରିଲାଣି, ତା'ବି ସେ ଜାଣି ପାରିନି...

ଅକସ୍ମାତ୍ ଅବସ୍ଥାଟା ଅନୁମାନ କରି ଇତସ୍ତତଃ ହେଲା ।

ଛାତି ଦୋ ଦୋ ପାଞ୍ଚ ହେଲା ।

ଓହ୍ଲାଇ ପଡ଼ିବ କି ଆଉ ?

କିନ୍ତୁ...

ହାତଘଡ଼ି ବାରଣ କରୁଛି—ଅସମ୍ଭବ, ଅସମ୍ଭବ ! ଆଉ ପାଞ୍ଚ ମିନିଟ୍ ବିଳମ୍ବ ହେଲେ କଦାପି ସେ ଲକ୍ଷ୍ୟସ୍ଥଳରେ ପହଞ୍ଚି ପାରିବ ନାହିଁ । ଆଉ ଯଦି ନ ପହଞ୍ଚି ପାରେ...

ଆରେ ଗାଡ଼ିଟା ଛାଡ଼ି ଦେଲାଣି ଯେ ! ଠିକ୍ ଅଛିମ, ଠିକ୍ ଅଛି । ଆଉ ନ ହେଲେ କୋଉ ଏବେ ଅସୂର୍ଯ୍ୟମ୍ପଶ୍ୟାଟା ଶୁଣେ ? ଜମା କେହି ଦେଖି ନଥିବେ ତାକୁ ! ଏ'ତ କିଛି ନୂଆ କଥା ନୁହେଁ । ଏମିତି ବହୁବାର ଅସୁବିଧାରେ ପଡ଼ିବାକୁ ହୋଇଛି ତାକୁ । ବାର ବର୍ଷ ଧରି ଏଇମିତି ଢିମତ ଲଢ଼େଇ କରି ସେ ଆଜି ହଷ୍ଟେଲରେ ରହିଲା । ବସ୍ ଟ୍ରେନ୍‌ରେ ଅନବରତ ଯାଇ ଆସି ଏସବୁ ଦେହସୁହା ହୋଇଗଲାଣି ।

ଜୀବନ ସଂଗ୍ରାମ...

ସ୍ଥିତିପାଇଁ ଟିକିଏ ସ୍ଥାନ ଲୋଡ଼ା...

ପାଦତଳେ ଟିକିଏ ମାଟି...
ଅନୁକ୍ଷଣ ଠେଲା ପେଲା ଭିତରେ ନିଜର ଜାଗା ଖୋଜି ନେବାକୁ ହେବ ।
ଏ ଯୁଗର ଜୀବନ ସଂଗ୍ରାମ—
ଆଉ ଏଥିରେ ପୁଣି ଅନୁଭୂତି ?
ସ୍ବର୍ଗସୁଖ ?
ହୁଁ ! ଅଚଳ ବଧିର ହୋଇ ଜୀବନ ସ୍ନାୟୁତନ୍ତ୍ରୀ ।
ଅନୁକ୍ଷଣ ଯୁଦ୍ଧ କରି କରି ବଞ୍ଚିବା ବା କ'ଣ ?
ଏ'ତ ତା'ର ନିତିଦିନିଆ ଘଟଣା ।

କ୍ଷୋଭରେ ଘଣ୍ଟି ଡାଲି ଫୁଟୁ ଫୁଟୁ ଯଦି ବେଳ ହୋଇଗଲା·· ଅବାଞ୍ଛିତ । ଗ୍ରାମବାସୀଙ୍କ ତଣ୍ଟି ନେଇ ନେଇ ଆଉ ଦରଫୁଟିଲା ଡାଲି ଗୋଳେଇ ଭାତ ଦଲୁଣ୍ଡା ଖାଇଛି କି ନାହିଁ—

ଆଃ ବସ୍‌ଟା ଛାଡ଼ିଦେଲାଣି । ପୁଣି ଅଧଘଣ୍ଟାଏ ଅପେକ୍ଷା । ଅଗତ୍ୟା ବାଧ୍ୟ ହୋଇ ଟ୍ୟାକ୍‌ସି ଷ୍ଟାଣ୍ଡ । ଆଉ ଟ୍ୟାକ୍‌ସି ନା ! ଓହୋ ଟିକେ ଯଦି ଫାଙ୍କ ବି ରହନ୍ତେ ! ଘଡ଼ା ଘଡ଼ା ଲୋକ ଭର୍ତ୍ତି । କେତେ ଲୋକ ଏବେ ଯିବା ଆସିବା କରୁଛନ୍ତି ବସ୍‌ରେ ଟ୍ୟାକ୍‌ସିରେ ? ସବୁ କିସମର ଲୋକ । କାହା ପାଖରେ ସେ ନ ବସିଛି ? ?

କିନ୍ତୁ...

ନିଜକୁ ଯଥାସମ୍ଭବ ସଂକୁଚିତ କରି ଏକଦମ୍ ଦୁଆର ପାଖକୁ ଲାଗି ବସିଲା ସଂପୂର୍ଣ୍ଣା ।

ସେ କଣ ବସିଛି ?

ଏଥର ସେ ଧଳାକାକର ଟୁ ଆଧରା ଅପରିଚ୍ଛିନ୍ନ ଝିଆ ବୁଢ଼ା ନୁହେଁ ମ, ଯିଏ ଅନବରତ ଦାଜର ଦାଜର ହୋଇ ସଂପୂର୍ଣ୍ଣାର କାନ ପାଖରେ ଅଡ଼ା ଧକେଇବ ।

ସିଂଘାଣିନାକା ପିଲାଧରା ଷୋଡ଼ଶୀବଧୂ ନୁହେଁ ଯେ ଯାହାର ପିଲାର ମୁତକନ୍ଥା ବାଜି ଦେହ ସନ୍ତସନ୍ତିଆ ଲାଗୁଥିବ ଅନବରତ !

କିନ୍ତୁ ··

ଏ ଯେ ଆତୁର ମାରାତ୍ମକ ! !

ଏହି ପ୍ରିୟଦର୍ଶନ ଚେହେରା କେମିତି କେଜାଣି ଚଢ଼ିଲା ବେଳେ ଆଦୌ ନଜରରେ ପଡ଼ିଲାନି ତା'ର !

ଆଶ୍ଚର୍ଯ୍ୟ...

ଛଅଫୁଟ ଲମ୍ବାର ଶରୀର । ହେଲେ କେତେ ବା ଜାଗା ଅଧିକାର କରିଛି ?

ଝୁର୍ଣ୍ଣି କରିଛି ଆଗକୁ । ମୁଣ୍ଡଟା ପୂରା ଭୂତରେ ବାଜୁଛି । ନିଜକୁ ଯଥାସମ୍ଭବ ସମ୍ପୂର୍ଣ୍ଣାର ସ୍ପର୍ଶକୁ ବଞ୍ଚାଇବାକୁ ଯାଇ ସେ ଅବା ଆହୁରି ଅଧିକ ଶୀର୍ଣ୍ଣ ହୋଇଯାଉଛି ।

ଉହୁଁ.. କମାରୁ ନଜର ପଡୁନାହିଁ ତା'ର ।

ଖାଲି ଚଷମା ! ଆଖି ଦୁଇଟି ବନ୍ଦ ଉପରେ ନିବଦ୍ଧ ଯେ !

ବେଶ୍ ପୁରୁଣା ଦାଦରା ଟ୍ୟାକ୍‌ସିଟା ଏକ ନିରନ୍ତର ଯାନ୍ତ୍ରିକ ଆର୍ତ୍ତନାଦ କରି ଛୁଟିବାକୁ ଲାଗିଛି ।

ସମ୍ପୂର୍ଣ୍ଣା ମୁହଁ ବୁଲାଇ ରାସ୍ତାକୁ ଚାହିଁଲା । ମୁଖସ୍ଥ ହୋଇ ଗଲାଣି ଏରାସ୍ତା । ବାରମ୍ବାର ପୁନରାବୃତ୍ତି । ନୂତନତ୍ୱ ନାହିଁ...

ଅଥଚ...

ଏଇ ଥିଲା ତାର ଆକାଂକ୍ଷିତ ଜୀବନ !

ଏଇ ଥିଲା ତାର କଳ୍ପଲୋକ !

ଏଇ ଜୀବନ ପାଇଁ ସେ ବାର ବର୍ଷ ଧରି ଅହରହ ସଂଗ୍ରାମ କରି ଆସୁଛି । ନିଜପାଇଁ ସ୍ଥାନ, ସ୍ଥିତି, ସମ୍ପୂର୍ଣ୍ଣ, ହେବା ନିମନ୍ତେ ସାଧନା ସେ ପାଇଛି କି ?

ହଁ—ଗୋଟାଏ ଯୁଗ ସରିଗଲାଣି ।

କିନ୍ତୁ ..

ସେତେବେଳେ ସେ କ'ଣ ସମ୍ପୂର୍ଣ୍ଣା ଥିଲା ?

ସେ ଥିଲା ଅପର୍ଣ୍ଣା ।

ଲକ୍ଷ୍ମୀଙ୍କ ନାମରେ ପରପର ଘରର ଝିଅଙ୍କର ନାମ ଦେଇଥିଲେ ଲକ୍ଷ୍ମୀ ମନ୍ଦିରର ତାର ନନା !

ଅପର୍ଣ୍ଣା ତ ଶେଷ ଝିଅ...

ସଂଗ୍ରାମ କରି ନଥିଲେ ସେ ଏତେ ବାଟ ଆସିପାରି ଥା'ନ୍ତା !

ସେହି ବାରହତେକୃଷ୍ଣପୁର ଶାସନର ଭାଟିପେରା ମାଟିଘରର କଅଁଚୁଦାମୁଲ୍ଲା ବାଣୀବିହାର ପର୍ଯ୍ୟନ୍ତ ।

ହଁ.. ପୁଣି ଯେଉଁ ଘରେ ଏଗାର ବର୍ଷର ଝିଅ ଲକ୍ଷ୍ମୀ ଗୋଲା କନିଆଁ ହୋଇ ବସ୍ତ୍ର ହୋଇ ଶାଶୁଘରକୁ ଯାଇଛି ସେଠି ଏଗାର ବର୍ଷର ଅପର୍ଣ୍ଣା ପୁଣି ସିଦ୍ଧାନ୍ତ ସେଦିନ ଟଳାଇ ଦେଇ ପାରିଲା ତ !

ସେ କେମିତି ପାରିଛି ?

ସେ ପୁଣି ଏଇଥିରେ ବିଚଳିତ ହେବ ?

ଭୟାବହ ଏକ ଘଟଣା ।

ଅବିସ୍ମରଣୀୟ ସେହି ଘଟଣା ତାକୁ ଶକ୍ତି ଦେଇଥିଲା ଏମିତି ସଂଗ୍ରାମ କରିବା ପାଇଁ ।

ପଦ୍ମାକାମାର ଗୋରା ତକ ତକ ଚେହେରାଟା ଆଖି ଆଗରେ ନାଚି ଯାଉଛି ।

ସୁନ୍ଦର ସୌ:ଗ୍ୟ ବର । ସେ ପୁଣି ବନା ଯୌତୁକରେ ବାହା ହୋଇଥିଲା । ତେବେ ? ? ?

ସେଦିନ ସେହି ଅଦ୍ଭୁତ ସୁନ୍ଦର ଅସହାୟ ଚେହେରାଟା ଏକାନ୍ତ ଶୂନ୍ୟ, ଫାଙ୍କା, ନିର୍ଜନ, ହାହାକାର ପରି ଦୁଇବାହୁ ବିସ୍ତାର କରି ଝୁଲୁଥିଲା ତାଙ୍କର ବାରପଟ ଝିଙ୍କାଳିଆ ବରଗଛଟାରେ ।

ସେତେବେଳେ କେତେ ବର୍ଷ ହୋଇଥିଲା ଅପର୍ଣ୍ଣାକୁ ?

କିନ୍ତୁ···

ସେ ବେଶ୍ ବୁଝି ପାରୁଥିଲା ।

ରାତି ଅଧରେ ଶାଶୂଘରୁ ଲୁଚି ପଳେଇ ଆସିଥିଲା ପଦ୍ମାବଣ୍ଡ, ତାର ନାନୀ ।

ହେଲେ କିଏ କ'ଣ ବିଶ୍ୱାସ କଲା ତା ମୁହଁର କଥା ?

ଦେବୋପମ ଦେବେଶ୍ୱର । ସେ ପୁଣି ସଦ୍ୟବିଧବା ଯୁବବଯ୍ସୀ ଭାଇବୋହୂ ଘରକୁ ନିଘଞ୍ଚ ରାତି ଅଧରେ ପଶି ପାରିଲେ ? ?

ତା ଦେହରେ ହାତ ଦେଇ ପାରିଲେ ? ?

ଛି—ଛି—ଛି—ତୁଣ୍ଡରେ ପୋକ ପଡ଼ିଲାନି ?

ଏ ପାପ କଥା ପାଟି କହିପାରିଲା ? ?

ଦୁଶ୍ଚରିତ୍ର ହେଲା ଭଲଘରର ଭୁଆସୁଣୀ ବିଧବାବୋହୂ ପୁଣି ପରପୁରୁଷ ପୂରାଉଛି ଘରେ !

ଆଉ ତାପରେ···

ସେ ଭୟାବହ ରାତିର ଅନୁଭୂତି ପରେ କ'ଣ କରିଥାନ୍ତା ପଦ୍ମା ?

ସେହି କଳା କିଟିକିଟି ଅନ୍ଧାର ରାତିରେ ପ୍ରାଣବିକଳରେ କେଉଁ ମନ୍ତ୍ର ବଳରେ ସାହସିନୀ ପଦ୍ମା ଧାଇଁ ଧାଇଁ ଆସି ବାପଘରେ ପହଞ୍ଚି ଥିଲା ତା ନିଜେ ବି ସେ ଜାଣିନି । ରାତି କେତେ ହେବ କେଜାଣି । ହଁ, ଅଧରାତିରୁ ଅଧିକ ହେବ । ନନା ଜଗନ୍ନାଥ ମନ୍ଦିରରୁ କାମସାରି ଅଭଡ଼ା ଧରି ଅଧରାତିରେ ଘରକୁ ଫେରୁଥିଲେ । ଆଉ ବୋଉ ତାକୁ ଓ ତା ତଳ ଦୁଇ ଭାଇଙ୍କୁ ଉଠାଇଥିଲା ଅଭଡ଼ା ଖୁଆଇବାକୁ ।

ଆଉ ଠିକ୍ ସେତିକିବେଳେ ··

ନନା କ'ଣ ଆଦରରେ ଟାଣି ନେଇଥିଲେ ତା ପଦ୍ମାନାନୀକୁ ?

କ'ଣ ଅଭସ୍ଥ ହେଇଥିଲେ ?

ଆଉ ବୋଉ···

ଛି—ଛି ନାକରେ କ'ଣ ଭ୍ରୂରୁ କୁଞ୍ଚିତ କରି ନ ଥିଲ ତା'ର ବୋଉ ? ତା ନିଜର ଜନ୍ମକଲା ବୋଉ ?

ଶ୍ୱଶୁର ଘରର ଭଙ୍ଗାମାଟି ଚୁଡ଼ି ମାଇକିନିଆ ଝିଅର ଏ ବେଭସ୍ତ ଆସ୍ଫାଳନ ଦେଖି କମିତ ଶିହରି ନ ଉଠିଥାନ୍ତା ସିଏ ?

ତଥାପି···

ତଥାପି ସମସ୍ତ ଶକ୍ତି ଦେଇ ବଡ଼ମ୍ଭିତ ଚେତନର କରୁଣ ଇତିହାସ ଆଖି-ଲୁହରେ ବଖାଣି ଥିଲ ତା'ର ପଦ୍ମାନାମ, ତା'ର ବାପବର୍ଣ୍ଣିତ ଦେଉଣୀ ଅପର୍ଣ୍ଣା ଆଗରେ ।

ସେ ଅବଲୁପ୍ତ ଶୋକାଚ୍ଛନ୍ନ ଅଧ୍ୟାୟର କନ୍ଧ୍ୱାଂଶ ପରେ ଶୁଣିଛି ସିଏ ।

କିନ୍ତୁ···

ସେହିଦିନୁ ବୋଧହୁଏ ଅପର୍ଣ୍ଣା ମରିଯାଇ ସପୂର୍ଣ୍ଣା ଜନ୍ମନେଲ ।

ତା ନାମ କ'ଣ ଏଇଆ ସୃଷ୍ଟିଥିଲ ?

ପ୍ରତିଶୋଧ ପରବର୍ତ୍ତୀ ଯୁଗ ନେଇ ··

ନେଇ ଅପର୍ଣ୍ଣା···

ସେ ସପୂର୍ଣ୍ଣା ହେଉ···

× × ×

କେତେ ରାତି କେଜାଣି । ନାଇଁମ, ସକାଳ ହୋଇଥିଲ ବୋଧହୁଏ ! ପାଟିଗୁଣ୍ଡରେ ନିଦ ଭାଙ୍ଗି ଯାଇଥିଲ ଅପର୍ଣ୍ଣାର । ତା ଦେହକୁ ଲଗି ମଶିଣାରେ ଶୋଇଥିବା ପଦ୍ମାନାମ ଆଉ ତା ପାଖରେ ନଥିଲ । ସେମାନେ ସେହି ଶୂନ୍ୟ, ହାହାକାର, କରୁଣ ପ୍ରଶ୍ନବାଚୀ ପରି ନିସ୍ତବ୍ଧ ରଣା ସୁନ୍ଦର ଶରୀରଟାକୁ ଆବିଷ୍କାର କରିଥିଲେ ବାଡ଼ିପଟୁ ।

ଗଛରେ ଦଉଡ଼ି ଦେଇ ଆତ୍ମହତ୍ୟା କରିଥିଲ ପଦ୍ମାନାମ···

ଏହାପରେ ଯଦି ଜିଦ ଧରିବ ଅପର୍ଣ୍ଣା ନିଜ ନାମଟାକୁ ବଦଳାଇବାକୁ, ନିଜ ଗୋଡ଼ରେ ଠିଆ ହେବାକୁ, ବିବାହ ବିରୁଦ୍ଧରେ ମୁକ୍ତ ଘୋଷଣା କରିବାକୁ, ତେବେ ସେଥିରେ ଆଶ୍ଚର୍ଯ୍ୟ ହେବାର କ'ଣ ଅଛି ?

କିନ୍ତୁ···

ସପୂର୍ଣ୍ଣା କ'ଣ ତାହା ହୋଇଛି ?

ନ ହେଉ; କ୍ଷତି କ'ଣ ?

ଏବେ ସମ୍ପୂର୍ଣ୍ଣା ନିତ ଦିନ ସିଟି ଭାଲପାଇ ହାତରେ ଧରି ଖାଏ । ବସ୍‌ର ରେଲିଂ ଧରି ଝୁଲି, ଠେଲପେଲ ଖାଇ ପେଟ ପୋଷିବାକୁ ସଂଗ୍ରାମ କରେ । ମୂଲ୍ୟ-ବୋଧକୁ ରକ୍ଷା କରିବାକୁ ଯାଇ ବନ୍ଧୁ ହାତପାହାନ୍ତାରେ ଥିବା ଆଶା ଆଉ ସବୁ ଜାଣି ଜାଣି ହରାଏ ! ସ୍କୁଲ ଅଧ୍ୟାପିକା ସମ୍ପୂର୍ଣ୍ଣା ମିଶ୍ରଙ୍କ ପାଣିପ୍ରାର୍ଥୀଙ୍କୁ ବାରମ୍ବାର ପ୍ରତ୍ୟାଖ୍ୟାନ କରେ । ନିତି ବସ୍ ବା ଟ୍ୟାକ୍‌ସିରେ ଧାଇଁ ଧାଇଁ ଯାହା ଅବା ରୋଜଗାର କରେ ସେଥିରୁ କେତେ ଅଂଶ ନିଜପାଇଁ ଖର୍ଚ୍ଚ କରିବାର ସୁଯୋଗ ସେ ପାଏ ?

ହଁ···ପାଏ ଆତ୍ମତୃପ୍ତି ।

ସେ ବୁଆଡ଼େ ତା ଶଯ୍ୟାଶାୟୀ ବୃଦ୍ଧ ପିତାଙ୍କ ରୋଜଗାରିଆ ପୁଅ···

ତା ନାଁ ବାଲକ ପିଲାମାନଙ୍କର ଆଗ୍ରହ ଥିଲ··

ଏବେ କ'ଣ ସତରେ ତା ନାମର ସାର୍ଥକତା କରିପାରୁଛି ସମ୍ପୂର୍ଣ୍ଣା ?

ହଠାତ୍ ଅକସ୍ମାତ୍ ଗୋଟାଏ ଧକ୍‌କା ଖାଇ ଟ୍ୟାକ୍‌ସିଟା ନାଚି ଉଠିଲ । ଆଉ ସତକୁ ସତ ସମ୍ପୂର୍ଣ୍ଣାର ଭାବନାରେ ପୂର୍ଣ୍ଣଚ୍ଛେଦ ପକାଇ ଗୋଟାଏ ଉଦ୍ଧତ କଣ୍ଠସ୍ୱର କହିଉଠିଲ, "Sorry, ଏକାନ୍ତ ଭାବରେ ଦୁଃଖିତ । କିନ୍ତୁ ନିଜକୁ ସଞ୍ଚିତ କରିବାର ଗୋଟାଏ ସୀମା ରହିଯାଉଛି । ବିଶ୍ୱାସ କରନ୍ତୁ, ମୁଁ ସମ୍ପୂର୍ଣ୍ଣ ନିରୁପାୟ ।"

ସମ୍ପୂର୍ଣ୍ଣା ଅପ୍ରତିଭ ହେଲ । ଉତ୍ତର ନ ଦେଲେ ଅନ୍ୟାୟ ହେବ । ମାନିବାକୁ ହେବ ନିହାତି ଭାବରେ ଭଦ୍ର ସେ ! ଯଥେଷ୍ଟ ସଙ୍କୁଚିତ ହୋଇ ବସିଛନ୍ତି । ବେଶ୍ ଆଘାତ ପାଇଛନ୍ତି ସେ । ଆଉ ସମ୍ପୂର୍ଣ୍ଣା ଦେହରେ ··

"ନା ଠିକ୍ ଅଛି ସେ କିଛି···ସେ କିଛି ନୁହେଁ" କହି କବାଟ ସଙ୍ଗେ ମିଶିଯିବାକୁ ପ୍ରୟାସ କଲ ସମ୍ପୂର୍ଣ୍ଣା ।

"ଆଜି ବଡ଼ ଦୁର୍ଯୋଗର ଦିନ ଆପଣଙ୍କର । ଆପଣଙ୍କର ଯଦି ସାଷ୍ଟ ପିରିୟଡ଼୍‌ଟା ନ ଥାନ୍ତା ନା ଆପଣ ନିର୍ଘାତ ଟ୍ୟାକ୍‌ସିରେ ଚଢ଼ିବା ସଙ୍ଗେ ସଙ୍ଗେ ଓହ୍ଲେଇ ପଡ଼ିଥାନ୍ତେ ।"

ଉଜ୍ଜ୍ୱଳ ବୁଦ୍ଧିଦୀପ୍ତ ଆଖିରେ କୌତୁକପ୍ରଦ ଚାହାଣି ବେଶ୍ ଆମୋଦ-ଦାୟକ ।

ସମ୍ପୂର୍ଣ୍ଣା ମୁହଁରେ ବି ଅଜାଣତାରେ ସେ କୌତୁକର ପ୍ରତିବିମ୍ବ ପଡ଼ିଲ ।

"କିନ୍ତୁ ଆପଣ ଜାଣିଲେ କେମିତି ?"

"କେଉଁ କଥା ? ଏଇ କ୍ଲାସ ଥିବା କଥା ନା ଆପଣଙ୍କର ଏଇ ମାନସିକ ଦ୍ୱନ୍ଦ୍ୱ କଥା ?"

"ଧରନ୍ତୁ ଉଦ୍ଭଟ କଥା !" ହଠାତ୍ ବେଶ୍ ଅନ୍ତରଙ୍ଗତାର ସ୍ୱର ବାଜି-ଉଠିଲା ସମ୍ପୂର୍ଣ୍ଣାର କଣ୍ଠରେ ଅଜାଣତାରେ ।

"ଝୁଲ୍ ସ୍କୁଲ । ହାତରେ ଧରିଛନ୍ତି ସାଇକେଲଟିଏ ବନ୍ଧ । ବାରମ୍ବାର ଘଣ୍ଟାକୁ ଚାହୁଁଛନ୍ତି ଆଉ ଯାଉଛନ୍ତି ବାଣୀବିହାର !"

"କାହିଁ ତ୍ରୁଟୀ ହେବାର ସମ୍ଭାବନା ବି ହୁଏତ ଥାଇପାରେ ।" ବେଶ୍ ଖୁସିରେ ଉଜ୍ଜ୍ୱଳ ଦେଖାଯାଉଛି ସମ୍ପୂର୍ଣ୍ଣାର ମୁହଁଟା !

"ଅବଶ୍ୟ ଦେଖିଲେ ଏଭଳି ଭୁଲ ପ୍ରଥମତଃ ସମସ୍ତେ କରିବା ସ୍ୱାଭାବିକ । କିନ୍ତୁ ତ୍ରୁଟୀର ଏଭଳି ଉଦ୍‌ବେଗ କ୍ଲାସ ଆଟେଣ୍ଡ କରିବାକୁ ! ପୁଣି ଏ ସୁଟରେ ! ଏଭଳି ଭୁଲ ଆଉ କିଏ କରିପାରେ । ହେଲେ..."

"ତା ମାନେ ଆପଣ ଭୁକ୍ତଭୋଗୀ । ଅଭିଜ୍ଞତାରୁ କହୁଛନ୍ତି । ତା ମାନେ ନିଶ୍ଚୟ ଅଧ୍ୟାପକ ।"

"ଅନେକ ସତ ଅର୍ଥାତ୍ ଅଧ୍ୟାପକ ଥିଲି ।"

"ଆଉ ବର୍ତ୍ତମାନ ବାଣୀବିହାର ଯାଉଛନ୍ତି ଯେ 'ବୋଧେ କ୍ଲାସ ନେବାକୁ' ପୁଣି ଏପରି ବିକଳ ଅବସ୍ଥାରେ ?"

"ସେ ଭଳି ଦୁର୍ମତି କେବେ କରିଛି ବୋଲି ଅନ୍ତତଃ ମୋର ମନେ ହେଉ ନାହିଁତ !" ବେଶ୍ ବେଶ୍ କୌତୁକଭରା କଣ୍ଠରେ କହିଲେ ।

"ତେବେ ?"

( ନିଜର ଅଯଥା କୌତୂହଳରେ ସମ୍ପୂର୍ଣ୍ଣା ନିଜେ ଟିକେ ସଙ୍କୁଚିତ ହୋଇ ଉଠୁଥିଲି )

"ଅଦ୍ଭୁତ ଧାରଣା ସବୁ ଆମର ଏଠି । ଆପଣଙ୍କର ମଧ୍ୟ କିଛି କିଛି ଅଭିଜ୍ଞତା ଥିବ ନିଶ୍ଚୟ । ଆପଣ ବୋଧେ ଦେଖି ନ ଥିବେ କେବେ ? ଏଇ ଯେଉଁ ମାନସିକ କରି ସତ୍ୟନାରାୟଣ ପୂଜା କରନ୍ତି, ମାନେ...ମାନେ"

"ବାଃଆରେ— ମାନସିକ ପୂଜା ଦେଖିନି ମୁଁ ? ଆମ ନନା ତ ନିଜେ ପୂଜକ । ସେ ନିଜେ ଘରେ ଘରେ ସତ୍ୟନାରାୟଣ ପୂଜା କରନ୍ତି ପିଲାଦିନୁ ଦେଖି ଆସିଛି । ଆଉ ମୋ ଭାଇ ପାଇଁ ମୋ ବୋଉ ମାନସିକ କରି ଥିଲି ଯେ !"

"ବେଶ୍, ବେଶ୍ ଠିକ୍ ଧରିଛନ୍ତି । ଆପଣଙ୍କୁ ବୁଝାଇବା ପାଇଁ ଜମା ଅସୁବିଧା ହେବନି ! ଠିକ୍ ସେମିତି ମୋ ବୋଉ ଗୋଟାଏ ମାନସିକ କରିଥିଲା ଯେ ତା ପୁଅ I. A. S. ହେଲେ ସେ ଗୋଟେ ଆଡ଼ମ୍ବର କରି ସତ୍ୟନାରାୟଣ ପଜା

କରିବ । ଅଗତ୍ୟା ମାତୃଭକ୍ତ ସନ୍ତାନ ବୋଉର Sentiment ଜଗି ଆଦେଶ ଥିଲା ସକାଳେ ପହଞ୍ଚିବାକୁ । ମାତ୍ର ଦେଖନ୍ତୁନା ଅବସ୍ଥାଟା ! ଉଭୟଙ୍କର ସମାନ ଦଶା ।"

ଝିଂ…ଝିଂ…ଗୋଟାଏ ବିକଟ ଯାନ୍ତ୍ରିକ ଶବ୍ଦରେ ଗାଡ଼ିଟା ଠିକ୍ ଅଧା-ବାଟରେ ଅଟକିଗଲା । ଇଂଜିନ୍ ଫେଲ୍ । ବାରମ୍ବାର ହ୍ୟାଣ୍ଡେଲ୍ ମରା ଚାଲିଛି ।

ମୋଟା କଣୁଆ ଡ୍ରାଇଭରଟା ନିର୍ବିକାର ଭାବରେ କହି ଚାଲିଛି—

"ଆରେ ଦେ—ଆଉ ଥରେ ଦେ । ହୁଁ—ଦେ—ଦେ ।"

ସମ୍ପୂର୍ଣ୍ଣା ଏଥର ସତକୁ ସତ ପ୍ରମାଦ ଗଣିଲା । ଆଜି ଦିନଟ ବିଲ୍‌କୁଲ୍ ଅଶୁଭ । ଏ ଗାଡ଼ିଟା ଠିକ୍ ହେବ ନା ସେ କ୍ଲାସ୍‌ରେ···

"ଏଇ ଗଲା ଆଜି ଆଉ ଯିବା ଆଶା ବିଲ୍‌କୁଲ୍ ନାହିଁ ଯେତେବେଳେ, ବରଂ ଟିକେ ବାହାରକୁ ଉଠି ମୋତେ ଏ ଧନ୍ଦା ଅବସ୍ଥାରୁ ମୁକ୍ତ ହେବାକୁ ସାହାଯ୍ୟ କରନ୍ତୁ ନା !"

ସମ୍ପୂର୍ଣ୍ଣା ଅପ୍ରସ୍ତୁତ ହେଲା । ଛି-ଛି-ମୋର ଆଗରୁ ଉଠିଯିବା ଉଚିତ୍ ଥିଲା ।

"ଆପଣ ପ୍ରକୃତରେ ନିହାତି ଅସୁବିଧାରେ ବସିଥିଲେ । ବାସ୍ତବିକ୍ ମତେ କ'ଣ ଭାବୁଥିବେ କେଜାଣି ଆପଣ ?" କହି ତରତର ହୋଇ ଓହ୍ଲେଇ ପଡ଼ିଲା ।

ଟ୍ୟାକ୍‌ସିର ଅନ୍ୟ ଆରୋହୀମାନେ ଏହାଭିତରେ ଡ୍ରାଇଭର ସଙ୍ଗେ ତର୍କରେ ମାତିଗଲେଣି । ପୁରୁଣା ଟ୍ୟାକ୍‌ସିର ବୟସ ନେଇ ଘମାଘୋଟ ତର୍କ ।

"ଏଇ ସୁବିଧା ବେଳେ ଖସିଯିବା ନା କ'ଣ କହୁଛନ୍ତି ? ଓହୋ—ଭାଗ୍ୟରେ ଗାଡ଼ିଟା ଖରାପ ହୋଇଗଲା ସିନା ' ବଞ୍ଚିଗଲି ବାବା ! ନ ହେଲେ···"

"ଆପଣ ସିନା ବଞ୍ଚିଗଲେ ହେଲେ ମୋକଥା ଟିକେ ଭାବିଲେ ? ମୋତେ ଯେ ନିହାତି ଭାବରେ ଛୁଟି ନେବାକୁ ପଡ଼ିବ । କି ମୁସ୍କିଲରେ ପଡ଼ିଗଲି ।" ବାରମ୍ବାର ବିବ୍ରତ ହୋଇ ଘଡ଼ିକୁ ଚାହିଁଲା ସମ୍ପୂର୍ଣ୍ଣା ।

"ଆପଣ ଘଡ଼ିକୁ ନ ଚାହିଁ ସାମ୍ନାକୁ ଚାହିଁଲେ । ଆପଣ ତ ଇଚ୍ଛା କରିଥିଲେ ଏମିତି ଆରାମରେ ଯାଇ ପାରିଥାନ୍ତେ । ପୁଣି ବେଶ୍ ଖୁସିରେ ।" ସାମ୍ନା ଫିଆଟ୍ ଗାଡ଼ିରେ ନବବିବାହିତ ଦମ୍ପତିଙ୍କୁ ଚାହିଁ ପ୍ରଶ୍ନବାଚକ ଦୃଷ୍ଟି ନେଇ କହିଲେ ।

"ମାନେ"

"ମାନେ ଅତି ସହଜ । ବେକାର ପାଠ ଘୋଷି ଘୋଷି, କତି ବସ୍ ଚଢ଼ି ଶେଷରେ ଏଇ ବିଚିତ୍ର ଟ୍ୟାକ୍‌ସି ଯାତ୍ରା କରି କ'ଣ ନା ଅଧ୍ୟାପିକା ? ଏଇ ଝାମେଲାରେ

ଭଲ କି ଦରକାର ଥିଲା ?  ଇଚ୍ଛା କରିଥିଲେ ବେଶ୍ ସୁସ୍ଥ ଆରାମ ଜୀବନ ଯାପନ କରିପାରିଥାନ୍ତେ । ମାନେ ମୁଁ ଏଇ ସମ୍ଭାବନା କଥା କହୁଥିଲି ।'' ଉଜ୍ଜ୍ୱଳ ଆଖି ଦୁଇଟା ଆହୁରି ଉଜ୍ଜ୍ୱଳ ହୋଇ ଉଠିଲା ।

''କି ଦରକାର ଥିଲା । ଆପଣ କ'ଣ ପରିହାସ କରୁଛନ୍ତି ? ଏମିତି ଜୀବନଟା ଗ୍ରହଣ କରି ନେବା ଆମ ସମାଜରେ ଭାରି ସହଜ ନା ! ବୋଧହୁଏ ଭଦ୍ରମହିଳା ଏ ଗାଡ଼ିଟାକୁ ସାଙ୍ଗରେ ଆଣିଥିବେ ଯୌତୁକ ସ୍ୱରୂପ । ଆମ ଦେଶରେ ଏଇଟା ତ କିଛି ଗୋଟିଏ ଅସମ୍ଭବ କଥା ନୁହେଁ ।''

''ହଁ—ଅଁ କ୍ଷତିପୂରଣ ପୂର୍ଣ୍ଣ ଲେଡ଼ା । ସୌନ୍ଦର୍ଯ୍ୟର ଅଭାବ ପୂରଣ ସ୍ୱରୂପ ଅର୍ଥ । କିନ୍ତୁ ଆପଣଙ୍କ କ୍ଷେତ୍ରରେ ତ ସେ ଭୟ ଆଦୌ ନ ଥିଲା । ଅବଶ୍ୟ ଯଦି କିଛି ମନେ ନ କରନ୍ତି, ତେବେ ଏତିକି ଦୃଢ଼ ସ୍ୱରରେ କହନ୍ତି ।''

ଏଥର ପରିପୂର୍ଣ୍ଣ ଭାବରେ ସେ ଆଖି ତୋଳି ସମ୍ପୂର୍ଣ୍ଣାକୁ ଚାହିଁଛି । ଗଭୀର ଅନ୍ତର୍ଭେଦୀ ଦୃଷ୍ଟି ।

ସମ୍ପୂର୍ଣ୍ଣା ବିଚଳିତ ହେଲା ।

କାର୍ ଆରୋହୀ ଭଦ୍ରଲୋକଙ୍କ ପିଅନ୍ ସେଗୋଲ ଦେଉଛି । ପାହାଲ ଛକ ।

ତରବର ହୋଇ ସେ ଦୃଷ୍ଟି ସ୍ପର୍ଶରୁ ନିଜକୁ ବଞ୍ଚାଇ ସାମ୍ନାରୁ ଆସୁଥିବା ବେଶ୍ ସୁନ୍ଦରୀ ଗରିବ ବିଧବା ସ୍ତ୍ରୀ ଲୋକଟିକୁ ଲକ୍ଷ୍ୟକରି କହିଲା, ''କିନ୍ତୁ ଏ ଭୟ ତ ନିଶ୍ଚୟ ଥିଲା । ମାନେ ମୁଁ ଏ ସମ୍ଭାବନା କଥାଟା କହୁଛି ।''

''ଓ—ହୋ—ହୋ ହୋ—''

ବେଶ୍ ପ୍ରାଣଫୁଲ ହସ ହସିପାରେ ତ ସେ ! ଆଉ ହସଟା ଉଚ୍ଛଳ ପ୍ରାଣବନ୍ତ ଆଉ ସଂକ୍ରାମକ ମଧ୍ୟ ।

ସେ ହସର ତରଙ୍ଗରେ ସମ୍ପୂର୍ଣ୍ଣାର ହସ ବି ମିଶି ଯାଇଛି କେତେବେଳେ ।

''ମଜା କଥା କ'ଣ ଜାଣନ୍ତି ନା ? ଆକ୍ସିଡେଣ୍ଟାଲି ଆମ୍ଭେ ଦୁହେଁ ମନସ୍ତତ୍ତ୍ୱର ଛାତ୍ର ଛାତ୍ରୀ । ଏଇଠି ହେଲା ଝାମେଲା ।''

ହଠାତ୍ ସମ୍ପୂର୍ଣ୍ଣାର ହସଫୁଲରୁ ଆରେ କିଏ ଯେମିତି ଅଗ୍ନିକଣ ଠିପିଟାଏ ଦେଇଦେଲା ।

ସମ୍ପୂର୍ଣ୍ଣା ଗମ୍ଭୀରରେ କହିଲା, ''ଏ ବିଧବା ସ୍ତ୍ରୀ ଲୋକଟି ଠିକ୍ ମୋ ନାନୀ ପରି । ମୋ ନାନୀ ଚଉଦବର୍ଷରେ ବିଧବା ହେଲା । କୋଳରେ ଦୁଇ ମାସର ଝିଅ ।''

''ସେ କ'ଣ ବାଲ୍ୟ ବିଧବା ମାନେ ଶାରଦା ଆଇନ୍ ପୂର୍ବରୁ ? ଓ—ଓ ଏଇ ଆପଣମାନଙ୍କ ଧାରଣା ତେବେ ! ବହୁତ ସମ୍ଭାବନା କଥା ଆପଣ କହି ପାରନ୍ତି ବୋଧେ । ହେଲେ ସାଧାରଣଜ୍ଞାନର ଘୋର ଅଭାବ । ମାତ୍ର ଅନୁଷ୍ଠାନ ଆଇନ୍ ବହୁଆଚରଣ ଚାଲିଥାଏ ଦୁଇ ସ୍ତରରେ ସ୍ତରେ ଏହା କ'ଣ ଆପଣ ଜାଣନ୍ତି ନାହିଁ ?''

"ଯେତେବେଳେ ଯେମିତି ଶାରଦା ଆଇନ୍ ଥାଇ ନାମ ଏଗାର ବର୍ଷରେ ବାହା ହୋଇଥିଲ, ଏବେ ଯୌତୁକ ନିରୋଧ ଆଇନ୍ ହୋଇ ମଧ୍ୟ ତଥାକଥିତ ଶିକ୍ଷିତ ଉଚ୍ଚପଦସ୍ଥ ତରୁଣ ଜଣଙ୍କେ ପତ୍ନୀଙ୍କ ସହିତ କାର୍‌ଟି ମଧ୍ୟ ଗ୍ରହଣ କରୁଛନ୍ତି । ଅବଶ୍ୟ ମୁଁ ସମ୍ଭାବନା କଥା କହୁଛି ।"

"ବେଶ୍ ସେହି ସମ୍ଭାବନାକୁ ଆଉ ଟିକେ ବଢ଼େଇ ଦେଲେ ଚଳିବ । କାର୍‌ର ଆରୋହୀଙ୍କ ମନସ୍ତତ୍ତ୍ୱ ବିଶ୍ଳେଷଣକୁ ଅଣାଯାଉ । ହୁଏତ ଗୋଟିଏ ଅଦ୍ଭୁତ ସୁନ୍ଦର ସରଳ ସାଦାସିଦା ବୁଦ୍ଧିମତୀ ଝିଅକୁ ଦେଖି ତାଙ୍କୁ ଭଲ ଲାଗିଥିଲା ନା ! ଏ କଥାରେ ସେ ଛତ କହିବାର ଚିନ୍ତା ବି କରିନାହାନ୍ତି ବରଂ ଏ ଧରଣରେ ଚିତ୍ତବୃତ୍ତି ହାତରେ ସୁଖ ପାଇବେ ବୋଲି ବିନା ଯୌତୁକରେ କେବଳ କନ୍ୟାକୁ ହିଁ ପ୍ରାର୍ଥନା କରିଥିଲେ । ସେ ପୁଣି ଏ ଯୁଗର ତଥାକଥିତ I. A. S, ଅନ୍ୟମାନଙ୍କ ପାଖରେ ଏଭଳି ପ୍ରସ୍ତାବ ଲୋଭନୀୟ ନିଶ୍ଚୟ । ମାତ୍ର ବିଦ୍ୟାଗରବିଣୀ ବିଦ୍ରୋହିଣୀ ରୂପସୀ ଆଦର୍ଶର ଦୋହାଇ ନେଇ ପ୍ରତ୍ୟାଖ୍ୟାନ କଲେ ପ୍ରସ୍ତାବ ।"

"ଦେଖନ୍ତୁ ମୁଁ ସମ୍ଭାବନା କଥା କହୁଛି । ଧରନ୍ତୁ, ତାଙ୍କ ବଡ଼ ଭଉଣୀ ପାଠ ନ ପଢ଼ି ଅଳ୍ପ ବୟସରେ ବିବାହ କରି ବିଧବା ହୋଇଛନ୍ତି, ଦ୍ୱିତୀୟା ଭଉଣୀ ସ୍ୱାମୀ ଘରେ ନିତି ହତ୍ୟା ନିର୍ଯ୍ୟାତିତା ହୋଇଥିବେ ।"

ଏ ଯୁକ୍ତିର ଜାଲ ସଙ୍ଗେ ଆପୋଷ ମିଳାମିଶାପାଇଁ ହୁଏତ ସେ ପ୍ରତିବାଦ କରିବେ । ହେଲେ ସ୍ୱପ୍ନଂ ସମ୍ପୂର୍ଣ୍ଣ ??

"ଦେଖନ୍ତୁ ଆପଣ କ'ଣ ?"

"ହଁ, ସମ୍ଭାବନାର ସୂଚନା ଦେଉଛି ।"

"ହୁଁ, ତା'ପରେ ?"

"ତା'ପରେ ଘଟଣା ସଂକ୍ଷିପ୍ତ । ମାନେ ଅନେକ ରାଜ୍ୟ ଓ ପେଟ୍ରନ ।"

"ଏ କନ୍ଦ୍ର ଆପଣଙ୍କର ଭଦ୍ରଙ୍କର ଅନ୍ୟାୟ । ଭଦ୍ରମହିଳା ଆଦୌ ପେଟ୍ରନ ନୁହନ୍ତି ।"

"ଆହା—ସେ ନୂଆ ଫିଆଟ୍ ଗାଡ଼ିରେ ଆମର ଏଂ ବଣିକ ରେଙ୍ଗୁଡ଼ା ଗାଡ଼ିଟାକୁ ଦେଖି ଆପଣଙ୍କର କ'ଣ ମନେ ହେଉଛି ଶୁଣେ ? ଅଥଚ ଏହି ଟ୍ୟାକ୍ସିରେ ଚଢ଼ିଲାବେଳେ ଏ ଟ୍ୟାକ୍‌ସିଟା କି ଭଦ୍ରଙ୍କର ଭାବରେ ଆକର୍ଷଣ କରୁଥିଲା ଆପଣଙ୍କୁ ! ସାହାଫଳରେ ଭିତରେ ଏହି ଭଦ୍ରଙ୍କର ଘେବଟି ପ୍ରତି ଦୃଷ୍ଟି ନ ଦେଇ ଆପଣ ଏତମତ ଆଗ୍ରହରେ ଗାଡ଼ି ଭିତରକୁ ପଶି ଆସିଥିଲେ ଆଗ୍ରହରେ । କ'ଣ ଏହା ମିଛ ???"

"ନା ବିଲ୍‌କୁଲ୍ ସତ । ମୁଁ ବି ଆପଙ୍କ କଥା ମାନି ନେଉଛୁ । ଆପଣଙ୍କ ସଙ୍ଗେ ଦେଖା ନ ହୋଇଥିଲେ ବୋଧହୁଏ ଭଦ୍ରମହିଳାଙ୍କୁ ଏଭଳି ନିର୍ଦ୍ଦିଷ୍ଟ ବିଶେଷଣରେ ଭୂଷିତ କରିବାର ପ୍ରୟାସ ମଧ୍ୟ କରି ନଥାନ୍ତି ।"

ସଂପୂର୍ଣ୍ଣାର ଗାଲରେ ଛିପଚାନ୍ଦ୍ରା ପଡ଼ିଲା ! ହସିଉଠିଲା ସଂପୂର୍ଣ୍ଣା ।

"ମାନେ କ'ଣ ଆପଣ ଗ୍ରହାନ୍ତି ମୁଁ ରସଗୋଲା କଣି ଆପଣଙ୍କୁ ଖୁଆଏ ବୋଲି । ସେଇଥିପାଇଁ ଏ କମ୍ପଲିମେଣ୍ଟ । ଏଇ ରସଗୋଲା ନିଅନ୍ତୁ" କଥା ନ ସରୁଣୁ ସନ୍ଦୀପଲିଛି ହାତକୁ ବଢ଼ାଇଦେଲା ଦୁଇଟା ପ୍ଲେଟ୍‌ଭର୍ତ୍ତି ଗରମ ରସଗୋଲା ଆଉ ଗ୍ଲାସ ।

"ଆରେ ଆପଣ ଶେଷକୁ ଏତେବେଳେ"

"ବୁଝିଲି, ରସଗୋଲା ଖାଆନ୍ତି ସତ କିନ୍ତୁ ଖାଇବା ଭଳି ମାନସିକ ଅବସ୍ଥାରେ ନାହାନ୍ତି ଏଇଆ ତ !"

"ଏତେ ବଡ଼ ଚିନ୍ତା ! କ୍ଲାସ ନେଇପାରିବେନି ବୁଝି ନେବେ ଏଇଆ ତ ! ଏଭଳି ଧର୍ମଘଟ ସମୟରେ ରସଗୋଲା ! କିନ୍ତୁ ସେ ସମ୍ଭାବନାଟା ଯେ କେତେ କମ୍ ଜାଣିପାରୁଛନ୍ତି । ନିଶ୍ଚୟ !"

"ନା—ନା—ମତେ ଯେମିତି ହେଲେ ଯିବାକୁ ପଡ଼ିବ ନିହାତି ଭାବରେ । ମୁଁ ମାତ୍ର ଆଉ ଗୋଟିଏ ସମ୍ଭାବନା ଅଛି । ଆଉ ଏକ ସୁଦର୍ଶନ ଯୁବକ କାର୍ ଧରି ଯାଉଥିବେ ଭୁବନେଶ୍ୱର । ହଠାତ୍ ରସଗୋଲାର ଲୋଭ ସମ୍ବରଣ କରି ନପାରି.. "

"ଆପଣ ଟିକେ ଦୟାକରି ଚୁପ୍ ହେବେ କି ? ଆପଣଙ୍କର ସମ୍ଭାବନାର ଲଗାମକୁ ଟିକେ ଆୟତ୍ତ କରନ୍ତୁ । ଓହୋ; କି ଦୁର୍ଯୋଗରେ ଆଜି ବାହାରିଥିଲି ମଣିଷ । ଆଚ୍ଛା ଏ ଡ୍ୟାକ୍‌ଟିଟା କ'ଣ ଆଜି ଠିକ୍ ହେବନି ?"

"ଦେଖନ୍ତୁ ହେବାର ସମ୍ଭାବନା ସମ୍ପର୍କରେ କିଛି ମତାମତ ଦେବି କିଭଳି ? କିନ୍ତୁ ମୋ ସ୍ୱାର୍ଥ ଦୃଷ୍ଟିରୁ ରସଗୋଲାଟା ରଖିବା ଦରକାର । ନଚେତ୍ ମୁଁ ଘରକୁ ନେବି ବା କେମିତି ?"

ଗୋଟାଏ ବଡ଼ିଆ ହାଣ୍ଡି ରସଗୋଲା ଧରି ପୁଣି ଠିଆ ହୋଇଛି ସେହି ପିଲାଟା...

ହସିଦେଲେ ସଂପୂର୍ଣ୍ଣା । "ମାନେ ଆପଣ ସତ୍ୟନାରାୟଣ ।"

"ଆଜ୍ଞା ମୁଁ ନିଜେ ସତ୍ୟନାରାୟଣ ମିଶ୍ର । ମାତୃଦେବୀଙ୍କ ଆଜ୍ଞାଧୀନ ପୁତ୍ର । ତେଣୁ ସ୍ୱୟଂ ସତ୍ୟନାରାୟଣଙ୍କ ପୂଜା ପାଇଁ ଉପବାସ କରିବାକୁ ପଡ଼ିବ । ଅଥଚ ରସଗୋଲାଟା ଭଲ ବା ମନ୍ଦ ଜାଣିବି କିପରି ?"

"ଆଚ୍ଛା ମୁସ୍କିଲ ତ ! ମୋ କହିବାରେ ବିଶ୍ୱାସ କରିବେ ବା କପରି ? ଧରନ୍ତୁ ମତେ ଭଲ ଲାଗିପାରେ । ଏହା ବୋଲି ଆପଣଙ୍କୁ ଭଲ ଲାଗିବ ଏମିତି ସମ୍ଭାବନା ।"

"ସମ୍ଭାବନା ବହୁତ ବେଶୀ । ହେ—ଆପଣଙ୍କ ଡାକ ଭଗବାନ ଶୁଣିଲେ ! ଗାଡ଼ି ଷ୍ଟାର୍ଟ ହେଲା । Be quick "

ତରବର କରି ଯେସୋଲାଟା ପୁରାଇ ହଠାତ୍ ଗୁପା ହସିରେ ଫାଟି ପଡ଼ିଲା ସମ୍ପୂର୍ଣ୍ଣା । ସେ ବହୁତ ବେଶୀ ସମ୍ଭାବନା କଥା ବୁଝେ ।

"ଆପଣ ଯେମିତି ମାତୃଭକ୍ତ ସନ୍ତାନ ନା ନିର୍ଘାତ ଆପଣ ସାମ୍ନା ଟ୍ୟାକ୍ସି ଗାଡ଼ି ମାଲିକଙ୍କ ପଥାଙ୍କ ଅବିକଳ ଅନୁସରଣ କରିବେ, ଏ ସମ୍ଭାବନା ବି ବହୁତ ବେଶୀ ।"

ଟ୍ୟାକ୍ସି ପାଖକୁ ଯାଇ ଯାଉ ସତ୍ୟନାରାୟଣ ଟିକିଏ ଗୁପା ଗଳାରେ କହିଲା, "ବିଶ୍ୱାସ କର ବା ନ କର ଏଇପରି ଗାଡ଼ିର ମାଲିକ ମୁଁ କି ହେଇ ଥାଆନ୍ତି ଯଦି ବିବାହ ବିଷୟରେ ମୁଁ ମାତୃଭକ୍ତ ହୋଇଥାନ୍ତି । ମାଆ ମାଆ ଜାଣେ ଯାହାକୁ ମୋତେ ଭଲ ଲାଗିବ ତାକୁହିଁ କେବଳ ମୁଁ ବିବାହ କରିବି । ନଚେତ୍ ଏମିତି ଦିନଟା ଚାଲିଯିବ ।"

ଶେଷ ଆଡ଼କୁ ଗଳାଟା ଘଞ୍ଚ ହୋଇ ଆସିଲା । ସତ୍ୟନାରାୟଣଙ୍କର ପରିବେଶକୁ ହାଲୁକା କରି ସେ ହସିଉଠି କହିଲା, "ମୁଁ ବି ସ୍ୱୟଂସମ୍ପୂର୍ଣ୍ଣ ହେବାରେ ଘୋର ପକ୍ଷପାତୀ ସେ !"

ସମ୍ପୂର୍ଣ୍ଣା ଉତ୍ତର ଖୋଜି ପାଇଲା ନାହିଁ !

ହଠାତ୍ ଏକ ଉଦ୍ଧାର ସ୍ୱର ତାକୁ ବିଚଳିତ କଲା, "ସମ୍ପୂର୍ଣ୍ଣା, ତମେ କ'ଣ ଶପଥ କରିଛି ତମ ନାମଟାକୁ ସାର୍ଥକ କରିବାକୁ ଦେବନାହିଁ ?"

ଏହାପରେ—ଏହାପରେ କ'ଣ ସତକୁ ସତ ସେଇଠି ଠିଆ ହୋଇ ପର ବନ୍ଦରେ କଟକ ଫେରିବାକୁ ମନସ୍ଥ କରିବ ସମ୍ପୂର୍ଣ୍ଣା ??

ନା ପୁଣି ସେହି ସ୍ୱର୍ଗ ବଞ୍ଚାଇ ବଞ୍ଚିବାର ପ୍ରୟାସ କରିବ ଯଦିଓ ଆଉ ବାଣୀବିହାର ସିଁଡ଼ିର କିଛି ଆକର୍ଷଣୀୟତା ନାହିଁ ଆଜି ।

ତେବେ‥ ତେବେ ???

ହଠାତ୍ ଚେନାଏ ଆଲୁଅରେ ତା ଆଖି ଜାଲୁଜାଲୁଆ ହୋଇ ଉଠୁଛି ସେ !



# ● ଆଲୁଅ ଅନ୍ଧାର ଓ ରକ୍ତ ମନ୍ଦାର

ହଠାତ୍ ଆଲୁଅଟା ଲିଭିଗଲା···

ଅନ୍ଧକାର, ସାନ୍ଦ୍ରସନ୍ଧର ଅନ୍ଧକାର, ନିଶ୍ଛିଦ୍ର ଅନ୍ଧକାର ।

ମହମବତୀ ?

ମହମବତୀ କାହିଁ ??

ବେଶ୍ ସମୟ ଅତିବାହିତ ହୋଇଯିବ ମହମବତୀ ଖୋଜିବାରେ··· ଆଉ ଦ୍ୱାର ଭିତରେ ସେ ନିଜକୁ ବେଶ୍ ହଜେଇ ଦେଇ ପାରିବେ ।

ଆଃ··· କି ଆରାମ···

ଏ ଅନ୍ଧକାର ଢେର ଭଲ ସେ ଉଗ୍ର ନିୟନ ଆଲୁଅଠାରୁ !

ଗୋଟିଏ ଅଦ୍ଭୁତ ଆନନ୍ଦର ଶିହରଣ ବହୁଦିନ ପରେ ଅନୁଭବ କଲେ ସୌମେନ୍ଦ୍ରବାବୁ ।

କିନ୍ତୁ କେତେ ଦିନ ?

ଯୁଗ ଯୁଗାନ୍ତର ପରି ବୋଧହୁଏ ।

ଏ ଅନ୍ଧକାରରେ ଡୁବିମାରି ବୁଡ଼ିଯାଇ ପାରିବେ ସେ !

ଦରାଣ୍ଡି ଦରାଣ୍ଡି ଛୁଇଁ ପାରିବେ ହଜିଲା ଅତୀତକୁ !!

ବଡ଼ ଗାଢ଼ା ଅନ୍ଧକାର । ଅଜସ୍ର ରକ୍ତମନ୍ଦାର ବି ଲୁଚେଇ ଦେଇ ପାରିଛି ନିଜକୁ ଏ ଅନ୍ଧକାରରେ । ରକ୍ତାକ୍ତ କାନ୍ଦଣାର ପ୍ରତୀକ ରକ୍ତମନ୍ଦାର ! ବିଦ୍ୟୁତ୍ ସରବରାହ ବନ୍ଦ ହୋଇଛି ଖୁବ୍ ଭଲ ହୋଇଛି ।

ବେତର ଆରାମ ଚୌକିରେ ଖୁବ୍ ଜୋରରେ ଗୋଡ଼ ହଲାଇବାକୁ ଲାଗିଲେ ସୌମେନ୍ଦ୍ର । ଅଧରର ଅନ୍ତରାଳରେ ଦନ୍ତପଂକ୍ତିର ନିବିଡ଼ ପେଷଣ ବେଶ୍ ଉତ୍ତେଜନା ସୃଷ୍ଟି କରୁଛି ।

ଅନ୍ଧାର ଭଲ, ଖୁବ୍ ଭଲ । ତା'ନ ହୋଇଥିଲେ; ଏଇ ବାରେଣ୍ଡାରେ ଏଇ ଉଗ୍ର ନିୟନ୍ ଆଲୁଅରେ ଗୋଟିଏ ଉଦ୍ଧତ ଯୌବନ ଠିକ୍ ଏଇବାଟେ ତାଙ୍କ ଆଖି ଆଗରେ ଚାଲି ଯାଇଥାନ୍ତା !

ହାତରେ ବେଷ୍ଟ ଭ୍ୟାନିଟି ବ୍ୟାଗ୍ ଆଉ ମୁଣ୍ଡରେ ଉଦ୍ଧତ ଅତ୍ୟୁଚ୍ଚ ଗମ୍ବୁଜ ଖୋସା । ଏ ଯୁଗର ବେପରୁଆ ତ୍ରୁଣ୍ଣବାଟୀ !

ନଇଁ ପଡ଼ି ଅଟକିଲା କମେ ଟୁଣ୍ଡ଼ି ଇ ନଅନ୍ତା ଲାଭେଣ୍ଡର ଫୁଲ !!

ଅବହେଳ.ରେ ଖୋସି ଦିଅନ୍ତା ଉପ ଜୁଡ଼ାରେ ଟିକିଏ ନମ୍ରତା ଆଣିବାକୁ । ନମ୍ରତା !

ହଁ, ଏସବୁଡ଼ କ କ'ଣ ଆଉ ଅଭିଧାନରେ ଅଛି ?

ତେବେ ଛଳନା ?

ହଁ ଛଳନା କରୁଥାନ୍ତେ ସୌମେନ୍ଦ୍ର ବାବୁ ।

ଆଧାତ୍ମିକ ତଥ୍ୟସମ୍ବଳିତ ଉପାଦେୟ ପତ୍ରିକା । ବେଦ, ବେଦାନ୍ତ, ଉପନିଷଦ, ପାଶ୍ଚାତ୍ୟ ଦର୍ଶନ । ପାଖ ଘରେ ବଡ଼ ଆଲମାରୀ—ଏଇତ ତାଙ୍କର ପରିଚୟ ।

ଛଳନା ??

ଠିକ୍, ତା ନ ହେଲେ ସେ କେମିତି ଦେଖିପାରନ୍ତେ ?

ଖାଲି କ'ଣ ଧଳା ଫିଆଟ୍ ଗାଡ଼ିଟା !!

ଗାଡ଼ିର ଗ୍ଲାସକୁ ମଧ୍ୟ ଏ ଯୁଗରେ ବିଜ୍ଞାପନ । ତା'ର ଏକ ଇଞ୍ଚ ଚଉଡ଼ା ଓ ଦୁଇ ଇଞ୍ଚ ଲମ୍ବା ପଞ୍ଚ କଲକୁ । ସାମ୍ପୁ ଦିଆ ଢେଉ ଢେଉକା କେଶର ପାହାଚକୁ ଡ୍ରେନପାଇପ୍ ପ୍ୟାଣ୍ଟ ଓ ବହୁରଙ୍ଗୀ ଶାର୍ଟକୁ । କେବଳ ସେତିକି ନୁହେଁ ଉଜ୍ଜ୍ୱଳ ସୁଦୃଶ୍ୟ ହାତ ବୋତାମଗୁଡ଼ାକ ମଧ୍ୟ ବାଦ ଯାଏ ନାହିଁ···

ମେଦଶୂନ୍ୟ ସୁଦୀର୍ଘ ଶରୀର ଗାଡ଼ିର, ଫାଟକ ଖୋଲି ଭଦ୍ରତା ଦେଖାନ୍ତା ! ଭଦ୍ରତା !

ଆଉ ମାଳବିକାର ଘ୍ରାଣଶୂନ୍ୟ ଫୁଲର ଶରୀର କେବଳ କୃତ୍ରିମ ଜୁଡ଼ାରେ ଭାରରେ ବୋଧହୁଏ ଇଷତ୍ ଅବନତ ହୁଅନ୍ତା ।

ଲଜ୍ଜା, ସଙ୍କୋଚ, ଦ୍ୱିଧା !!!

ନା, ଏ ମିଥ୍ୟା ଶବ୍ଦାଡ଼ମ୍ବରଗୁଡ଼ାକ ଏ ଯୁଗରେ ନାହିଁ ।

ସେ ଦିଗରୁ ଏମାନେ ମୁକ୍ତ, ହାଲୁକା ବେଲୁନ୍ ପରି ।

ସୌମେନ୍ଦ୍ରଙ୍କର ତଣ୍ଟି ପାଖର ଶିରାଗୁଡ଼ାକ ଚଳିତ ହୁଅନ୍ତି । ଅସ୍ୱସ୍ତି ପୂର୍ଣ୍ଣଚ୍ଛେଦ—ନା ପେଟରୁ ଆସନ୍ତା ସ୍ୱରରେ !

ଅଭିନ ବେଶରେ ବାଧା ପଡ଼ନ୍ତା ।

ଲୀଳାୟିତ ଭଙ୍ଗୀରେ ଓହ୍ଲେଇ ଆସନ୍ତା ଶଙ୍ଖ ଧବଳ ଗ୍ରେଟ ଜାପାନୀ କଣ୍ଢେଇଟା ।

ସାମ୍ପୁ ଦିଆ ବବ୍ ହେୟାର୍ ର ଢେଉ ଲେଟି ପଡ଼ୁଥାନ୍ତା ।

ଦାମୀ ଅତରର ଗନ୍ଧ ଅନୁଭବ କରନ୍ତେ ସୌମେନ୍ଦ୍ର ।

କଳୁ ସଞ୍ଜୟ !!!

ସୌମେନ୍ଦ୍ର ବାବୁଙ୍କ ବଂଶଗୌରବ କ'ଣ ଦେଖିପାରେ ନାହିଁ ବାପ କୁ ?
ହୋ; ବାଛିବାର ଆଖିରେ ଗୋଗୋଗଲ !
ଆଉ ସଞ୍ଜୟର ଆଖିରେ ହାଲ୍ ଫେସନ୍‌ର ଗଗଲ୍‌ସ୍ ଯେ !
କାହିଁକି ???
କଣ ଉଗ୍ର ନିୟନ ଆଲୁଅରୁ ନିଜକୁ ରକ୍ଷା କରିବାକୁ ?
ନା ··

କିନ୍ତୁ ପ୍ରଶ୍ନ କରନ୍ତି ନାହିଁ ସୌମେନ୍ଦ୍ର ବାବୁ, ଯଦିଓ ଅସୁମାରି ପ୍ରଶ୍ନର କୁଣ୍ଡଳିତ ସର୍ପ ତାଙ୍କର ମସ୍ତିଷ୍କକୁ ସର୍ବଦା ଘାରିଚାଲେ କରେ !

ତଥାପି···

ପରିଚିତ ଦୃଶ୍ୟ । ତେଣୁ ହାଇଗର ମଧ୍ୟ ଲଜ୍ଜା ହେଲେଇ ସମ୍ବର୍ଦ୍ଧନା ଜଣାଏ ଡ୍ରଇଂ ରୁମ୍‌ରେ ।

ପୁଣି ଜଳେ ଉଗ୍ର ଆଲୋକ ।
ଗ୍ରେଟ ଗ୍ରେଟ ଢେଉ ଅଜସ୍ର ହସର ଢେଉ···
ସେ ଢେଉରେ ମିଶେ ଅବାନ୍ତର କଥାର ଭଗ୍ନାଂଶ ।
ଜଣ୍ଟ୍ ଉତ୍ତାପ, ବନ୍ଧୁ ପ '
ଷଷ୍ଟିଷ୍ଟ୍ ସମାଜର ଦୃଢବନ୍ଧ !
କପ୍‌ପିଆଲାର ଶବ୍ଦ '
କୋକାକୋଲା ବୋତଲର ଶବ୍ଦ !
ଫ୍ୟାନ୍‌ର ସାଇଁ ସାଇଁ ନାଦ !
ରେଡ଼ିଓରୁ ନମ୍ର କଣ୍ଠର ସଙ୍ଗୀତ !
ଟୁଂ ଟାଂ ଶବ୍ଦ ତରଙ୍ଗ !
ବାରେଣ୍ଡାରେ ସୌମେନ୍ଦ୍ର ବାବୁ । ପାଖରେ ଲକ୍ଷ୍ମୀ ଫୁଲଭର୍ତ୍ତି ମନ୍ଦାର ଗଛ ।
ପରିତୃପ୍ତିର ସ୍ୱାକ୍ଷର ଲାଲିମା ???
ନା କ୍ରୋଧ କାନ୍ଦଣାର ଆତ୍ମପ୍ରକାଶ ଏ ରକ୍ତିମା ???
ମନ୍ଦାର ସଙ୍ଗେ ଯେମିତି ତାଙ୍କର ନାଡ଼ିର ଅଭେଦ୍ୟ ସମ୍ପର୍କ ରହିଛି ।

ବେଦାନ୍ତର ବର୍ଣ୍ଣର ତତ୍ତ୍ୱ ମଧ୍ୟରେ ନିଜକୁ ଲୁଚାଇ ଦେବାର ବ୍ୟର୍ଥ ପ୍ରୟାସ କରନ୍ତି ସୌମେନ୍ଦ୍ର ।

ପରିତୃପ୍ତିର ସ୍ୱାକ୍ଷର ?
ଆତ୍ମ ବେଦନ, ମହତ୍ତ୍ୱର ଚିନ୍ତା ।
ଆଧ୍ୟାତ୍ମିକ ଜଗତରେ ସ୍ଥିତି, ଏଇତ ତାଙ୍କର ପରିଚୟ !

ଆମୋଶରେ ଷାଠେଷ୍ଟ ଦର୍ଶନର ଉପାଦେୟ ଗ୍ରନ୍ଥ । ଯୋଗର ବନ୍ଧ ବଶ୍ଲେଷଣାତ୍ମକ ଗ୍ରନ୍ଥ ଧର୍ମଗଛ୍ଛି, ମହତ୍ତ୍ୱର ଜୀବନର ମାପକାଠିରେ ହିସାବ ନକାଶ । ଯଥାବୃତ । ମନ୍ଦ ଅଭିନୟ ନୁହେଁ ।

"ଗୁଡ଼୍, ଏଇତ, ଶଟ୍ପୁଟର କଲପରେ ଏଇତ ଦରକାର । ଆରେ ବାବା, ନଜକୁ ଭଲ ଟିକେ ଦେଖନ୍ତେ ! ଦଲେ ବୁଢ଼ା ଅଛନ୍ତି । ଯାହା ଯୋର କରନ୍ତି ନା !

ସେ ଦଟରୁ ତମ ବାପା ବେଶ୍, ଥାଙ୍କ୍ ଗଡ଼୍ ।"

ଙ୍ଗେ କଏେଇ ମୁହଁରୁ ପ୍ରଶଂସା ।

ଏଇଥିରେ ଆନନ୍ଦ ଅନୁଭବ କରବେ ସ୍ଥିତପ୍ରଜ୍ଞ ବୃଦ୍ଧ ??

ଅମୃତର ଉପାସକ ??

ନା—ଶୁଣିବ ବୋଲି ଏମାନଙ୍କର ଅହେତୁକ ଭୟ ନାହିଁ । କଣ୍ଠରେ ନାହିଁ କମ୍ପନ । ସୁସ୍ପଷ୍ଟ, ସାବଲୀଲ, ଏକାନ୍ତ ନଗ୍ନ । ନଜକୁ ମେଲି ଧରବାରେ ହିଁ ଏମାନଙ୍କର ଆନନ୍ଦ । ଅବଶ୍ୟ ମନ୍ଦ ନୁହେଁ ।

ତେବେ ?

ଏ ଦୃଶ୍ୟ ଅସହ୍ୟ ବୋଧହୁଏ କାହିଁକି ?

ତୀବ୍ର ଆଲୋକ ଝରଣାରେ ନଜକୁ ଦେଖି ଲଜ୍ଜାହୁଏ ସୌମେନ୍ଦ୍ରଙ୍କର ।

ନା ପ୍ରଚ୍ଛନ୍ନ ଈର୍ଷା ।

ଆଶ୍ଚର୍ଯ୍ୟ !!!

ଯାହାର ଲଲାଟରେ ବାର୍ଦ୍ଧକ୍ୟର ଛାପ ମାରସାରଛନ୍ତି ସରକାର, ତାର ପୁଣି କାରୁଣ୍ୟକୁ ଈର୍ଷା ??

ଯଦିଓ ଏବେ ବ ପ୍ରଭାତ ଭ୍ରମଣରେ ଚଲବେଲେ ତାଙ୍କର ସୁଦୀର୍ଘ ପେଶୀବହୁଳ ଶରୀରକୁ ଦେଖି ପଛରୁ ଅନେକ ତରୁଣ ବୋଲି ଭ୍ରମ କରନ୍ତି !

ଅବଶ୍ୟ ଭ୍ରମ ସତ୍ୟ ନୁହେଁ...

ତେବେ ?

ସୌମେନ୍ଦ୍ର ଈର୍ଷା କରନ୍ତି ଏ ଯୁଗର ତରୁଣ ତରୁଣୀଙ୍କୁ ?

ସେମାନଙ୍କର ସ୍ୱଚ୍ଛନ୍ଦ ଆତ୍ମପ୍ରକାଶ ଭଙ୍ଗୀକୁ ?

ଉଚ୍ଛଳ ଆମୋଦକୁ ?

ଅବାଧ ସ୍ୱାଧୀନତାକୁ ?

ନଜର ଆତ୍ମଜନମାନଙ୍କୁ ।

ପୁଣି ବହିରେ ମନୋନିବେଶ କରନ୍ତି ସୌମେନ୍ଦ୍ର । ଜଳତରଙ୍ଗ, ନା ମିଠା କଣ୍ଠର କାକଳୀ !

ଅଦ୍ଭୁତ...

ବାପରେ ବାପ୍ ହରବଲ୍, ସୀତମତ ବୁଢ଼ା ! କ ବଚନ ଜନ୍ମରେ ବାବା ! ସେ ପୁଣି ବାପାଙ୍କ ବଡ଼ଭାଇ । ଠିକେ ହେଲେ କମନ୍‌ସେନ୍‌ସ ଥାଆନ୍ତା ! ଛି-ଛି-ଛି । ଶୁଅଲ, ଆଇ ଆମ୍ ଏକ୍‌ସଟ୍ରିମ୍‌ଲି ସରି । ଯାହାକହ, ତମ ଘରେ କ୍ୟାରେକ୍ଟର୍ ପ୍ରାଇଭେସି ଅଛି । ଆଟ୍ ଲିଷ୍ଟ ଏମାନେ ସଭ୍ୟ । ମତେ ଭାରି ଭଲ ଲାଗେ ହଞ୍ଜୁ ।

ଗୋଟିଏ ପରିଚିତ ମୃଦୁ ସ୍ୱରର ତରଙ୍ଗ ··

ତୃପ୍ତିର ମୁଠାଏ ଅବିର ବୋଧହୁଏ ବୋଳି ହୋଇ ଯାଇଥିବ ତାରୁଣ୍ୟରେ ···ଦେଖିବାର ଅଶୋଭନୀୟ ଲୋଭ ହୁଏ···

ଅଦ୍ଭୁତ ଗୋଟାଏ ରସରେ ଜୀବନଟା ଅସମ୍ଭବ ଆର୍ଦ୍ର ହୋଇଯାଏ ।
ଲୋଭ ???
ନିଜ ଜୀବନର ଅପୂର୍ଣ୍ଣ ଆକାଂକ୍ଷା ପରିତୃପ୍ତ ହେଉଛି ଆତ୍ମଜ ମଧ୍ୟରେ···
ତେବେ ?
ଏ ଉତ୍ତାପ, ଏ ଅହେତୁକ କମ୍ପନ କାହିଁକି ଏ ଶିଥିଳ ଅଙ୍ଗରେ ?

× × ×

ଜ୍ୱାଳା···

କଣ୍ଟନଳୀ ଜ୍ୱାଳାରେ ଦଗ୍ଧ ହୁଏ । ଦିନେ ନୁହେଁ, ଦୁଇଦିନ ନୁହେଁ ଦୀର୍ଘ ଦୁଇବର୍ଷରୁ ଊର୍ଦ୍ଧ୍ୱ ହେବ ସେ ବିକମ୍ ସ୍ୱପ୍ନ ଦେଖି ନ ଥିଲେ । ସେ ଧଳାଧଳା ଗ୍ରୀବାରେ ଟିକିଏ ସ୍ପର୍ଶ···ମୃଦୁଆଙ୍ଗୁଳିର ସ୍ପର୍ଶ···

ଖୁବ୍ ହାଲୁକା କରି କଳ୍ପନାରେ ଅଙ୍ଗୁଳିଗୁଡ଼ାକ ଥରିଉଠେ ଅସମ୍ଭବ ଭାବରେ । ସେମାନଙ୍କର କବିତା ପଢ଼ିବାକୁ ଏକାନ୍ତ ଦୁର୍ବଳ ହୋଇ ପଡ଼ନ୍ତି ସୌମେନ୍ଦ୍ର । ସାଇକେଲଟା ରେକ୍‌ସା ପଛେ ପଛେ ଛୁଟି କାଠଯୋଡ଼ି କୂଳର ବଙ୍ଗୋଟ କୋଠାର ନେମ୍‌ପ୍ଲେଟ୍ ପାଖରେ ଅଟକିଯାଏ । ଗୋଟାଏ ଭଯ୍ୟାର୍ତ୍ତି ଚେତନା । ସାଇକେଲ ଛୁଟାଇ ଅଣନିଃଶ୍ୱାସୀ ହୋଇ ଫେରିଛନ୍ତି ଆସେ କୁକୁଡ଼ାଆ ପଦାର ମେସ୍‌କୁ ।

ସେକାଳର ରଥୀ, ମହାରଥୀ, ଆଡ଼ଭୋକେଟ୍ ସୁବାସ ଦାଶ !

ନା—ନା—ମନର ଯେ ଅଦ୍ଭୁତ ଅଭିଳାଷଟାକୁ ମୁଖ ଖୋଲି କେବେ କ'ଣ ଧଳାଧଳା ଗ୍ରୀବା ପାଖରେ ବ୍ୟକ୍ତ କରିଛନ୍ତି ସୌମେନ୍ଦ୍ର ?

ନା—କେବଳ ବିଶ୍ୱାସଘାତକତା କରିଥିଲ ତାଙ୍କର ଆଶ୍ଚର୍ଯ୍ୟ ସୁନ୍ଦର ଆଖି ଦିଓଟି, ଯେଉଁଥିରେ କୁଆଡ଼େ ସୁସ୍ପଷ୍ଟ ଭାବରେ ଫୁଟିଉଠେ ମରମ ତଳର ଅଭିଳାଷ ଛପା ଅକ୍ଷରରେ !

ଦନ୍ତପଂକ୍ତି ମଧ୍ୟରେ ଜିଭଟା ଅସମ୍ଭବ ଭାବରେ ଚଞ୍ଚଳ ହୋଇଉଠେ । ତାଳୁରୁ ସ୍ୱାଦ ଅନୁଭବ କରନ୍ତି ସୌମେନ୍ଦ୍ର ।

କେବେ ?

କେବେ, କେଉଁ ସାଲ, କେଉଁ ତାରିଖ ସେ ସ୍ମରଣୀୟ ଦିନ ?

ହଁ—ଥାର୍ଡ ଇୟର । ଉଦାତ୍ତ କଣ୍ଠରେ ପଢ଼ାଉଥାନ୍ତି ଅଧ୍ୟାପକ ସେଲିଙ୍କର ଆଶ୍ଚର୍ଯ୍ୟ ସୁନ୍ଦର କବିତା । ଅଭିଭୂତ ହୋଇ ଯାଇଥିଲେ ସୌମେନ୍ଦ୍ର । ଅପରାହ୍ଣର ମ୍ଲାନଝରାରେ ନଈପାରିର କାଶତଣ୍ଡି ଫୁଲ ହାତଠାରି ଆମନ୍ତ୍ରଣ କରେ । ବୋଧହୁଏ ସେହି ସେଲିଙ୍କ ପକ୍ଷୀର ସଙ୍ଗୀତ, ବହୁ ଦୂରକୁ ଉଡ଼ି ଉଡ଼ି ଯାଉଛନ୍ତି ଧଳାଚଅଁର ଉଡ଼ାଇ । ସଦ୍ୟଭିଜା କାଶତଣ୍ଡି ଫୁଲର ଅଜସ୍ର ଗୁଚ୍ଛ, ହାଲୁକା ସନ୍ଧ୍ୟା, ନିରୋଳା ରାସ୍ତା ।

ତାପରେ···

ମନେ ପଡ଼ୁଛି ଗୋଟାଏ ଅଦ୍ଭୁତ ଉପମା !

ଏମାନେ ସେହି ଶଙ୍ଖଧବଳ ଗ୍ରୀବା !

ଏଇ ଶୁଭ୍ରଗୁଚ୍ଛ ପରି, ଟିକିଏ ସ୍ପର୍ଶରେ ଥରି ଉଠିବ ଅଜଣା ପୁଲକରେ ତା'ର ସୁନ୍ଦର ପ୍ରାଣଟା ।

ବାଃ···କି ସୁନ୍ଦର ଅଭାବନୀୟ ଉପସ୍ଥିତି !

ଶଙ୍ଖଧବଳ ଗ୍ରୀବା ଉତ୍ତୋଳନ କରି ଗୁହିଁଥିଲ ସିଏ ।

ଝରି ପଡ଼ିଥିଲା ପଦୁଟିଏ କଥା "ଆଃ କି ବୋକା !"

ବହୁକାଳ ପରେ ହଠାତ୍ ବ୍ୟାକୁଳ ଲାଗିଲା ସୌମେନ୍ଦ୍ରଙ୍କୁ ! ଇତିହାସରୁ ସେ ମୁହୂର୍ତ୍ତିଟାକୁ କ'ଣ ଫେରାଇ ଆଣି ହୁଅନ୍ତା ନାହିଁ ?

ଆଉଥରେ ସୁଯୋଗ ମିଳନ୍ତାନି ସୌମେନ୍ଦ୍ରଙ୍କୁ ନିଜର ଭୁଲ ସୁଧାରିବାକୁ ?

ଭୁଲ୍·· !!!

ତଥାପି ଭଲ୍ଲାଗୁ, ସ୍ନେହମୁହାଁ ସ୍ୱପ୍ନକାଟ ମନୋଯୋଗୀ ଛାତ୍ର ସୌମେନ୍ଦ୍ର ଗୋଟାଏ ଅସମ୍ଭବ ସାହସିକତାର ପରିଚୟ ଦେଇଥିଲେ ସେ ଦିନ । ଅଜସ୍ର ଶୁଭ୍ର-ପୁଷ୍ପର ସ୍ତବକ ବଢ଼େଇ ଦେଲେ ସେ ଶୁଭ୍ରକୋମଳ ହାତମୁଠାକୁ ।

କହୁଛ କି କଥା ?

ନା—କେବଳ ଆଖିରେ ଭରି ଦେଇଥିଲା ଆମନ୍ତ୍ରଣ; ଶ୍ରଦ୍ଧାପ୍ଲୁତ ଆମନ୍ତ୍ରଣ ।

ସେଦିନ ନିଜର ସୁଦୀର୍ଘ ସୁଠାମ ତନୁକୁ ନିରୀକ୍ଷଣ କରିବାର ଅଦ୍ଭୁତ ଖିଆଲ ଜାଗିଥିଲା ସୌମେନ୍ଦ୍ର ମନରେ । ପ୍ରମଥେଶ୍‌ଠାରୁ ମାଗିଆଣି ସେ ହେନା ଲଗାଇ ଥିଲା ପ୍ରଥମ ଥର ପାଇଁ । ବାସ୍ ଏତିକିରେ ପୂର୍ଣ୍ଣଚ୍ଛେଦ ।

ପୁସ୍ତକକୀଟ, ଗୁରୁଜନସର୍ବସ୍ୱ ସୌମେନ୍ଦ୍ର ସମ୍ମୁଖରେ ଗୋଟାଏ ଧାଡ଼ିପଥ, ଏକତରଫା ରାସ୍ତା, ପିତୃପ୍ରଦର୍ଶିତ ମାର୍ଗ । ଫେରିବାର ପଥ ବନ୍ଦ ଯେ !

କିନ୍ତୁ ··
ଏହା ଅପ୍ରତ୍ୟାଶିତ ଭାବରେ ସମ୍ଭବ ହେଲା !
ସାହସ ?
ସୌମେନ୍ଦ୍ରର ?
ଦରିଦ୍ର ପିତାର ଆଜ୍ଞାଧୀନ ସୁବୋଧ ପୁତ୍ର ସୌମେନ୍ଦ୍ରର ?
ଆଶ୍ଚର୍ଯ୍ୟ···

ବେଶ୍ ଖିଲ୍ ଖିଲ୍ ହସି କୌତୁକ ଅନୁଭବ କରି ମାନି କହୁଥିଲା ତାର ବନ୍ଧୁ ସୁବ୍ରତକୁ; "ତମେ ଜାଣିନ ସୁବ୍ରତ ! ଆମକୁ ପାସପୋର୍ଟ ମିଳିଯାଇଛି । ତୁମେ ଭାବି ପାରୁଛ, ସେ ଯୁଗରେ ମୋର ବାପା ଆଉ ମାମି ପ୍ରେମ କରି ବାହା ହୋଇଥିଲେ । ଏଇ ରେଭେନ୍‌ସାରେ । ପୁଣି କ୍ଲାସମେଟ୍ । ତେଣୁ ରାସ୍ତା ଖୋଲା । ବୁଝିଲ । ରିଅଲି, ହାଓ ଲକି !" କଣ୍ଠସ୍ୱର ଲଘୁ ମାତ୍ର ଉଚ୍ଛ୍ୱାସ ଆଉ ନରମ ।

"ତେବେ ମାନି ଆମର କେବେ ? ଶୀଘ୍ର, ପ୍ଲିଜ୍" କଣ୍ଠରେ ଅଜସ୍ର ମିନତି (ଆଖି ବୁଜି ସୁବ୍ରତର ଆଗ୍ରହଦୀପ୍ତ ମୁହଁଟା ଦେଖି ପାରନ୍ତି ସୌମେନ୍ଦ୍ର ଏ ଯୁଗ ତରୁଣର ପ୍ରେମ ନିବେଦନର ଭଙ୍ଗୀ ) ହାତରେ ଶ୍ରୀ ଅରବିନ୍ଦଙ୍କର 'ସାବିତ୍ରୀ' କମ୍ପି ଉଠେ ।

"କହୁଛତ ! ଷ୍ଟୁ···ଡ଼ ନଟ୍ ବି ଇମ୍ପେସେଣ୍ଟ ମାଇଁ ଡ଼ିଅର ! ତୁମେ ଦିଲ୍ଲୀରୁ ଫେର । ଡ୍ରୋମିକ ଟ୍ରେନିଂ ପିରିୟଡ଼ ପୂର୍ବରୁ ଆଗ ରେଜଲ୍ଟ ଟା ।"

ତାପରେ ? ତାପରେ ?
ପୁଣି ସେହି ଅତି ପରିଚିତ ରୀତି ଢଙ୍ଗ !
ସେହି ଭାସି ଭାସି ଆସୁଥିବା କମ୍ପନ, ଶିହରଣ ।

ସେହି କ୍ଷୁଦ୍ର ମିନିଟ୍‌ର ଭଗ୍ନାଂଶରେ ସୃଷ୍ଟି ଗୃବୋଷ୍ଠି ଅଧରର କମ୍ପନ । ଆଉ ତା'ରି ଶିହରିତ ଧ୍ୱନି !

"ଏଥର ଖୁସି ତ ?" ପ୍ରଶ୍ନ କରେ ମାନି ।

କଣ୍ଠରେ ଭୟ ନାହିଁ । 'ଅପରାଧବୋଧ ନାହିଁ । ଅଛି ହଠାତ୍ ଖୁସିର ଝଲକ ।

ଆଉ ମୁହଁଟା !
(ଆଖି ବନ୍ଦ କରନ୍ତି ସୌମେନ୍ଦ୍ର । ହାତରେ ଅରବିନ୍ଦଙ୍କ ସାବିତ୍ରୀ)
ନା—ମାନି ବୟସରେ ମଧ୍ୟ ଆହୁରି ସୁନ୍ଦର ଥିଲି ମାଳତୀ !

ଏ ଯୁଗପରି ଅର୍ଦ୍ଧ ଅନାବୃତ ଲୋଭନୀୟ ଶରୀରର ପ୍ରଦର୍ଶନୀ ତ ନୁହେଁ । ସେଥିରେ ଥିଲି ପବିତ୍ରତା ଆଉ ତୃପ୍ତି ।

ଡାକିବେ, ଡାକିବେ ମାଳତୀକୁ ?

କହିବେ "ଶୁଣୁଛ ଲତା, ତୁମର ଆଦରଣୀ କନ୍ୟାର କଥା ? ଏମାନେ ମଣିଷକୁ ଭଲ ପାଆନ୍ତି ନାହିଁ । ଏମାନେ ଭଲ ପାଉଛନ୍ତି ସମ୍ମାନ, ପ୍ରତିପତ୍ତି, ଅର୍ଥ ଆଉ କ୍ଷମତା । ତମେ କ'ଣ ଏମିତି ଥିଲ ଲତା ? ନା—ତୁମେ ଭଲ ପାଇଥିଲ ଏଇ ନିଃସ୍ୱ ଦରିଦ୍ର ହୃଦୟସ୍ୱ ସର୍ବସ୍ୱ ସୌମେନ୍ଦ୍ରକୁ ?"

ବହୁତ ଲୋଭ ହୋଇଥିଲା ସେଦିନ...
ସେ ଶଙ୍ଖଧବଳ ଗ୍ରୀବାରେ ଟିକିଏ ସ୍ପର୍ଶ...
ଆଉ ଏ ଅଦ୍ଭୁତ ସୁନ୍ଦର କଥାଟିର ପୁନରାବୃତ୍ତି—ରୋମନ୍ଥନ !
ଆଶ୍ଚର୍ଯ୍ୟ...

ସେଦିନ ବିଶିଷ୍ଟା ସମାଜସେବିକା ମାଳତୀ ଥିଲେ ଘରେ । ଡାକ ଶୁଣି ପାଖକୁ ଆସିଲେ ଟିକିଏ ବି ଡେରି ନ କରି ।

କିନ୍ତୁ ..
କହିପାରିଲେ କି ସୌମେନ୍ଦ୍ର, ମନରେ ବାରମ୍ବାର ଆବୃତ୍ତି କରୁଥିବା କଥା-ଗୁଡ଼ାକ ?

ସ୍ପର୍ଶ କଲେ କି ସେ ଅପୂର୍ବ ସୁନ୍ଦର ଶଙ୍ଖଧବଳ ଗ୍ରୀବା ?
ହାୟ ଗ୍ରୀବା କାହିଁ ?

ଅସଂଖ୍ୟ ମେଦବୃଦ୍ଧି, ବଳୀପ, ଅଧିକ, ପ୍ରାଚୁର୍ଯ୍ୟର ସ୍ମାରକ ସ୍ୱରୂପ ମୁଖ ଓ ଗଳା ମିଳିତ ହୋଇଛି ଏକ ବଳିଷ୍ଠ ମେଦବହୁଳ ସରଳ ରେଖାରେ ।

ପାନଖିଆ ଦାନ୍ତ ଘନକଳା । ଝଡ଼ିଯାଇଛି କେତୋଟି । ରହିଯାଇଛି ଖାଲି ଶୂନ୍ୟସ୍ଥାନ । ଜନ୍ତୁ ନେବରେ ବିଜୟିନୀର ହସ ।

ମାଳତୀ ବିଜୟିନୀ ।

"ଜାଣ, ସୁବ୍ରତ ଏଥର କଣ୍ଟଷ୍ଟ ଆଇ. ଏ. ଏସ୍. ପାଇବ । ମାନିର ସିଲେକ୍‌ସନ ଖୁବ୍ ଭଲ । ମୁଁ ମଧ୍ୟ ଖୁବ୍ ଖୁସୀ ।

"ସୁବ୍ରତ !" ନ ଜାଣିବାର ଛଳନା କଲେ ସୌମେନ୍ଦ୍ର ।

"ଆରେ ଦେଖିନ ଏଇ ଯେ ଡ୍ରଇଂ ରୁମ୍‌ରେ ବସିଛୁ । ମାନିର ଫ୍ରେଣ୍ଡ୍ । ରେଜଲଟ୍ ପାଇଁ ଅପେକ୍ଷା କରୁଛୁ ମାନି । ଗୋଟାଏ ଗ୍ରାନ୍ ସ ତ ! ତାପରେ ସେମାନେ ତୁମକୁ ଜଣାଇବେ । ଫାଇନାଲାଇଜ୍ ହେଉ ।"

ସ୍ବା ପରେ, ସ୍ବାପରେ କହିବେ କ ସୌମେନ୍ଦ୍ର ସେ ଅଦ୍ଭୁତ ସୁନ୍ଦର କଥାଟା !

ମନେପଡ଼ୁଥିବ ସେ ଶଙ୍ଖଧବଳ ଗ୍ରୀବା ।

ହଁ—କଥା କହୁଥିଲେ ସୌମେନ୍ଦ୍ର । ସୁବିଧା ଥିଲେ କପେ ଗ୍ରହା କା'ହାତରେ ପଠାଇଦେବେ । ବହୁ ଆଗ୍ରହୁଥିଲ ।

ଗ୍ରହା କପ୍‌ରେ ୫୦ ନଂ ଚେଇ ପୁଣି ମନେପକେଇବେ ସେ ! କେବେ କ'ଣ ପାଇଥିଲେ ସେ ସେହି ଶଙ୍ଖଧବଳ ଗ୍ରୀବାର ଲୋଭନୀୟ ସ୍ପର୍ଶ ?

ଆଞ୍ଜୁଳା ଆଞ୍ଜୁଳା ସ୍ନେହ ଅକାଡ଼ି ଦେଇ ମାଲତୀ କ'ଣ ଭରି ଦେଇଥିଲା ସ୍ୱାମୀର ତୃଷାର୍ତ୍ତ ସ୍ନେହକାଙ୍ଗାଳ ହୃଦୟକୁ ?

ନା ଆଞ୍ଜୁଳା ଆଞ୍ଜୁଳା ଅର୍ଥରେ, ଆଭିଜାତ୍ୟରେ ଧୋଇ ଦେଇଥିଲା ସୌମେନ୍ଦ୍ରର ଦାରିଦ୍ର୍ୟକୁ, ମଳିନତାକୁ ?

ଅଭି ସେଇଥିପାଇଁ ନୂଆଣିଆଁ ଗ୍ଲାଲଘରେ ସ୍ନିଗ୍ଧ ବାସନ ପାପଣିପାରେ ବି ଖୋଜି ପାଇ ନ ଥିଲେ ସୌମେନ୍ଦ୍ର ସେ ଶଙ୍ଖଧବଳ ଗ୍ରୀବା ।

ସେ ଗ୍ରୀବାର ସ୍ପର୍ଶ ସେ କେବଳ ସୁବର୍ଣ୍ଣର ସ୍ପର୍ଶ ।

ସେହି ଅଦ୍ଭୁତ ସୁନ୍ଦର ପରମ ଆକାଂକ୍ଷିତ ମୁହୂର୍ତ୍ତିରେ କାହିଁକି ମନେପଡ଼ିଲା, "ହାର୍ଡ଼ ମେଲୋଡ଼ିଜ୍ ଆର ସୁଇଟ୍ ଦୋଜ୍ ଅନହାର୍ଡ ଆର ସୁଇଟର ?"

ସୌମେନ୍ଦ୍ରଙ୍କ ଦାରିଦ୍ର୍ୟକୁ ପ୍ରାଚୁର୍ଯ୍ୟରେ ରୂପାନ୍ତରିତ କରିବା ନିମନ୍ତେ ଲତାର ଅଦ୍ଭୁତ ସଂକଳ୍ପ ଦେଖି ?

ନା ସୌମେନ୍ଦ୍ର ନାମ ପାର୍ଶ୍ବରେ ଲାଗିଥିବା ଆଇ. ଏ. ଏସ୍ ଛାପ ପ୍ରତି ଲତାର ଅଦମ୍ୟ ମୋହ ଦେଖି ?

ଯଦି ସେତେବେଳେ ପ୍ରାଣଭରି ସ୍ପର୍ଶ କରି ଥାଆନ୍ତେ ସେ ସେହି ଶୁଭ୍ର କମନୀୟ ଗ୍ରୀବା !!!

ସେହି ଅପୂର୍ବ ଅନୁଭୂତିର ସ୍ୱାଦ କିଏ ପାଇନି ମାନି ?

ଏକ ଯନ୍ତ୍ରଣାତ୍ମକ ବ୍ୟାଧିପରି ଗୋଟାଏ ନିଶା ଚରିଯାଇଛି ମାନିର ରକ୍ତରେ, ଶିରା ପ୍ରଶିରାରେ । ତେଣୁ ଅନାୟାସରେ ନିର୍ଦ୍ୱିଧାରେ ମାଳବିକା ତାର ପ୍ରେମ-ପ୍ରାର୍ଥୀକୁ ଗୋଟାଏ 'ଚୁମା' ଲାଞ୍ଚ ଦେଇ ତୃପ୍ତ ହେବାକୁ ଉପଦେଶ ଦେଇଛି ।

ପୁରସ୍କାର ପ୍ରାପ୍ତି ଆଇ. ଏ. ଏସ୍. ପରୀକ୍ଷା ଫଳ ବାହାରିଲା ପରେ ଚମତ୍କାର !

ଘୃଣା…
ଘୃଣାରେ ଶିହରି ଉଠିବେ ନା କି ସୌମେନ୍ଦ୍ର ତନୟାର ଆଚରଣରେ ?
ସେ ଘୃଣା ପ୍ରକାଶ କରିବାର ଶକ୍ତି ଅଛି ସୌମେନ୍ଦ୍ରର ?
ତେବେ କାହିଁକି ନିଜକୁ ଭାଗ୍ୟବାନ୍ ମନେ କରିବେ ନାହିଁ ସେ ?

ଜାଲ୍ ବିସ୍ତାର କରିଛି ମାନି । ବରିଷ୍ଠ ରୋହିତ ମତ୍ସ୍ୟ ଧରି ପାରିବ ସେ । ସମର୍ଥ ମାତାମହଙ୍କର ସୁପାରିଶ…

ସଞ୍ଜୟ ପ୍ରାଇଭେଟ୍ ଫାର୍ମରେ ମୋଟା ଦରମାରେ ଚାକିରି ପାଇଛି ।
କଣ୍ଟ୍ରାକ୍ଟରର କନ୍ୟା ଶୀଳା ।
ଅର୍ଦ୍ଧେକ ରାଜ୍ୟ ଓ ରାଜକନ୍ୟା ପ୍ରାପ୍ତି । ଏହାତ ସଞ୍ଜୟର ସୌଭାଗ୍ୟ !
ତେବେ ???

ଏହି ଉଗ୍ର ନଗ୍ନ ଆଲୁଅରେ ନିଜର ସୌଭାଗ୍ୟର ପ୍ରଦର୍ଶନୀ ଏତେ ଘୃଣ୍ୟ ବୋଧ ହେଉଛି କାହିଁକି ?

ଏତେ ଅତୃପ୍ତ କାହିଁକି ?

ଆଃ…ଅନ୍ଧକାରକୁ ପୁଣି ସ୍ୱାଗତ କଲେ ସୌମେନ୍ଦ୍ର । ଏ ଅନ୍ଧକାର କାମ୍ୟ । ଆଲୋକ ଅମୃତ ଦେଇ ପାରେନି ।

ଆଧ୍ୟାତ୍ମିକ ଚନ୍ଦ୍ରାଧାରରେ ନିଜକୁ ହଜେଇ ପାରି ନାହାନ୍ତି ସୌମେନ୍ଦ୍ର ।
ଏ ଅନ୍ଧକାରରେ ପାଇବେ ସେ !
ଜୁଳୁଜୁଳିଆ ପୋକ ଘୂରୁଛି…
ବିଜୁଳି ଆଲୁଅ ଅପସରି ଯାଇଛି—
ଆତ୍ମପ୍ରକାଶ କରିଛି ସିଏ ।
ନା ଖାଲି ଅମୃତ…
ଖାଲି ମୃତ୍ୟୁ—
ଖାଲି ଅନ୍ଧାର…

ତାର ଭିତରେ ଶୁଭ୍ର ସ୍ୱଚ୍ଛ ମହମବତୀ, ପବିତ୍ରତାର ମୂର୍ତ୍ତିମନ୍ତ ପ୍ରତୀକ ।

"ତମେ"

ଆଖିଟେକ ଗ୍ରୁହିଁଲେ ସୌମେନ୍ଦ୍ର...

ହାଲକା ଶାଢ଼ୀ । ହାତରେ ମହମବତୀ । ସତେ ଦୀପକୁମାରୀ, ଅବା ଫ୍ଲରେନସ୍ ନାଇଟିଙ୍ଗେଲ ।

ପାରିବ ସେ ଏ ପୀଡ଼ିତ ଆତ୍ମାକୁ ସୁସ୍ଥ କରି ?

ଭାରି କମନୀୟ ମନେହେଲା ମାଲତୀକୁ !

"ବସ, କଥାଅଛି" ହାତଧରି ବସେଇଲେ ସୌମେନ୍ଦ୍ର । ସୌମେନ୍ଦ୍ରଙ୍କର ପଦ୍ମପଲାଶ ନେତ୍ରରେ ଭରିଉଠିଲା ଆବେଗ । ତୃଷାର୍ତ୍ତ ହୋଇ ଉଠିଲା ପ୍ରତି ଲୋମ-କୂପ, ଅନ୍ତଃକରଣ ।

"ମୁଁ ବି ସେଇକଥା କହୁଥିଲି । ତୁମେ ସୁବ୍ରତକୁ ମନା କରିଦିଅ । ଡେଙ୍ଗେଲ୍‌ଟ ରୁଚି ସାରିଛି ମାନ । ସେ ଏଠାକୁ ଆଉ ଆସିବାଟା ସୁନ୍ଦର ନୁହେଁ । ଚନ୍ଦ୍ରପୁର ମାଆ ହୁଏତ ପସନ୍ଦ କରି ନ ପାରନ୍ତି ?"

ମହମବତୀର ଆଲୋକଟା ଏବେ ଉଗ୍ର ମନେ ହେଉଛି କାହିଁକି ?

ଲିଭିଯାଇ ପାରୁନ ଦମକା ପବନରେ, ଯେମିତି ହଠାତ୍ ଭିଲିଲେ ସୌମେନ୍ଦ୍ର ମନର ଏକାନ୍ତ ସୁନ୍ଦର ଆଗ୍ରହ—କାମନାମୁଗ୍ଧ ନେତ୍ରର ଗଭୀର ଆବେଗ !

"ମାନର କ'ଣ ଏଇ ଇଚ୍ଛା !" ବୁଡ଼ିଗଲା ଲୋକ କୁଟାଖିଅ ଧରିଲାଭଳି ପ୍ରଶ୍ନର ଖିଅ ଧରିଲେ ସୌମେନ୍ଦ୍ର ।

"ନିଶ୍ଚୟ, ମାନ କଣ ଭବିଷ୍ୟତ ବୁଝୁନାହିଁ । ତାର ଇଚ୍ଛା ତୁମେ ସୁବ୍ରତକୁ ମନା କରିଦେଲେ ଖୁବ୍ ଭଲ ହେବ । ଚନ୍ଦ୍ରପୁ ଆଇ: ଏ: ଏସ: ଓ ଆଇ: ଏଫ୍: ଏସ୍: ଇଣ୍ଟର୍ଭ୍ୟୁରେ ସିଲେକ୍ଟ ହୋଇଛି ।

ଅନ୍ଧାରରେ କେମିତି ଦେଖାଯାଉଛି ରକ୍ତମନ୍ଦାର...

ପୂର୍ଣ୍ଣତାର ପ୍ରତୀକ ନା ଚକ୍ରାନ୍ତ କାନ୍ଦଣାର ସ୍ୱାକ୍ଷର !

ଦେଖାଯାଉନ...

ତଥାପି...

ପୁଣି ସେଇ ଅନ୍ଧାରକୁ କାମନା କଲେ ସୌମେନ୍ଦ୍ର...'ଏ ଆଲୁଅ ନ ଆସନ୍ତା କି ହେଲେ ।'



## ● ଦୁଇଟି ଜୀବନର କାହାଣୀ

ବୁଢ଼ୀ ମା କହେ, ଘଳା ଘଳା ପିନା ଭେଟ ହୁଏ କିନ୍ତୁ ଭଉଣୀ ଭଉଣୀ ଭେଟ ହୁଏ ନାହିଁ ।

ଏ କଥା ପୁଣି ସତ ହୁଏ ଏ ଯୁଗରେ···

କି ଆଶ୍ଚର୍ଯ୍ୟ !!!

ଶର୍ମିଳା ଜୀବନରେ କିନ୍ତୁ କଥାଟା ଆଶ୍ଚର୍ଯ୍ୟଜନକ ଭାବେ ସତ୍ୟରେ ପରିଣତ ହୋଇଗଲା ।

ହୁଁ···ଭାବି ବସିଲେ ଆଖି ପାଏ ନାହିଁ । ଦୀର୍ଘ ବାର ବର୍ଷ ।

କିନ୍ତୁ ଶର୍ମିଳା କଣ ଏଇ ଦୀର୍ଘ ଦିନର ବିଚ୍ଛେଦରେ ଆତୁରା ଆକୁଳା ହୋଇ ପଡ଼ିଥିଲା ?

ତାର ଆଦରର ସାନଭଉଣୀ ଊର୍ମି ପାଇଁ ତାର ମନ ଭିତରଟା କ'ଣ କାଉଳି ବାଉଳି ହେଉଥିଲା ?

କାହିଁ ? ଯଦି ହୋଇଥାନ୍ତା, ତେବେ ସେ କଣ ଟିକେ ଯାଇ ଦେଖି ଆସିପାରି ନ ଥାନ୍ତା ??

ଏଇ ସୁଦୀର୍ଘ ୧୨ ବର୍ଷ ମଧ୍ୟରେ ଥରେ ହେଲେ ଅବସର ହେଲନାହିଁ ?

ସିଏ ଆମେରିକା ଯାଇ ପାରିଲା; ତା ପକ୍ଷରେ ସୁନ୍ଦରଗଡ଼ ବା ଫୁଲବାଣୀ କ'ଣ ବେଶୀ ଦୂର ??

ଏଇଠି କିନ୍ତୁ ଅଟକିଯାଏ ଚିନ୍ତାଧାରା । କଣ୍ଟାପରି କଣ୍ଟାଟିଏ ଫୋଡ଼ି ହୋଇଯାଏ ଶର୍ମିଳାର ହୃଦୟରେ । ଦୁଇ ଭଉଣୀଙ୍କର ଅନାବିଳ ସ୍ନେହଧାରା ମଝିରେ ଏ ଯେପରି ଗୋଟିଏ ବିରାଟ ବ୍ୟବଧାନ, ଚାଇନିଜ୍ ୱାଲ୍···

କିଏ ସୃଷ୍ଟି କଲା ଏଇ ବ୍ୟବଧାନ ???

ଅନ୍ୟ ନା ଅମରେଶ୍ !!!

ଶର୍ମିଳା ଲମ୍ବା ନିଃଶ୍ୱାସ ନିଏ ।

ବିଶ୍ୱବିଦ୍ୟାଳୟର କୃତୀ ଛାତ୍ର ଅମରେଶ୍···

ଅସାଧାରଣ ବ୍ୟକ୍ତିତ୍ୱରେ ଉଲ୍ଲସିତ ଅମରେଶ୍···

ସୁବକ୍ତା, ଆତ୍ମାଭିମାନୀ ସୁପୁରୁଷ ଅମରେଶ୍···

ଆଜି କଲ୍ଲୁ ଭାବିଲେ ହସ ଲାଗେ ଶର୍ମିଳାକୁ ' ହଁ ହସ ଲାଗେ । ସ୍ୱପ୍ନିଳ ମନରେ ବାସ୍ତବତାର ରଙ୍ଗଟା ବେଶ୍ ଲେପି ହୋଇଯାଇଛି ଯେ ! ସେ ଏବେ ସଞ୍ଜୟପୁର ବାସ୍ତବ ଭଗ୍ନୀ ! ତାର ଦୂରଦୃଷ୍ଟିକୁ ପ୍ରଶଂସା ନ କରି ରହିପାରୁ ନାହିଁ···

ପ୍ରଶଂସା ???

କିଏ ଏତିକବେଳେ ସଞ୍ଜୟପୁର ପ୍ରାପ୍ୟ ?

ପୁଣି ଶର୍ମିଳାଠାରୁ; ସିଏ ତାର ଅର୍ଦ୍ଧାଙ୍ଗିନୀ !!!

ସେ ଦିନଟା ଆଜି ବି ଭୁଲିପାରେ ନାହିଁ ଶର୍ମିଳା । ଏଇ ସୁଦୀର୍ଘ ପଥ ଯେତେବେଳେ ସେ ଅତିକ୍ରମ କରି ନଥିଲି, ଆଜି ଯେଉଁ ପଥରେ ସେ ମଟର ଚଳାଇ ସେଇ ଅତୀତ ଅଭିମୁଖରେ ଫେରୁଛି ତାର ସେହି କୋଳାହଳମୁଖର ପୁରୁଣା ସହର କଟକକୁ ।

ଅଭିମାନ, ଘୃଣା, ପ୍ରଚ୍ଛନ୍ନ ଈର୍ଷା ଓ ଅସହ୍ୟ କ୍ରୋଧରେ ଶର୍ମିଳାର ସାରା ଶରୀର ଜଳି ଯାଇଥିଲା । ତାଙ୍କୁ ଚରମ ଅପମାନ ଦେବାକୁ ଶପଥ କରିଥିଲା ସିଏ···

ତା ନ ହେଲେ ସବୁ ଆୟୋଜନ ସରିଛି···

ହଁ, ଶର୍ମିଳାର ହିଁ ବିବାହ ଆୟୋଜନ ହୋଇଥାଏ । ଉର୍ମିଳା କଥା କେହି ଭାବି ନଥିଲେ । କାହିଁକି ବା ଭାବନ୍ତେ ? ୧୫ ବର୍ଷର ଝିଅ, ପୁଣି ଅପୂର୍ବ ସୁନ୍ଦରୀ । ବାପା ଓ ବୋଉଙ୍କର ଅହଙ୍କାର । ସମସ୍ତ ସୌନ୍ଦର୍ଯ୍ୟର ଉତ୍ତରାଧିକାରିଣୀ···

କିନ୍ତୁ ଶର୍ମିଳା···

ନା—ଏବେ ଆଉ ସେ ଅବଶୋଷ ନାହିଁ । ନିଜକୁ ନିୟନ୍ତ୍ରଣ କଲା ଶର୍ମିଳା, ଭ୍ୟାନିଟି ବ୍ୟାଗ୍‌ରୁ ଏକ ଦର୍ପଣ କାଢ଼ି ବେଶଭୂଷା ମାର୍ଜିତ କଲା । ହଁ···ବେଶ୍ ଉଜ୍ଜ୍ୱଳ ହୋଇଯାଇଛି ତାର ଫିକାଟା ରଙ୍ଗଟା । ବେଶ୍ ଚକ୍‌ଚକ୍ ଆଉ ସୁଠାମ । ଆପେଲ ପରି ରଙ୍ଗିନ୍ ହୋଇଉଠିଛି ଶର୍ମିଳା । ବୟସ ବଢ଼ିନି ବରଂ କମିଯାଇଛି ଆଶାତୀତ ଭାବରେ । ଉତ୍କୃଷ୍ଟ ଖାଦ୍ୟ ଅବା ଆରାମ, ବିଶ୍ରାମ—ତାର ସ୍ୱାମୀକେ ଶର୍ମିଳାର ସୌନ୍ଦର୍ଯ୍ୟ । ଆଉ ଶର୍ମିଳାର ଦୃଷ୍ଟି—"ଅବିତ୍" ଓ "ପ୍ରିଙ୍କା" ଅପରୂପ ସ୍ୱାସ୍ଥ୍ୟ । ଶର୍ମିଳା ଜୀବନର ଅବଶୋଷ, ଅଭିମାନ ଓ ଖେଦକୁ ଚନ୍ଦବୃଦ୍ଧି ହାରରେ ପରିଶୋଧ କରିବାକୁ ସଂକଳ୍ପ ନେଇଛି ଅବା ପ୍ରିଙ୍କା । ସାତ ବର୍ଷର ଝିଅ ପ୍ରିଙ୍କା ତାର ଅସାଧାରଣ ସୁନ୍ଦରୀ, ଠିକ୍ ତା ମାଉସୀ ପରି···

ହଁ—ଠିକ୍ ଏମିତି ଦିଶୁଥିଲା ଉର୍ମି···

ସେହି କଳା ଭେଲ୍‌ଭେଟ୍ ଫ୍ରକ୍‌ଟା ପିନ୍ଧି ସେ ଯେତେବେଳେ ସ୍କୁଲକୁ ଯାଏ, ବୋଉ ଲୁଚେଇ କରି ତା କପାଳରେ ଗୋବର ଟିପାଟିଏ ଦେଇଦିଏ··

ଆଉ ଶର୍ମିଳା···

ସେ ଭୟ ତା ପାଇଁ ନାହିଁ । ସାବନା ପତଳା ଧରଣର ଝିଅ ଶର୍ମିଳା ।

ଶର୍ମିଳାର ଖାଲି ରାଗ ହୁଏ । ଅଭିମାନ ବି ହୁଏ । କିନ୍ତୁ ସେଥିପାଇଁ କଣ ସେ ଉର୍ମିକୁ କେବେ ହିଂସା କରିଛି ??

ବରଂ ସୁନ୍ଦର ସୁନ୍ଦର ଜାମା ସେ ଉର୍ମି ପାଇଁ ବାଛିଦିଏ ।

ଉର୍ମିକୁ ସିଏ ଭଲପାଏ । ତା'ପରି ସରଳ, ଶାନ୍ତ, ନିରିହା ଝିଅକୁ ଆଉ କିଏ ବା ଭଲ ନ ପାଆନ୍ତା···

ତଥାପି···

ମନର କଣ୍ଟାଟା ସେ ଓପାଡ଼ି ପାରିଲା ନାହିଁ···

ସେ ଦିନର ଦାହ, ସେ ଦିନର କ୍ଷତ ଶୁଖିବାକୁ ଅନେକ ଦିନ ଲାଗିଗଲା । ଦୀର୍ଘ ବାର ବର୍ଷ···

ଶେଷ ମୁହୂର୍ତ୍ତରେ ହିଁ ମତ ବ୍ୟକ୍ତ କରିଥିଲା ସଦ୍ୟ I: A: S: ଅମରେଶ, ନିଜ ଭୁଲ ସଂଶୋଧନର ଏବେ ବି ସମୟ ଅଛି···କିନ୍ତୁ ବଦଳି ଯିବନି ! ଗୋଟିଏ ପରିବର୍ତ୍ତରେ ଆଉ ଗୋଟିଏ ଝିଅ ବେଦୀକୁ ଆସିବ···

ଘୃଣା—ରାଗି ରାଗି ଘୃଣାରେ ଶର୍ମିଳାର ସାରା ଶରୀରଟା କମ୍ପାନ୍ତ ହୋଇ ଉଠିଥିଲା ।

କିନ୍ତୁ···

ସୁବୋଧବାବୁଙ୍କର ନେଇ ଉକ୍ତାନ୍ତି ହେଲା ନାହିଁ । ନିପୁଣ ଅଭିନେତା ପରି ସେ ଆଉ ଏକ ଅଭିନୟ ମଣ୍ଡପ ପ୍ରସ୍ତୁତ କଲେ । ପାଖାପାଖି ଠିକ୍ ସେହିଦିନ ଏକାଡ଼ଥରେ ଦୁଇ କନ୍ୟା ସଂପ୍ରଦାନ କରିବେ···ସଞ୍ଜୟ···ଅମରେଶର ସହପାଠୀ ।

କିନ୍ତୁ ସେ କୃତି ଛାତ୍ର ନୁହେଁ···

ସୁବକ୍ତା ନୁହେଁ···

ସୁଦର୍ଶନ ନୁହେଁ···

ତା ନା ପଛରେ ନାହିଁ ତିନୋଟି ଅକ୍ଷରର ସର୍ବଗ୍ରାସୀ ଦୁର୍ବାର ଆକର୍ଷଣ···

ମନସ୍ତତ୍ତ୍ୱର ଅଧ୍ୟାପକ ସଞ୍ଜୟର ଆଉ କିଛି ନ ଥାଇ ପାରେ; କିନ୍ତୁ ଏକ ଅଦ୍ଭୁତ ସୁନ୍ଦର ହୃଦୟ ଥିଲା । ଅପୂର୍ବ ସେ ହୃଦୟ । ହିଁ—ଶେଷ ମୁହୂର୍ତ୍ତରେ ଆଗେଇ ଆସିଥିଲା ସଞ୍ଜୟ···

କିନ୍ତୁ କାହିଁକି ?

ସୁବୋଧବାବୁଙ୍କର ଅହଂକାର, ଗର୍ବ ଗୌରବକୁ ଅକ୍ଷୁଣ୍ଣ ରଖିବା ପାଇଁ ନା ବନ୍ଧୁର ଅବସ୍ଥାର, ଅମାନୁଷିକତାକୁ ପକ୍ଷ ଘୋଡ଼ାଇ ଢାଙ୍କିବା ପାଇଁ ??

ଜାଣିନି ଶର୍ମିଳା । ତା ମଧ୍ୟରେ ଅସମ୍ଭବ ଦ୍ୱନ୍ଦ, ଦୁର୍ବିସହ ଜ୍ୱାଳା, ଅସହ୍ୟ କ୍ଷୋଭ । ସେହି କ୍ଷୋଭରେ ପ୍ରଥମ ସୁଯୋଗକୁ ବରଣ କରି ସଞ୍ଜୟ ସଙ୍ଗେ ସେ

ଚାଲିଯାଉଥିଲା ଅମେରିକା · ସଂକଳ୍ପ କରିଥିଲା ଆଉ ଏକ ଜୀବନକୁ ସରସ ସୁନ୍ଦର କରିବା ପାଇଁ···

ସେ ଜୀବନ ସୁନ୍ଦର ହେଉ··
ଏ ପ୍ରୀତି ଶାଶ୍ୱତ ହେଉ···

ପ୍ରୀତିର ସ୍ମାରକ ତାର ଦୁଇଟି ସନ୍ତାନ । ସଞ୍ଜୟ ଶର୍ମିଳାର ନାଁକୁ ସମ୍ମାନିତ କରିଛି । ଚାରି ବର୍ଷର ବ୍ୟବଧାନରେ ସାନ ଭାଇ ଭଉଣୀ ଦୁଇଟି ଉଜ୍ଜ୍ୱଳ ରତ୍ନ । ଆଜି ବାରବର୍ଷ ପରେ ସେ ପ୍ରଥମ ଥର ପାଇଁ ତାର ଜନ୍ମପୀଠକୁ ଯାଉଛି ସୁଦୀର୍ଘ ରହଣୀର ସଂକଳ୍ପ ନେଇ···

ଅନେକ ଥର ସେ କଟକ ଯାଇଛି । ମାତ୍ର ଗୋଟିଏ ଦିନ ପାଇଁ । ଏଥର କିନ୍ତୁ ସେ ପରୀକ୍ଷା ଦେବାକୁ ଯାଉଛି । M. A. ପରୀକ୍ଷା । ଅନନ୍ତ ଅବସର । ପରିତୃପ୍ତ ସଂସାର । ଶ୍ରେଷ୍ଠ ପରିବାର । ପଢ଼ିବାର ସ୍ପୃହା ଦ୍ୱିଗୁଣିତ ହୋଇଛି··· କିଛି ଅବଶୋଷ ତାର ଆଉ ନାହିଁ···

ତା ଜୀବନକୁ ତିଳ ତିଳ କରି ସାର୍ଥକ କରିଛି ସଞ୍ଜୟ· ତାର ହୃଦୟ-ସ୍ଥାନ ସ୍ୱାମୀ ।

ଆଜି ଆଉ ଖେଦ ନାହିଁ···

ଅନ୍ତର ଭିତରେ ସେ କ୍ଷମା କରିଛି ଅମରେଶଙ୍କୁ···ଅମରେଶ ସୁଖୀ ହେଉ ।

ଗାଡ଼ିର ଗତି ସଙ୍ଗେ ଭାବନାର ଗତି ବଢ଼ି ଚାଲିଛି ··ଶର୍ମିଳାର ଭାବନାରେ ପୂର୍ଣ୍ଣଚ୍ଛେଦ ପଡ଼ିଲା···

"କଣ ଏତେ ଭାବୁଛ ? ଆଜି ଟିକେ ଦୟା କରିବ ନି ! ଷ୍ଟିଅରିଂ ଆଉ ଧରି ପାରୁନ ଯେ !"

ଲଜ୍ଜିତ ହେଲ ଶର୍ମିଳା । ହଁ— ସଞ୍ଜୟର ସଉକ, ସଞ୍ଜୟର ନିଶା । ସୁକଣ୍ଠୀ ଶର୍ମିଳାର କଣ୍ଠସଙ୍ଗୀତ ସର୍ବପ୍ରଥମେ ସଞ୍ଜୟକୁ ହିଁ ଆନନ୍ଦ ଦେଉ । କାହାର ପ୍ରେରଣାରେ ଆଜି ସେ ସାର୍ଥକଶିଳ୍ପୀ ?

ଶର୍ମିଳା ଭୁଲିଗଲେ ଅତୀତ । ଫେରିଗଲେ ସଞ୍ଜୟର ହାତଗଢ଼ା ସାର୍ଥକ ସଂସାରର ମଧୁର ପରିବେଷ୍ଟନୀକୁ । କଣ୍ଠରୁ ସଙ୍ଗୀତ ତରଙ୍ଗାୟିତ ହେଲା ଗାଡ଼ିର ତାଳେ ତାଳେ । ଫିଆଟ ଗାଡ଼ିର ଗତି ବଢ଼ି ଚାଲିଲା ! ଗତିର ମୋହ···ଜୀବନର ମୋହ···ସନ୍ତରିବାକୁ ଲାଗିଲା ଗାଡ଼ି ସର୍ପିଳ ପଥରେ···

x x x

ଏପଟେ ଛୁଟୁଥିଲା ଗୋଟିଏ ନୂଆ ଫିଆଟ ପ୍ରବଳ ବେଗରେ । ଗାଡ଼ି ଭିତରେ ଅସମ୍ଭବ ଉତ୍ତେଜନା । ସାନ ସାନ ଛଅଟି ପିଲା । ଶର୍ଦ୍ଦି କାଶରେ ଭାଜି ପଡ଼ୁଛନ୍ତି ଇନୁ, ମିନୁ । ଦୁର୍ବଳ ଶୀର୍ଣ୍ଣ ଶରୀର, ଜୀର୍ଣ୍ଣ କଙ୍କାଳ···

“ବେକରେ ମଫଲରଟା ଗୁଡ଼େଇ ଦେ ତ ବାପୁ” ଅବସନ୍ନ ଗଳାରେ ଡାକ ଦେଲା ଉର୍ମି ··

କୋଳରେ ୬ ମାସର ଝିଅଟିଏ ରହି ଚିତ୍କାର କରୁଛି । ବିରକ୍ତିକର ଉତ୍କଟ ଚିତ୍କାର···

ବିରକ୍ତ ହୋଇ ଅମରେଶ ସିଗାରେଟ ଫିଙ୍ଗି ଦେଲା ··

—“ବିସ୍କୁଟ ଡବାଟା ଖୋଲି ଧରେଇ ଦିଅ ତ ?” ଓହୋ—ମୁଣ୍ଡ ଖରାପ କରିଦେଲେ···

—“ନିତୁର ପେଟ ଖରାପ, ପୁଣି ବିସ୍କୁଟ ଦେବ ? ବାଟରେ ଖାଡ଼ାବାଲି ହେଲେ !”

—“ଓହୋ—ସବୁଥିରେ ଡର ! କଣ ଆଉ କରିବ ଶୁଣେ ?”

—“ମୁଁ କହୁଥିଲି ଏବୁଡ଼ାଙ୍କୁ ସବୁ ଛାଡ଼ି ଦେଇ ଆସ ।”

—“ହୋପ୍‌ଲେସ୍—କାହାକୁ ଛାଡ଼ିବ ? କେଉଁଠି ଛାଡ଼ିବ ? ଦିନେ ଦୁଇ ଦିନର କଥାତ ନୁହେଁ । ଶୁଣିଲ ପରା, ଚାରି ମାସ ରହିବାକୁ ହେବ ।”

× × ×

ଦୀର୍ଘ ବାରବର୍ଷ ପରେ ଉର୍ମିଳା କଟକ ଯାଉଛି । ସୁଦୀର୍ଘ ୪ ମାସ ରହିବ । ଏଇଭଳି ୪ଟି ମାସ ରହିବାର ପ୍ରସ୍ତାବକୁ ଯଦି ୭ ବର୍ଷ ତଳେ ଗ୍ରହଣ କରିଥାନ୍ତା ଅମରେଶ୍, ତେବେ ଏ ଦୁର୍ଦ୍ଦଶା ଆଜି ହୋଇ ନ ଥାନ୍ତା ଉର୍ମିଳାର···

ନିଜକୁ ନିରେଖି ଦେଖିବାର ଅବକାଶ ଆଜି ନାହିଁ ଉର୍ମିଳାର···

ଗୋଟି ଗୋଟି ହୋଇ ସାତଟି ଶିଶୁ ତାର ୧୨ ବର୍ଷର ବିବାହିତ ଜୀବନକୁ ସମ୍ପୂର୍ଣ୍ଣ ଭାବରେ ଅଧିକାର କରି ରହିଛନ୍ତି । ବିଶ୍ରାମ ନାହିଁ, ଶାନ୍ତି ନାହିଁ, ଖାଲି ଯନ୍ତ୍ରପରି ଜୀବନ ସଙ୍ଗରେ ଯୁଦ୍ଧ । ଭାଜି ପଡ଼ିଛି ସ୍ୱାସ୍ଥ୍ୟ, ବିଦାୟ ନେଇଛି ସୌନ୍ଦର୍ଯ୍ୟ । ପଦ୍ମଚକ୍ଷୁ ହଜି ଯାଇଛି ଦୁର୍ବଳ ରକ୍ତଶୂନ୍ୟ ସାଦା ଧୋବ ଫରଫର ଶରୀରରେ । କୁଆଁଟା ଖାଇଗଲାଣି । ଯେତେ ଚେଷ୍ଟା କଲେ ମଧ୍ୟ କ୍ଷୀର ଛାଡ଼ାଇ ପାରିଲାନି । ପୁଣି କଣ ହେବ ଏଥର ? କା ପାଖେ ରହିବେ ଏମାନେ ? ଉର୍ମିର ଛାତି ଭିତରେ ଥରି ଉଠିଲା । ଯାହା ଦୁଷ୍ଟ ଏ ବଡ଼ ପୁଅ ଦୁଇଟା ! ମରାମରି ହୋଇ ଗୋଟାକର ମୁଣ୍ଡ ଫାଟିଛି । ଶ୍ୱାସରେ କଷ୍ଟ ପାଉଛନ୍ତି ଝିଅ ଦୁଇଟା । କିଏ ରଖିବ ଏତେ ଦିନ ? ହସପିଟାଲରେ କେମିତି ରହିବ ଉର୍ମି ? କିଏ ନେବ ଏ ଦାୟିତ୍ୱ ? ନିଜକୁ ମୁଗ୍ଧ ସଳିତା ପରି ସେ ଜାଳୁଛି···

ସେ ଅମରେଶର ସନ୍ତାନମାନଙ୍କୁ ନେଇ ଜଞ୍ଜାଳ ଜାଲରେ ଅହରହ ଜଳୁଛି···

କିନ୍ତୁ ସେ ଯଦି ଭୁଲିଯାଏ ??

ତେବେ ???

ଉର୍ମିର ଆଖି ଲୁହରେ ଭିଜିଗଲା । ଝରିପଡ଼ିଲା ଅସରନ୍ତି ଲୁହର ଝରଣା । ଭାରି ଦୁର୍ବଳ ଲାଗୁଛି । ଆଉ ଏଇ ଦୁର୍ବଳତା ଯୋଗୁଁ ବୋଧେ ଭାରି ଭୟ ହେଉଛି ତାର ! ହଁ ଭାରି ଭୟ...

ଅମରେଶ ଉପରେ ଭକ୍ତିର ଏକ ଅଭିମାନରେ ଉର୍ମିଳାର ଛାତି ଫାଟି ପଡ଼ିଲା । ବିଦ୍ୱାନ, ସୁଯୋଗ୍ୟ ସ୍ୱାମୀଙ୍କୁ ଉପଦେଶ ଦେବାର ଆସ୍ପର୍ଦ୍ଧା ତାର ନାହିଁ କି ନଥିଲା । ନୀରବରେ ମାନି ନେବ ସେ ଅମରେଶର ସମସ୍ତ ନିର୍ଦ୍ଦେଶ !

ତଥାପି...

ଏକାନ୍ତ ଦୁର୍ବଳ କ୍ଷଣର ନେଇ ସେ ସେଦିନ ଅନୁନୟ କରିଥିଲା.. ଲେଡ଼ି ଡାକ୍ତରଙ୍କ ଉକ୍ତିର ପୁନରାବୃତ୍ତି କରିଥିଲା.. ଦୁଇଟି ସନ୍ତାନ ଯଥେଷ୍ଟ..

ଆଉ ନୁହେଁ, କେବେ ନାହିଁ ଏ ଦୁର୍ବଳ କ୍ଷଣରେ...

ଏମାନଙ୍କୁ ଯଦି ଭଲ ମଣିଷ ନ କରି ପାରିବା ତେବେ ଜନ୍ମ କରିବାର କି ଅଧିକାର ଆମର ଅଛି ?

ଆକାଶଫଟା ହସରେ ଭାଙ୍ଗି ପଡ଼ିଥିଲା ଦାମ୍ଭିକ ଅମରେଶର ଚବୋକ୍ସଲା ମୁଖମଣ୍ଡଳ । ନିଜର ଶକ୍ତି ଉପରେ ତାର ଅଗାଧ ବିଶ୍ୱାସ । ସେ ସୁଯୋଗ୍ୟ ଉଚ୍ଚ ଅଫିସର । ହଁ— ଅହଙ୍କାର । ନିଷ୍ଠିକ ଏକ ଅହଙ୍କାର ନୁହେଁ ତ ଆଉ କଣ ?

ହଁ ସେ ଦେଖାଇ ଥିଲା ବଳିଷ୍ଠ ଏକ ଯୁକ୍ତି; ବୁଦ୍ଧିଜୀବୀ ଆମେ । ଆମେ ସୃଷ୍ଟି କରିବୁ ପ୍ରତିଭା । ବୁଦ୍ଧିଜୀବୀମାନଙ୍କର ବଂଶ ବୃଦ୍ଧି ସମାଜ ପକ୍ଷରେ ମଙ୍ଗଳ । ଜନ୍ମ-ନିୟନ୍ତ୍ରଣ କରନ୍ତୁ ଅର୍ଦ୍ଧଶିକ୍ଷିତ ଦରିଦ୍ର ଜନତା, ଯାଙ୍କର ଉପାର୍ଜନର କ୍ଷମତା ନାହିଁ । ଆମେ କରିବୁ ଜନ୍ମନିୟନ୍ତ୍ରଣ ? ଆଉ ଗଣତନ୍ତ୍ର ଶାସନ ଚାଲିବ ଏମାନଙ୍କ ହାତ-ଟେକାରେ...ଏଇ ମୂର୍ଖ ଜନତାର ବିକଳାଙ୍ଗ ବଂଶଧରମାନଙ୍କୁ ନେଇ...

ଉର୍ମିଳା ବିନା ପ୍ରତିବାଦରେ ବୁଦ୍ଧିଜୀବୀ ଅମରେଶ ପ୍ରଦତ୍ତ ପ୍ରତିଭାକୁ ଗର୍ଭରେ ଧାରଣ କରିଆସୁଛି ବାରମ୍ବାର । ଆଉ ବିଶ୍ରାମ ନାହିଁ, ଆଜି ହେଇଥିପାଇଁ ତାକୁ ହୁଏତ ଜୀବନ ଦେବାକୁ ପଡ଼ିବ...

ଦୁଃଖ ନଥାନ୍ତା ଯଦି ସେ ପ୍ରକୃତରେ ଆଦର୍ଶ ସନ୍ତାନ ଦାନ କରିପାରି ଥାଆନ୍ତା ସମାଜର କଲ୍ୟାଣ ପାଇଁ...

କିନ୍ତୁ...

ଏମାନଙ୍କୁ ଦେଖିଲେ କଣ ଅମରେଶର ଆହତ ପୌରୁଷ ଚିତ୍କାର କରି ଉଠେ ନାହିଁ ?

ନିଷ୍ଫଳ ଆକ୍ରୋଶରେ କାହିଁକି ତେବେ ବାରମ୍ବାର ଗର୍ଜିଉଠେ ଅମରେଶ ?

ଏକି ବିଭତ୍ସ ଦୁର୍ଦ୍ଦାନ୍ତ ପଶୁପଣ ତାର ବଳିଷ୍ଠ ବ୍ୟକ୍ତିତ୍ୱ ଏମିତି ଅସହ୍ୟ କ୍ରୋଧରେ ଘର୍ଜି ପଡ଼େ କାହିଁକି ?

ଜାଣେ ଉର୍ମିଳା—ଭଲ କରି ଜାଣେ । ନିଜର ଅପାରଗତା, ଦୂରଦୃଷ୍ଟିର ଅଭାବ ଅମରେଶଙ୍କୁ ଅବିରତ ଦଗ୍ଧ କରୁଛି ।

କିନ୍ତୁ ସେଦିନ…

ସେଦିନ ପ୍ରତିହିଂସ୍ର ଅମରେଶର ସେ ଦସ୍ୟୁମୟ ରୂପକୁ ସହ୍ୟ କରିପାରି ନଥିଲା ଉର୍ମିଳା…

ଅମରେଶ ମୁଖରୁ ଏ କାତର ସ୍ୱୀକାରୋକ୍ତି ସେ କେତେ ଅସହ୍ୟ ତା ଉର୍ମିଳା ବ୍ୟତୀତ ଆଉ କିଏ ବୁଝିବ ?

ଆଜି ସମସ୍ତ ସୌନ୍ଦର୍ଯ୍ୟ ହରାଇ ଉର୍ମିଳା ପାଇଛି ସାତଟି ସନ୍ତାନ ! ଏତିକି ସନ୍ତୋଷ ପାଇଁ ସେ ବଞ୍ଚି ଥିଲା ··

ସେ ଅମରେଶଙ୍କୁ ସନ୍ତୋଷ କରିପାରିଛି, ସେତିକି ସେ ତୃପ୍ତ ନାରୀର କାମ୍ୟ…

କିନ୍ତୁ କାହିଁ…

ଅମରେଶଙ୍କୁ ତ ସେ ଶାନ୍ତି ଦେଇପାରିଲା ନାହିଁ !

ଦେଖୁଛି ସ୍ତୂପୀକୃତ କଙ୍କାଳ । କଙ୍କାଳର ପାହାଚରେ, ଚୁଡ଼ାରେ ବନ୍ଧି ବନ୍ଧି ସୁଦର୍ଶନ ଅମରେଶରେ ଆସିଛି ଅକାଳ ବାର୍ଦ୍ଧକ୍ୟ…

ଖାଲି ଅସନ୍ତୋଷର ବହ୍ନି ଭିତରେ ସେ ଏକ ସୁପ୍ତ ଆଗ୍ନେୟଗିରି ପରି ଜଳୁଛି…

ସେ ଦିନ କିନ୍ତୁ ଫିଟି ଯାଇଥିଲା ଆଗ୍ନେୟଗିରିର ଉତ୍ତପ୍ତ ଜ୍ୱାଳାମୁଖ…

ତରଳ ଉତ୍ତପ୍ତ ଲାଭାର ପ୍ରବାହରେ ଉର୍ମିଳା ରୁଦ୍ଧଶ୍ୱାସ ହୋଇ ଉଠିଥିଲା ।

ହଁ ଭ୍ରାନ୍ତିରୁଦ୍ଧି··· ସେମାନେ ଭ୍ରାନ୍ତିରୁଦ୍ଧି କରିବାପାଇଁ ଯାଉଛନ୍ତି । କୁଟକର୍ମର ଭ୍ରାନ୍ତିରୁଦ୍ଧି ଅପରେସନ୍ । ତା'ଛଡ଼ା ଆଉ କଣ ଉପାୟ ଅଛି ଏ ନର୍କ ଯନ୍ତ୍ରଣାରୁ ଉଦ୍ଧାର ପାଇବା ନିମନ୍ତେ ???

ଅଛି—ଆଉ ଏକ ଅଦ୍ଭୁତ ସୁନ୍ଦର ରାସ୍ତା ଅଛି । ତାହାହିଁ ହେଉଛି ମୁକ୍ତି—ଅଖଣ୍ଡ ମୁକ୍ତି…

ଲୁଣ ତେଲ ଗଣା ଟିଅଣା ପାଇଁ ଆଉ ଅନବରତ ଲୁହ ଢାଳିବାକୁ ପଡ଼ିବନି…

ପିଲାଙ୍କୁ ବାରମ୍ବାର ନଫଲରେ ବାନ୍ଧିବାକୁ ତାଗିଦ୍ ଦେବାକୁ ପଡ଼ିବନି… ଗୋଡ଼ ଲମ୍ବାଇ ସାନ ଝିଅର ଉପରେ ପୁଅଟାକୁ ଯାହାକୁ ଅଇଣ୍ଠିଆ ବାଧୁଛି, ତାକୁ ସାରରାତି 'ଧୋ ବାଇଆ ଧୋ' କରିବାକୁ ପଡ଼ିବନି…

ଅମରେଶର ଅକାରଣ କ୍ରୋଧକୁ ନୀରବରେ ଯଥାସାଧ୍ୟ ସହ୍ୟ କରିବାକୁ ପଡ଼ିବନି···

ଅଛି ଏକ ଅଦ୍ଭୁତ ସୁନ୍ଦର ମାର୍ଗ···

ଆଃ···ଆଉ ବଞ୍ଚିବିନି ନର୍ସ, ମତେ ମାରିଦିଅ । ମୁଁ ମରିବାକୁ ଚାହେଁ !!

"ଛି···ଏମିତି ଅଧୈର୍ଯ୍ୟ ହେଲେ ଚଳିବ ! ବ୍ୟସ୍ତ ହୁଅନ୍ତୁନି । ଛି" ।

ହସ୍ପିଟାଲର ବେଡ୍‌ରେ ଶୋଇ ରହି ଉର୍ମିଳାର କଣ୍ଠ ଥରି ସ୍ତୂପୀକୃତ ସବୁ ବ୍ୟଥା ସବୁ ଅଭିଯୋଗ ଝରି ପଡ଼ିବାକୁ ଚାହୁଁଥିଲା···

ଅମରେଶ ନିର୍ବାକ୍ ମୂକ । ଡାକ୍ତର୍ ଶେଷ କଥା କହୁଛନ୍ତି "X-ray ପରେ ଯାହା ହେବ । ଏହା Pregnancy ନୁହେଁ । More Pregnancy ହେବା ଫଳରେ ଇଉଟ୍ରେସ୍‌ରେ କ୍ୟାନ୍‌ସର୍ ହୋଇଛି । କ୍ରମାଗତ ଭାବରେ ଗର୍ଭଧାରଣ ହେଲେ ସ୍ତ୍ରୀ ଲୋକମାନଙ୍କର ଏହି ଭଳି ରୋଗ ହୋଇଥାଏ । "ଅନ୍ତତଃ ପକ୍ଷେ ୩ ବର୍ଷ ବ୍ୟବଧାନ ଯେ ନିହାତି ଦରକାର ସାର୍ ! ଏଣେ କିନ୍ତୁ Mrs. Dasଙ୍କର ଖୁବ୍ ଅଳ୍ପ ବୟସ । କଣ କରାଯାଇପାରେ, ଭଗବାନ ଭରସା । ଶେଷ ସିଦ୍ଧାନ୍ତ ଅପରେସନ୍ । କିନ୍ତୁ ସେ ଯେ ଏତେ ଦୁର୍ବଳ ।" ଡାକ୍ତର ଶଙ୍କିତ ସ୍ୱରରେ କହିଲେ ।

ଅମରେଶର ବଳିଷ୍ଠ ପୌରୁଷ ଗୋଟାଏ ସ୍ତୂପୀକୃତ ଭସ୍ମସ୍ତୂପରେ ରୂପାନ୍ତରିତ ହୋଇଛି···

ଆଖି ମେଲିଲା ଉର୍ମିଳା । ଓଠ ଥରୁଛି । କଥା କହିବାର ଶକ୍ତି ନାହିଁ । ବିଶ୍ୱାସ କରି ହେଉନି ଏ ତାରି ନାମ । ଆଉ ଏ ଯୋଡ଼ିକ ତା'ର ନାମର ପୁଅ ଝିଅ···'କି ସୁନ୍ଦର'···

"ଉର୍ମି···ଉର୍ମିଳେ" ଉର୍ମିଳାର କଣ୍ଠସ୍ୱର ଭାଙ୍ଗି ପଡ଼ୁଥିଲା ଅସହ୍ୟ ବ୍ୟଥାରେ—

ବାହାରେ ଅମାବାସ୍ୟାର ଗାଢ଼ ଅନ୍ଧକାର । ନିତାନ୍ତ ଅସହାୟ ଶିଶୁଟିପର ସନ୍ତାନଙ୍କୁ କାବୁଡ଼ି ଧରି ହାଉ ହାଉ ହୋଇ କାନ୍ଦି ଉଠିଲା ଅମରେଶର ଆହତ-ପୌରୁଷ···



•

## ● ଅବରୁଦ୍ଧ କୋଠରୀ

କିଏ ଜଣେ ଲେଖିଥିଲେ ପଦ୍ୟ, କେଉଁ ବହିରେ ପଢ଼ିଥିଲି ପରି ଲାଗୁଛି ମ ! ପ୍ରେମର ଯୋଗ୍ୟ ହେବାକୁ ହେଲେ କୁଆଡ଼େ ଯାତନାରୁ ନବଯାତନା ମଧ୍ୟ ଦେଇ ଗତି କରିବାକୁ ହେବ ।

ହଁ, ପ୍ରେମ ଏକ ଅପରେସନ୍ ।

କିନ୍ତୁ ତା'ପରେ···

ତା'ପରେ ଯେ ନିବିଡ଼ ପ୍ରଶାନ୍ତି, ପରିପୂର୍ଣ୍ଣ ତୃପ୍ତି, ପୂର୍ଣ୍ଣାହୁତିର ମହକ '

ହଁ, ଅଦ୍ଭୁତ ଏକ ଯନ୍ତ୍ରଣା, ଯାହାକୁ ପାଇବାପାଇଁ ପ୍ରତି ରକ୍ତକଣିକା ବ୍ୟାକୁଳ ହୋଇଉଠେ ।

ତାକୁ ନିକଟରେ ଦେଖିଲେ ଏତେ ଅସ୍ଥିର ଲାଗେ କାହିଁକି ?

ଶରୀର ମଧ୍ୟରେ ଏତେ କମ୍ପନ ସୃଷ୍ଟି ହୁଏ କାହିଁକି ?

ଦଣ୍ଡେ ବି ଠିଆ ହୋଇ ହୁଏ ନାହିଁ । ଖାଲି ଦେହ ନୁହେଁ, ତା ଭିତରର ନିଭୃତ ମନ ମଧ୍ୟ ଥର ଥର ହୋଇ ଥରେ ।

ନୟନ ବୁଜିଲେ ମନେ ହୁଏ ତାକୁ କେବଳ ଦେଖୁଥାଆନ୍ତି ଅନନ୍ତ କାଳ ଧରି । ଏ ଦେଖାର ଶେଷ ନଥାନ୍ତା !

କିନ୍ତୁ···

ହଠାତ୍ ଦେଖା ହେଲେ ଆଖି ଅପସରି ଯାଏ । ବିଦ୍ୟୁତ୍ ଶିହରଣ ଖେଳେ ଶରୀରରେ । ଯନ୍ତ୍ରଣା ହୁଏ, ଜ୍ୱାଳା କରେ ! ଧରି ହୁଏନା ପୁଣି ଛାଡ଼ି ବି ହୁଏନା !

ଅଦ୍ଭୁତ···

ନିରୋଳାରେ କେତେ କଥାର ଜାଲ ବୁଣେ ସୁଜାତା ! କଥା ପରେ କଥା ଥାକ ଥାକ କରି କଥା ଖାଲି ସାଇତି ରଖେ । କିନ୍ତୁ ସେ କିଛି କଥା ପଚାରିଲେ ସବୁଗୁଡ଼ାକ ସାଜିଲା କଥାର ଡାଲା ଓଲଟ ପାଲଟ ହୋଇଯାଏ । କଥାଫୁଲ ଖସିପଡ଼େ ଡାଲାରୁ !

ଅତି କଷ୍ଟରେ ବୁଡ଼ି ଯାଉଥିବା ଲୋକ କୁଟାଖିଅକୁ ଆଶ୍ରା କଲା ପରି ସେ କଳବଳ ହୋଇ ସେହି ଅତି ପ୍ରାଚୀନ ଆଳଟା ଦେଖାଏ, ଯାହା କୁଆଡ଼େ ସମସ୍ତେ ଦେଖାନ୍ତି ।

ହଁ, ନୋଟ୍‌ଟା ଦରକାର ଥିଲା ଯେ !

ଚରବର ହୋଇ କହି ପକାଏ ସେ । ସତେ ଅବା ଜୀବନର ଚରମ ଲକ୍ଷ୍ୟ ତାର ପାଠ ପଢିବା···ଆଉ ଭଲ ନୋଟ୍ ନେବା !

କେତେ ଅବାସ୍ତବ···

କାହିଁକି ଏମିତି ହୁଏ ?

ରକ୍ତରେ ତାର ଭଲ ପାଇବାର ଦୁର୍ବଳ ପ୍ଲାବନ···ଅଫେରନ୍ତ ଜୁଆର । କାହିଁକି ତା ସାଥିରେ ଓତପ୍ରୋତ ଭାବେ ମିଶି ରହେ ଅବ୍ୟକ୍ତ ଯନ୍ତ୍ରଣା ? ସ୍ୱୀକାର ନାଁ କଣ ପ୍ରେମ ? ପ୍ରେମର ସଜ୍ଞା ତାକୁ ଜଣା ନାହିଁ ଯେ । ଶିହରି ଉଠେ ତନୁଜା । ନିଜ ଉପରେ ଘୃଣା ଜାତ ହୁଏ ତାର । ଏତେ ଶ୍ରେଷ୍ଠ ସ୍ଥାନ କଥା ସେ ଚିନ୍ତା କରିପାରୁଛି ? ଛି ସେ କାହିଁକି ପ୍ରେମ କରିବ ମ ! ଆରେ—ଏତେ ଖରାପ ସେ ନୁହେଁ । ଆଶ୍ଚର୍ଯ୍ୟ··· ବିଶ୍ୱର ସବୁଠାରୁ ସୁନ୍ଦର, ଶାଶ୍ୱତ ଅପୂର୍ବ ଲୋଭନୀୟ ପରମ କାମ୍ୟବସ୍ତୁ ପୁଣି ସ୍ଥାନ ! ଜୀବନର ଶ୍ରେଷ୍ଠ ସୁଖ···ଶ୍ରେଷ୍ଠ ସୁଖ ! 'ଭଲ ପାଇବା'

ତେବେ···ଏମାନେ କାହିଁକି ତାକୁ ବୁଲେଇ ବୁଲେଇ ଗୃହାନ୍ତି ? ଅକାରଣରେ ଓଠ ଚିପି ହସନ୍ତି··ବିଦ୍ରୂପ କରନ୍ତି ?

ଅହେତୁକ ଈର୍ଷା ?

ପରାଜୟର ଗ୍ଲାନି ?

ଅପାରଗତାର କ୍ଷୋଭ ?

କେଜାଣି, ଦିନ ସବୁ ନଥିଲା ସୁଜାତାର ପରକଥା ଚିନ୍ତା କରିବ ! ହେଲେ ଏବେ ନ ଭାବିଲା ସୁଜାତା ପରକଥା···କିନ୍ତୁ ନିଜେ ? ନିଜ ମନ ଭିତରେ ଏ ଦ୍ୱନ୍ଦ୍ୱ କାହିଁକି ?

ଯେଉଁ ବଳିଷ୍ଠ ସ୍ପର୍ଶ ଟିକକ ପାଇଁ ଆତ୍ମା ଦୁଃସହ ବ୍ୟଥାରେ ଛଟପଟ ହୁଏ, ଦୃଢ ଲୋମକୂପ ଅସହ୍ୟ ଇଚ୍ଛାରେ ପ୍ରକମ୍ପିତ ହୁଏ, ସେ ଅଦ୍ଭୁତ ସୁନ୍ଦର ଇଚ୍ଛାଟା ପୁଣି ଏତେ ଘୃଣ୍ୟ ମନେ ହୁଏ କାହିଁକି ? କାହିଁକି ଏ ଇଚ୍ଛା ସାଥିରେ ସମାନ୍ତରାଳ ଗତିରେ ଆଗେଇ ଚାଲେ ଅସୁମାରି ଘୃଣା ? ନିଜପ୍ରତି ରାଶି ରାଶି ପୁଞ୍ଜୀକୃତ କ୍ରୋଧ ? ପ୍ରେମ କଲେ ତ ଅପରାଧବୋଧ ରହେ ନାହିଁ···ତେବେ—

ତେବେ ସୁଜାତାର ଏ ଆତ୍ମଗ୍ଲାନି କାହିଁକି, କାହିଁକି ଏତେ ଯନ୍ତ୍ରଣା ? ଦଂଶନ ? ଭୟ ?

ପ୍ରେମ ତ ଅଫେରନ୍ତ ଅମୃତ ଦାନ କରେନା । ଭରି ଦିଅନ୍ତା ହୃଦୟପାତ୍ର । ଆଃ ! ସେ ଅମୃତ କ'ଣ କେବେ ମିଳିବ ? ଗ୍ରହଣିପାରିବ ସୁଜାତା···ତେବେ···ଏ କ'ଣ ପ୍ରେମ ନୁହେଁ ? ଧୂତେରି···ଘରରେ ସୁଜାତା ବହି ଫିଙ୍ଗିଦିଏ । ଟେବୁଲଓ ଖୋଲେ···

କୁଞ୍ଚୁକୁଞ୍ଚିଆ ବାକ୍ସ ଗଛଟା ଏଇଠି ନ ରଖିଲେ କ'ଣ ଚଳନ୍ତା ନାହିଁ ?

ବୋଉ—ଏ ବୋଉ, ଗଛଟା ଏଠି କାହିଁକି ଅଛୁ ଶୁଣେ ?

ସେହି କୁଞ୍ଚୁକୁଞ୍ଚିଆ ସ୍ପ୍ରିଙ୍ଗ୍ ପରି ବାଳଗୁଡ଼ାକ ଏତେ ଲୋଭନୀୟ କାହିଁକି ? ଏ ଗଛ ଦେଖିଲେ ତାଙ୍କ କଥା ମନେ ପଡ଼େ ।

ସାରା କଲେଜରେ କଣ ଆଉ କାହାର କୁଞ୍ଚୁକୁଞ୍ଚିଆ ବାଳ ନାହିଁ ? ନାହିଁ ଘନକଳା ସୁତୀକ୍ଷ୍ଣ ଦୁଇ ଧାଡ଼ି ଲୋଭନୀୟ ନଣ ? ପୌରୁଷର ସ୍ୱାକ୍ଷର ? ତେବେ ଜଣକର ହସ କାହିଁକି ବୁକୁରେ ଏତେ ତରଙ୍ଗ ସୃଷ୍ଟି କରେ ? କାହିଁକି ଜଣକର ସ୍ପର୍ଶ ପାଇଁ ଆତ୍ମା ବାଉଳ ବାଉଳ ହୁଏ ?? ସହଶିକ୍ଷାର ବିଷମୟ ଫଳ ? ବୟସର କରାମତ ? କେଜାଣି !

କନୁ...

କନୁ...କେତେ ତ ଅଛନ୍ତି । ତାଙ୍କ କଥା କାହିଁକି ଏତେ ଭଲ ଲାଗୁଛି ?

ଏଇ ଭଲ ଲାଗିବା ପାଇଁ କ'ଣ ସେ କମ୍ ଯନ୍ତ୍ରଣା ପାଉଛି ? କିଏ ଦେଉଛି ? ବାପା, ବୋଉ, ସମାଜ, କଲେଜ ଝିଅମାନେ ? ଦୂର...

"ମନ ମୋହର ନଜ-ସ୍ୱରୁ
ଉଦ୍ଧବ କେତେ ବୁ ପର୍ବରୁ"

ଏଇତ ! ବୁଢ଼ୀ ମା ଦିନ ଦି ପ୍ରହରରେ ଏଇଠି ବସି ଭାଗବତ ଶୁଣିବେ । ସତେ ଯେମିତ ଆଉ ଘର ନାହିଁ ଏତେ ବଡ଼ କ୍ୱାର୍ଟରରେ !

ସୁଜାତା ରାଗରେ ବାପାଙ୍କ ଘରକୁ ଯାଏ । ବାପା ଟୁର୍ ଯାଇଛନ୍ତି । ସେଇଠି ସେ ପଢ଼ିବ । ଝରକା ଖୋଲାରେ । କେତେ ମିଛ, କେତେ ଅବାନ୍ତର ଏ ଭାବନା କଣ ତାର ହୋଇଛି ଯେ ? ଜମାରୁ ସେ ଜାଣି ପାରୁନ । ମନ କହୁଛି...ସେ ଯେତେବେଳେ କଥା କହେ...ସେହି ପ୍ରଶ୍ନର ଉତ୍ତର ଦେଲେ ମନ ପ୍ରାଣ ତୃପ୍ତିରେ ଭରି ଉଠନ୍ତା ଅବା...କନୁ କାହିଁ ? ଆହୁରି ଯନ୍ତ୍ରଣା । ଭଲ ନ ଲାଗିବାର ଢେଉ ଗୁଡ଼ିକ ତାକୁ ଅନବରତ ଅଶାନ୍ତିରେ ଧୋଇ ଦେଉଛନ୍ତି...ସିକ୍ତ କରୁଛନ୍ତି ଅତୃପ୍ତିର ତପ୍ତ ଜଳରେ । ତେବେ ସେ କଣ ଭଲ ପାଉନ ?

ନା—ସାହସର ଅଭାବ ! ସଂସ୍କାରର ଚେର, ସଂସ୍କାରର ମଜଭୁତ ଆ ଲମ୍ବା ଲୁହା ଶିକୁଳିଟା ତାକୁ ପଛକୁ ଟାଣି ଧରୁଛି ! ଓଟାରି ଆଣୁଛି ଆପଣା ଗଣ୍ଡି ଭିତରକୁ ! ସେଇଥିପାଇଁ ଏତେ ଯନ୍ତ୍ରଣା ! ଆହା, ଆଖିତୋଳାକୁ ଅଦୃଶ୍ୟ ହାତରେ ଟାଙ୍କି ଦେଉଛି ଯେ...ପରମ୍ପରା କବଳରୁ ମୁକ୍ତି ନାହିଁ ।

ହିଁ ନିଜ ଭିତରେ ସଂଗ୍ରାମ କରେ ତନୁଜା । ସଂଶୟ ମଧ୍ୟରେ ଦୋହୁଲ୍ୟମାନ ହୁଏ ସିଦ୍ଧାନ୍ତର ନୌକା...କ'ଣ କରିବ ସେ ?

ନା—ନା—ଶକ୍ତି ସଞ୍ଚୟ କରି ସବୁ ବଳ ଖଟେଇ ଏଇ ମଜବୁତିଆ ଲୁହା ଶିକୁଳଟା ସେ ଛିଣ୍ଡେଇ ଦେବ ।

ହଁ ସେ ଛିଣ୍ଡାଇ ଫିଙ୍ଗି ଦେବ···

ଆଉ ଚାପରେ ? ନବଡ଼ ପ୍ରଶାନ୍ତ । ପ୍ରାଣଭରି ସୁଧାପାନ । "ମାଧବୀ ବନ-ଫୁଲ ମିଳଏ ଯାଏ"···ଗୁଣ ଗୁଣ ହୁଏ ସୁଜାତା···

× × ×

କଣ ଏମିତ କଣ୍ଠ ପକାଇଛୁ ଯେ ··

ଚାଲୁଛୁ, ଚାଲୁଛୁ ସେ···ପାଖା ପାଖି ଚାଲି । ଏ ଚାଲିର ଯେମିତ ଶେଷ ନାହିଁ । ହଁ—ଖଣ୍ଡ ଖଣ୍ଡ କଥା, ମୂଲ୍ୟହୀନ ଅର୍ଥହୀନ ଉଚ୍ଛ୍ୱାସ, ଆବେଗ, ନିଶା । ଖଣ୍ଡିଆ କଥାଗୁଡ଼ାକ ସକାଳର ଗଙ୍ଗଶିଉଳି ଫୁଲ ପରି ରାସ୍ତାଯାକ ଗୋଟି ଗୋଟି ହୋଇ ଝରି ପଡ଼ୁଛି । ଟିକିଏ ଝଡ଼ ବାଜିଲେ ଝାଉଁଳି ପଡ଼ିବ । ହଜିଯିବ ମଧୁର ସୁରଭି··· ରେଭେନ୍‌ସା କଲେଜର ଏଇ ରାସ୍ତା; ଏମିତ ଭିଜିଯାଇଛି ଅସୁମାରି ମଧୁର କଥାର ଭିଜା ଭିଜା ସ୍ପର୍ଶରେ ! ବଡ଼ୁରି ଯାଇଛି ରେଭେନ୍‌ସା କଲେଜ ବାରଣ୍ଡା କେଉଁ ଯୁଗରୁ କେଜାଣି···ଅନାଦି କାଳରୁ ହୁଏତ ଦେଖି ଆସିଛି ଏ ଦୃଶ୍ୟ ।

ଶିହରିତ ହୋଇନି କି ସେ ଅଜସ୍ର ପଦଚାପରେ ? ଏ ବାରଣ୍ଡା ସେମିତ ଅଛି ···ବୁକୁର ଉତ୍ତାପରେ ତରଳି ଯାଇନି ତ ! ଅବିଚଳିତ ଏ ବାରଣ୍ଡା ! ନିଷ୍ଟୟ ବିଦ୍ରୂପ କରୁଥିବ । ଏ ଅଭିନୟ ଦେଖି ଦେଖି ଅଭ୍ୟସ୍ତ ହୋଇଥିବ ପରା···ଛି ତୁଚ୍ଛିଙ୍କି ଏ କଲେଜ ବାରଣ୍ଡା !

ଆହା—ଏ ଚାଲିର ଶେଷ କେଉଁଠି କିଏ କହିବ ?

ଚମକି ପଡ଼ିଲା ସୁଜାତା । କିଏ କହିଲା ? କେଉଁ ଝିଅ ? କ୍ଲାସ୍‌ଟିଲ୍ ଟିପ୍‌ପଣୀ ଦେଲ ? ନାଇଁ ତ କେହି ନାହାନ୍ତି ଯେ ···ଏକଦମ୍ ନିରୁଛିଆ ! କଲେଜ ଯେ ଏବେ ଫାଙ୍କା ।

କିନ୍ତୁ ଠିକ୍ ଶୁଣିଛି । ହଁ ଏଇ ବିଦ୍ରୂପ ବାରଣ୍ଡା କହୁଛି ।

ବହୁଦର୍ଶୀ ବାରଣ୍ଡାର କ'ଣ କହିବାର ଅଧିକାର ନାହିଁ ? ଉଆଁରିବାର ଆଗ୍ରହ ନାହିଁ ? *

ଚାଲିରେ ଯେ କ୍ଳାନ୍ତି ନାହିଁ । କେତେ ସତ୍ୟ ଏଇ କଥା ପଦକ !

କିନ୍ତୁ—ସତେତ ! ଏଇ ଚାଲିର ଶେଷ କେଉଁଠି ?

କଓଲେଜ ଲେକ୍‌ଚର ଥିଏଟରରୁ ଆରମ୍ଭ କରି ସାଇକୋଲଜି ଡିପାର୍ଟମେଣ୍ଟ ପର୍ଯ୍ୟନ୍ତ ସେମାନେ ଚାଲିଲେଣି । ଆଶ୍ଚର୍ଯ୍ୟ ! ଜମା ଜଣାପଡ଼ୁନି ! ବାଟ କ'ଣ ଏତିକି ? ଯଦି ଜାଣନ୍ତା ସେ ଏଇଠି ପହଞ୍ଚିଗଲେ ସେମାନେ ପହଞ୍ଚିଯିବେ; ମନ ଯେଉଁଠି ଚାହେଁ ସେଇଠି ତେବେ ସେମାନେ ଯେ ଜାଣନ୍ତି ନାହିଁ ମନ କଣ ଚାହେଁ ।

ମନ କଣ ଗୃହେଁ ?

ନିଜକୁ ପ୍ରଶ୍ନ କରୁ କରୁ ଚମକି ପଡ଼େ ସୁଜାତା ! ଉତ୍ତର ଶୁଣି ପାରିବାର ସତ୍ ସାହସ ତାର ନାହିଁ । ଦୁଇ କାନରେ ହାତ ଦେଇଦେବ ସୁଜାତା ' ଏଇ ତତ୍‌କ୍ଷଣରେ ମୁଣ୍ଡ ପିଟିଦେବ । ମନ ହେଉଛି ନିଜକୁ କହିବ ବାରମ୍ବାର·· ମର—ମର ···ପୋଡ଼ାମୁହିଁ—ଅଲକ୍ଷଣୀ ! ଛି—ଏତେ ବିକାରଗ୍ରସ୍ତ ତୋ ମନ । ଏତେ ବିକୃତ ତୋ ଚନ୍ତାଧାରା···କିନ୍ତୁ କାହିଁକି ? ବିକୃତ କାହିଁକି ଶୁଣେ ?

ଭଲ ପାଇବାଟା କେବେ ବିକୃତ ହୋଇପାରେ ନା··

ତାର ପ୍ରତିଟି କଥାର ତରଙ୍ଗରେ ଅଛି ମଧୁର ଉତ୍ତାପ । ଏ ଉତ୍ତାପରେ ଦେହର ପ୍ରତି କୋଷିକାରେ ସ୍ଫୁଲିଙ୍ଗ ଜାତ ହୁଏ । ଏ ଜ୍ୱଳନରେ ଅଛି ଅଦ୍ଭୁତ ଏକ ନିଶା । ମାଦକଦ୍ରବ୍ୟର ନିଶା । କଣ୍ଠ ଜଳିଯାଏ । ପୁଣି ଇଚ୍ଛା ହୁଏ ପାନ କରିବାକୁ ଆଗ୍ରହରେ ପ୍ରାଣ ଭରି । ମନ ହୁଏ ଥରେ ପିଇଦେଲେ ତୃଷା ମେଣ୍ଟିଯିବ··· ଅନାଦି କାଳର ତୃଷା···

ଅମୃତର ଆସ୍ୱାଦନରେ ଭରିଯିବ ଦେହର ପ୍ରତି ତନ୍ତ୍ରୀ, ଅଣୁ ପରମାଣୁ··· ନିବିଡ଼ ଶାନ୍ତିର ଫୁଆରାରେ ସିକ୍ତ ହେବ ତାପଦଗ୍ଧ ଶରୀର·· କିନ୍ତୁ ନିଜକୁ ହଜାରେଥର ପ୍ରଶ୍ନ କରି ମଧ୍ୟ କି ଉତ୍ତର ପାଇଛି ସୁଜାତା ?

ତେବେ···

ତେବେ ସେ, ସେଦିନ ଗାଧୁଆ ଘର ଦ୍ୱାର ବନ୍ଦ କରି ଏତେ ଲୁହ ଢାଳିଲା କାହିଁକି ? ଚନ୍ଦନ ସାବୁନ ଘଷି ଘଷି ଓଠ ଦୁଇଟାକୁ ( ଯେଉଁ ଓଠରେ କୁଆଡ଼େ ଭରି ରହିଥିଲା ଅଜସ୍ର ଆମନ୍ତ୍ରଣ ) ସେହି ଅତି ସୁକୋମଳ ଓଠ ଦୁଇଟାକୁ ବାରମ୍ବାର ଆଞ୍ଜୁଳା ଆଞ୍ଜୁଳା ପାଣିରେ ଘଣ୍ଟା ଘଣ୍ଟା ଧରି ଧୋଉଥିଲା କାହିଁକି ?

କାହିଁକି ସାୱାର ପାଇପ୍ ଖୋଲି ଦେଇ ବହିଯାଉଥିବା ଜଳଧାରକୁ ଭସେଇ ଦେବାକୁ ଚାହୁଁ ଥିଲା ସିଏ ? ଏମିତି ଅଦ୍ଭୁତ ଉପମାଟା କାହିଁକି ତାର ମନେ ପଡ଼ିଲା ?? ମ୍ୟାକ୍‌ବେଥର ଖେଦୋକ୍ତି···ଏ ଦାଗ ସତେ ଧୋଇ ହେବ ?

ସଂସ୍କାରର ବେଢ଼ି । ପରମେଶ୍ୱର ମୋହ । ସମାଜର ଶୃଙ୍ଖଳା । ଏକ ଭ୍ରମାତ୍ମକ ମୂଲ୍ୟବୋଧ ଭଲପଣିଆ । ସେହି ଦମ୍ଭିଲା ଲୁହା ଶିକୁଳିଟା ଏବେ ବି ଲଟେଇ ହୋଇଅଛି ସମଗ୍ର ଶରୀରରେ । କୁତ୍ସିତ ସର୍ପପରି ଜଡ଼େଇ ହୋଇ ରହିଛି ।

ତାର ବିଷାକ୍ତ ଫଣାର ଆଘାତ ଯେ ! ଏ ଜ୍ୱାଳାର ଶେଷ କାହିଁ ? ସେ କେତେ ଆଦରରେ, କେତେ ଧୀରେ, ଅତି ସନ୍ତର୍ପଣରେ ସୋହାଗ ବୁଣି ଦେଉଥିଲା ତାର କଅଁଳିଆ ପାପୁଲିରେ ! ନିବିଡ ସ୍ନେହରେ ଆପଣା ହାତରେ ରଖି ଅତି ଯତ୍ନରେ ବାରମ୍ବାର ବୁକୁର ସମସ୍ତ ଉତ୍ତାପ ଦେଇ ଆଉଁସି ଦେଉଥିଲା !

କାନ୍ତୁ···

କାନ୍ତୁ ସବୁପ୍ରପ ପରି ଅସଂଖ୍ୟ ବିଭତ୍ସ ଫେଲୁଣ୍ଡି ପୋକ ପରି, ଲିକ୍ ଲିକ୍ ଟଣ୍ଡା ଭଦ୍ରୁଲୁଡ଼ାକ ତା'ର ସାରା ଦେହରେ ଏମିତି ଘାଲୁବାଲୁ ହୋଇ ବେଢ଼ି ହୋଇଗଲା କାହିଁକି ?

ଛଟପଟ ହୋଇ ମୁକ୍ତ ଲେଢ଼ିଲା ସୁଜାତା ଯେ !

ଏଗୁଡ଼ାକ କ'ଣ ଏଇ ଜିନ୍ଦ୍ରଗୀର ଶାଖା ପ୍ରଶାଖା ? ସଂସାରର ଦୂତ ?

ଯମଦୂତ ପରି ବିଭତ୍ସ ଏଇ ଭଦ୍ରୁଲୁଡ଼ାକ କାହିଁକି ତାର ଜୀବନର ପରମ ଲଗ୍ନକୁ ଏମିତି ନଷ୍ଟ କରିଦେଲେ ? ବ୍ୟର୍ଥ କରିଦେଲେ ?

ପରମ ଲଗ୍ନ ? ହଁ—ଏଇ ଛନ୍ଦକୁ ସେ ଅପେକ୍ଷା କରିଥିଲା । ଏଇ କ୍ଷଣକୁ ସେ କେତେ ଆଗ୍ରହ ସହକାରେ ଅପେକ୍ଷା କରିଥିଲା ! ଜୀବନର କୋଡ଼ିଏଟି ବସନ୍ତ ମଧ୍ୟରେ ଏ ପରମ କ୍ଷଣରେ ଆବିର୍ଭାବ ହେଲାନାହିଁ·· ଆଉ ହେବାକୁ ଥିଲା ଏହି ଲଜ୍ଜାଜନକ ପରିସ୍ଥିତି ଭିତରେ ?

ଛି—ଛି—ଛି···

ଲଜ୍ଜାଜନକ ? କାନ୍ତୁ କାହିଁକି ନୁହେଁ···କହତ ସୁଜାତା ? ତମେ କହ ନ ? କରି ନ ସମାଲୋଚନା ଅନ୍ୟ ବାନ୍ଧବୀଙ୍କୁ ?

ସୁଜାତା ବିବେକ ନିକଟରେ ମୁଣ୍ଡ ନୁଆଁଇଲା···

ଭୁଲ କରିଥିଲା···ଜାଣି ନଥିଲା ଅନ୍ୟକୁ ବିଗ୍ରର କରି ଆମ୍ଭେ କେତେ ଅବିଗ୍ରର କରୁ । ବିଚିତ୍ର ଏ ଜୀବନ ! ଜୀବନର ପରିଚ୍ଛେଦରେ ଉଦ୍ଭବ ଘଟେ କେଉଁ ଅଜଣା ରହସ୍ୟ ମଧ୍ୟରୁ ତା କିଏ କହିବ ? କାହିଁ ? କେବେ କଣ ଭାବିଥିଲା ସୁଜାତା ଏମିତି ଲଗ୍ନ ଆସିବ ' ମନେହେବ ଅନନ୍ତ କାଳଧରି ଏ ମୁଖ ଦେଖିଲେ ତୃପ୍ତି ଆସିବ ନାହିଁ । ଏ ପଥଲେ ଆଣିବ ନା ଶାନ୍ତି ! ତେବେ ଏ ଦହନ ଏ ଜ୍ୱାଳା ? ଏ କଣ ଗରଳ ? ପ୍ରେମର ଅକ୍ଷୟ ଅମୃତ ଏ ନୁହେଁ ???

ପଗ୍ରରିବ···କାହାକୁ ?

କିଏ ଉତ୍ତର ଦେବ ?

ବାପା···

ଯିଏ ସୁଜାତାର ସୁଖ ପାଇଁ ନିଶ୍ଚିତ ବ୍ୟାକୁଳ ! ପଗ୍ରରିବ ସେହି ବାପାଙ୍କୁ··· କାହିଁକି ମନରେ ଏ ଦୁର୍ବିସହ ଦ୍ୱନ୍ଦ୍ୱ ?

ସେହି ବାପା, ଯିଏ ସୁଜାତା ପାଇଁ କେବଳ ସୁଯୋଗ୍ୟ ପାତ୍ର ଖୋଜୁ ନାହାନ୍ତି, ଖୋଜୁଛନ୍ତି ସୁଜାତାର ମନର ମଣିଷ । ତା ନ ହେଲେ I. A. S. ପାତ୍ର ସୁଟକେଇ···ବାପାଙ୍କର ସେ କେତେ ଭାବନା···କେତେ ଅଙ୍କ କଷା ! ଦେଖିଛୁ

ସୁଜାତା । ସବୁ ସାତ୍ ଆଖିପତାକୁ ତାଙ୍କର ନିଦ ଆସେ ନାହିଁ । ସୁଦୀର୍ଘ ଲନ୍‌ରେ ଦୁଇହାତ ପକେଟରେ ପୂରାଇ ସେ କ୍ରମାଗତ ଘୂର ବୁଲନ୍ତି···ସବୁ ଅଡ଼ନ୍ଦାନ୍ତ ହୁଏ ।

ଘଡ଼ିରେ ଗୋଟାଏ ବାଜେ ।

ବୋଉ ଡାକେ, ଶୋଇବନି କି ?···

ସିଗାରେଟ୍ ଗୋଟିକ ପରେ ଗୋଟିଏ ଜଳିଯାଉଥାଏ···

ସବୁ ଦେଖିଛି ସୁଜାତା । କେମିତି ନ ଦେଖିବ ? ତା ଆଖିକୁ କ'ଣ ନିଦ ନଥାଏ ??

ସବୁ ଠିକ୍ ହୋଇ ସାରିଛି । ତଥାପି···ଦ୍ୱିଧା । ବାପା କହୁଥିଲେ, ତମେ ଜାଣିନା ସତ୍ତା···ତୋପାଇଁ ଠିକେ ନମେ କବି ପ୍ରକୃତିର ଲୋକ ଦରକାର ! ଘଷିଘ୍ୟବ୍ରବଣ ସିଏ । ଆଉ ସୁଦେଷ୍ଣା ? ବୟସ ଅଧିକ ହୋଇଛି । ଚରିତ୍ରରେ ସ୍ଥିରତା ଆସିଛି । ଅତମାନାରେ ସଂସାରୀ, ଗମ୍ଭୀର । ତୋର sentiment ସେ ବୁଝି ପାରିବ ନାହିଁ । ଟିଅ ମୋର ଦୁଃଖ ପାଇବ । ନା··ପଛୁ ସେ । ମାଆକୁ ମୋର ଯାହାକୁ ତାହାକୁ ମୁଁ ଦେଇ ପାରିବି ନାହିଁ । ଯିଏ ତାର ମନ ଚିହ୍ନିବ ସିଏ ଆସୁ···

ଅପେକ୍ଷା କରିବେ ତାର ବାପା···ବାପା ପ୍ରସ୍ତୁତ ସେଥିପାଇଁ । ବିଛଣାରେ ଶୋଇ ଶୋଇ ଧାର ଧାର ଲୁହ ଗଡ଼ି ଯାଉଥିଲା ସୁଜାତା ଆଖିରୁ । କେତେ ଚିହ୍ନିଛନ୍ତି ତାକୁ ତାର ବାପା ! ପାରିବ ଏ ଋଣ ଶୁଝି ସାରା ଜୀବନ ଦେଇ ?

ବାପା ତାର କବି । ଜୀବନରେ ସବୁ ପାଇ ମଧ୍ୟ କିଛି ପାଇ ନାହାନ୍ତି । ସୁଜାତା ଜାଣେ, କେତେ ଶୂନ୍ୟତାକୁ ବୁକୁତଳେ ଚାପି ରଖି ବାପା ତାର ସଂସାର କରନ୍ତି ।

ଗୋଟାଏ ଅତି ସୁକୁମାର କବିପ୍ରାଣକୁ ପବିତ୍ର ଅଧ୍ୟାପନାରୁ ଟାଣି ଆଣିଛନ୍ତି ଅର୍ଥକାମୀ ପିତା । ପୁଅର ଉଜ୍ଜ୍ୱଳ ଭବିଷ୍ୟତର ମୋହ ତାଙ୍କୁ ପାଗଳ କରିଛି । ଧନୋଟି ଅକ୍ଷରରେ ମୋହ । ଏଇ ଧନୋଟି ଅକ୍ଷର ପ୍ରତି ଅଦମ୍ୟ ଲାଳସା ମାଆର । ସ୍ୱଳ୍ପଶିକ୍ଷିତା ମାଆ ବୁଝିନାହିଁ କେବେ ଏଇ ବରେଣ୍ୟ ହୃଦୟବାନ ଲୋକଟାର ଅନ୍ତରର ଗଭୀର କ୍ଷୁଧାକୁ । ବାପାଙ୍କର ଉପବାସୀ ମନର ଅସଲ ରୂପକୁ ନିରେଖି ଦେଖିବାର ଶକ୍ତି ତାର ନାହିଁ । ତା ଦେଖିଛି ରୁକ୍ଷ ଜୀବନର ମଧୁର ସବୁଜ ସ୍ୱପ୍ନର ସ୍ମାରକ··· ତାଙ୍କର ଅପ୍ରକାଶିତ କବିତାବଳୀ । ବାପାଙ୍କ କବିତା । ବୁକୁନିଗିଡ଼ା ଦୁଃଖର ଉଚ୍ଛ୍ୱାସର ପ୍ଳାବନ । ଏଡ଼େ ବଡ଼ ଉଚ୍ଚପଦସ୍ଥ ଗୃହିଣୀ ଭିତରେ ସମାଧି ଲଭିଛି କବିତ୍ୱ । ତଥାପି ଗୃହିଣୀର ମୋହରେ ଅନ୍ଧ ହୋଇ ନାହାନ୍ତି ବାପା । ସିଏ ବୋଲିଦେବ ତାର ଅନ୍ତରରେ ମାଆ ସୁନାକାଠିରେ ମମତାର ଚନ୍ଦନ ଲେହୁତ ଆଖି, ତାର ସ୍ପର୍ଶକାତର

ଖବଦ୍ରବଣ ଅନ୍ତରକୁ ସିକ୍ତ କରିବ ଦ୍ରାଠର ଅଫୁରନ୍ତ ଫଲ୍ଗୁ ଧାରାରେ ତାରି ଅନ୍ୱେଷଣ କରୁଛନ୍ତି ତାର ବାପା !

ତେବେ···

କହିବ ··କହିବ ମୁହଁ ଖୋଲି ସେଇ ମନର ମଣିଷର ସନ୍ଧାନ ମୁଁ ପାଉଛି ବାପା ! ଭରିସିବ ସକଳ ଶୂନ୍ୟତା, ଅପସରି ଯିବ ସକଳ ଗ୍ଲାନି । ତମେ ଯାହା ପାଇ ନାହଁ ମୁଁ ପାଇଛି·· କହିବ ? ବାପାଙ୍କୁ ? ପାଇଛି କ ସୁଜାତା ? ତେବେ ଏ ଗ୍ଲାନି କାହିଁକି ?

କାହିଁକି ଏ ଆତ୍ମଦହନ ? ଭିତରର ଦୁର୍ଦ୍ଦମ ବେଦନା ??? ସର୍ବଗ୍ରାସୀ ପ୍ରେମର ଶକ୍ତି କାହିଁ ?

ପାରିବ—ପାରିବ··· ଅଜସ୍ର ଯନ୍ତ୍ରଣାର ନାଲି ବିଷ ଢାଳି ଦେଇ ପାରିବ ସିଏ ତାର ପରମ ହିତାକାଂକ୍ଷୀ 'ପିତା'ଙ୍କର ଉପବାସୀ ଅନ୍ତରରେ ?? ଉପବାସୀମନ ପାରିବ ଏ ବିଷର ଜ୍ୱାଳା ସହ୍ୟକରି ? ବହୁ ଯତ୍ନନିର୍ମିତ ଦମ୍ଭ ଅଭିମାନ, ଆଭିଜାତ୍ୟର ଏ ବିରାଟ ଅଟ୍ଟାଳିକା ତାସଘର ପରି ନିମିଷକରେ ଭୁଷୁଡ଼ି ପଡ଼ିବ ଯେ—ଏ ବିବାହକୁ ମାନିବ ସମାଜ ? ଏତେ ନିଷ୍ଠୁର ହୋଇପାରିବ ସୁଜାତା ?

ପାରିବ ତାର ପରମ ପ୍ରେମମୟ ପିତାଙ୍କ ପ୍ରତି ଏ ଘୋର ଅବିଗ୍ରହ କରି ??

କିନ୍ତୁ···

କିନ୍ତୁ·· ଏପଟେ ଗୋଟାଏ ସୁଶ୍ରୀ ଚପଳ ଧବଦ୍ରବଣ ମୁଖ, ଶିଶୁସମ ସୁଗଠିତ ସୁକୋମଳ ଅଧର, ଉଜ୍ଜ୍ୱଳ ଗଭୀର ଦୁଇଟି ଆଖି । ଆଉ ଅଧ ସୁନ୍ଦର ହସର ଅଫୁରନ୍ତ ତରଙ୍ଗ···ହାତଠାରି ଡାକୁଛି ବାରମ୍ବାର·· ସୁଜାତାର ଆଖିରେ ପ୍ରତିଫଳିତ ହେଉଛି ସେହି ପ୍ରତିବିମ୍ବ ··

× × ×

ସେ ପୁଣି ବୁଲିବାକୁ ଲାଗିଲା ··ବଟାନିକାଲ ଗାର୍ଡେନ୍, ଶୁଣି ଲାଇବ୍ରେରୀ ସାଇକୋଲୋଜି ଥିଏଟର୍ ଯାଏ···

ହଁ—ଏଇ ବୁଲିବା ଭଲ । ଏଇ ବୁଲିବା ଦ୍ୱାରହିଁ ସଂଗ୍ରହ କରିହେବ ଅଜସ୍ର ବଞ୍ଚିବାର ମୋହ ! ମୁଠା ମୁଠା ସୁଖ । ଚଲାପଥର ପାଥେୟ···

× × ×

ତେବେ କଣ କ୍ଳାନ୍ତ·· ଚଲାପଥର କ୍ଳାନ୍ତ । ସେଇ କ୍ଳାନ୍ତରେ ଏକାନ୍ତ ଅବଶ ହୋଇ ସାମ୍ନାରେ ଚଳିପଡେ ସେ ଆଶ୍ରୟ ନେଲା । ନିଷ୍ପାପ ଆଶ୍ରୟ ।

•

ସୁହାଗର ସିନ୍ଦୁରକୁ ଗ୍ରହି ନିଜକୁ ଧନ୍ୟ କଲା ସୁଜାତା । ନବୋଢ଼ା ଘର । ତା ସ୍ୱାମୀର ଘର ।

ହଁ—ନିରାପଦ । ଆଉ କେହି ଟିପ୍ପଣୀ ଦେବେ ନାହିଁ ···

ସରୀସୃପ ପରି କୁତ୍ସିତ ଲକ୍ ଲକ୍ ଜିହ୍ୱାଗୁଡ଼ାକ ବୁଢ଼ି ଆଣି ଜାଲ ପରି ଆଉ ଆବର୍ତ୍ତ ସୃଷ୍ଟି କରିବେ ନାହିଁ ତାର ଚାରିପାଖରେ···ସଂସାରର ଲୁହା ଶିକୁଳି ଆଉ ବିବେକକୁ ଛନ୍ଦି ଓଟାରି ଧରିବ ନାହିଁ । କାରଣ ସମାଜ ସ୍ୱୀକୃତି ଦେଇଛି । ପୂଜ୍ୟ ପିତା ପସନ୍ଦ କରିଛନ୍ତି । ଶୈଶବର ନିରାପଦ ଆଶ୍ରୟ । ଏଥର ବଞ୍ଚିବ ଜୀବନ ନିରାପଦରେ । କହିବାକୁ ହେବ କେତୋଟି ଧରାବନ୍ଧା କଥା । ହସିବାକୁ ହେବ ମାପି ଚୁପି ପ୍ଲାଷ୍ଟିକ୍ ହସ । ଠିକ୍ ପ୍ଲାଷ୍ଟିକ୍ ରଜନୀଗନ୍ଧା ଫୁଲପରି ନିଜକୁ ସଜେଇ ଅପରର ମନୋରଞ୍ଜନ କରିବାକୁ ହେବ । ଭିତରର ଆହତ ମେଣ୍ଢାଶିଶୁର କୁଁ କୁଁ କାନ୍ଦଣା, ହଜିଯିବ ବାହାରର ଆଡ଼ମ୍ବର ଉଚ୍ଛ୍ୱାସର କୁହାଟରେ । ଅଭିନୟ କ୍ରମଶଃ ଅଭ୍ୟାସରେ ପରିଣତ ହେବ । ଜୀବନର ଅଗଣାରେ ଓହ୍ଲାଇ ଆସିବ ଅପରାହ୍ନ, ହଠାତ୍ ଆଲୁଅର ଝଲକପରି । ସେହି ଅଭ୍ୟାସଗତ ଜୀବନରେ କିନ୍ତୁ ଛପି ପାରିବନି ସେ ଅମ୍ଳାନ ଅଧ୍ୟାୟ··· ପାରିବ କି ?

ସୁଜାତା ଆଖି ପୋଛିଲା ।

ସେ ଅବରୁଦ୍ଧ ନିଷିଦ୍ଧ କୋଠରୀର ଦ୍ୱାର ଉନ୍ମୁକ୍ତ ହୋଇଥିବ ଏମିତି ନବୋଢ଼ାରେ, ଜୀବନରେ । ତା ପରେ ବନ୍ଦ ଘରର କବାଟ !

ଥାଉ ଥାଉ ସେ ବନ୍ଦ ହୋଇ ।

ଅନେକ କୋଠରୀ ଏ ହୃଦୟରେ । କିନ୍ତୁ ସେହି କୋଠରୀରେ ଅବରୁଦ୍ଧ ସେହିଦିନର ସ୍ମୃତି ଟିକକ ହୃଦୟର ଅତି ନିଭୃତ ଅଂଶକୁ ମହକିତ କରୁଥିବ—ସେ ସୁଜାତାର ଏକାନ୍ତ ନିଜସ୍ୱ ।

ଜୀବନର ଅଗଣାରେ ପ୍ରଥମ ପୁରୁଷର ପଦକ୍ଷେପ···କେମିତି ଭୁଲିବ ସିଏ ! କିନ୍ତୁ···

ପୁଣି ସ୍ୱପ୍ନ ଦେଖିବ ସିଏ, ତାର ବାପାଙ୍କ ପରି । ନିଜ ଜୀବନର ଅପୂର୍ଣ୍ଣ ଅଭିଳାଷ ପୂର୍ଣ୍ଣତା ଲଭ କରୁ ସନ୍ତାନର ଜୀବନରେ । ତଥାପି ଭୀରୁ··· ସେ ବି··· ବାପାଙ୍କ ପରି··· ଲଙ୍ଘି ପାରିବନି ସେ ସମାଜକୁ··· ପୁଣି ଚାଲିବ ପୁନରାବୃତ୍ତି, ବିୟୋଗାନ୍ତ ନାଟକର ଯବନିକା ପଡ଼ିବ ନାହିଁ । ଘୂରି ଚାଲିବ ଚକ ଘର୍ଘର ନାଦରେ । ଆଉ ଶୁଣାଯିବ ନାହିଁ ମର୍ମ ତଳର ଅଫୁରନ୍ତ ବାହୁନା···



## ● ପ୍ରଚ୍ଛଦ ପଞ୍ଚ

ଅନେକ ଦିନ ହେଲା ପ୍ରସ୍ତୁତି ଚାଲିଛି···

ଏକ ଆଶ୍ଚର୍ଯ୍ୟ, ସୁନ୍ଦର ମହାନ୍ ଆବିର୍ଭାବ ପାଇଁ ଚମତ୍କାର ଏକ ପ୍ରସ୍ତୁତି··· ଶ୍ରେଷ୍ଠ ଘରଟିର ଚାରିଆଡ଼େ ସେହି ପ୍ରସ୍ତୁତିର ସମାରୋହ ! ଆଉ ତାର ଲୋଭନୀୟ ସୁଗନ୍ଧ···ସଦାନନ୍ଦ ବେଶ୍ ଆନନ୍ଦ ଅନୁଭବ କଲେ । ଚୁଲିପଡ଼ି ଦରି ଆଉଜା କବାଟଟା ମେଲେଇ ଦେଇ ପଚାରିଲେ—

"ତମର କଣ ସରିନି, ଲକ୍ଷ୍ମୀ ? ଜବାପେ ଚାଲିଗଲିଣି !"···

ନା, ଲକ୍ଷ୍ମୀଙ୍କର ସରିନାହିଁ···

ଆଶ୍ଚର୍ଯ୍ୟ···

ଲକ୍ଷ୍ମୀ ଜାଣିବି ପାରୁନାହାନ୍ତି, ଏଇ କେତେ ଦିନ ହେଲା ସଦାନନ୍ଦ କେତେବେଳେ ଖାଇ ସ୍କୁଲକୁ ଯାଉଛନ୍ତି, ଜବାମଣ୍ଟି ବି କେତେବେଳେ କଲେଜ ଯାଉଛି । ଜୀବନର ପ୍ରଥମ ଥର ପାଇଁ ନିୟମର ବ୍ୟତିକ୍ରମ କରି ଲକ୍ଷ୍ମୀ ଜବା କଥା ବୁଝୁନାହାନ୍ତି ।

ଅଥଚ···

ଏଇ କୋଡ଼ିଏ ବର୍ଷ ଭିତରେ ଏମିତି ବୋଧହୁଏ ଗୋଟିଏ ଦିନ ନଥିଲା, ଯେଉଁ ଦିନ ଲକ୍ଷ୍ମୀ ଜବାକୁ ପାଖରେ ବସାଇ ଖୁଆଉ ନଥିଲେ । ଏଇ ଦୀର୍ଘ କୋଡ଼ିଏ ବର୍ଷ ଗୋଟିଏ ନିର୍ଦ୍ଦିଷ୍ଟ ବିନ୍ଦୁକୁ କେନ୍ଦ୍ର କରି କ୍ରମାଗତ ଘୂରୁଛନ୍ତି ଲକ୍ଷ୍ମୀ । ଗୋଟିଏ ନିଶାରେ ଘୂରି ଚାଲିଛନ୍ତି । ବୃତ୍ତର ପରିସର କ୍ରମଶଃ ଦୀର୍ଘତର ହୋଇଛି ।

କେବେ ଅଲକ୍ଷ୍ୟରେ କେନ୍ଦ୍ର ବିନ୍ଦୁରୁ ସଦାନନ୍ଦ ଦୂରକୁ ଅପସରି ଯାଇଛନ୍ତି, ସେ ଖବର ମଧ୍ୟ ଜାଣି ପାରି ନାହାନ୍ତି ଲକ୍ଷ୍ମୀ ···

ଆଉ ଜବା ? ସେ ଯେ ଲକ୍ଷ୍ମୀଙ୍କର ପ୍ରାଣ ;

ଅନୁକ୍ଷଣ ଗୋଟିଏ ଚିନ୍ତା···ଜବା ଏଯାଏଁ ଖାଇନି ଯେ···ଜବାର ଅଙ୍କ ବହୁତ ଭଲ । ବିଜ୍ଞାନରେ ଅଧିକ ରୁଚି । ସେ ସାଇନ୍ସ ପଢ଼ିବ ··ନିଶ୍ଚୟ ପଢ଼ିବ ।

ନା-ନା-ମୋ ମାଆକୁ ମୁଁ ଆବାଲ୍ୟରୁ ଶିକ୍ଷା ଦେଇଛି, ସବୁ ଧର୍ମଶାସ୍ତ୍ର ପଢ଼ାଇଛି । ପରମେଶ୍ୱରରେ ତାରି ଘୋର ବିଶ୍ୱାସ । ମୁଁ ତାକୁ ପରୀକ୍ଷା କରିବାକୁ ଚାହେଁ । ଶିଳା ବନ୍ଧୁର ପଥରେ ନିର୍ମଳ ସ୍ୱଚ୍ଛ ତଟିନୀ ପରି ସେ ଯଦି ବହି ନ ପାରିଲା, ତେବେ ସେ ଶିକ୍ଷାର ସାର୍ଥକତା କେଉଁଠି ? ସହଶିକ୍ଷାର ବିଷମୟ ଫଳ ?

ଜବାମୟୀଙ୍କୁ ଲକ୍ଷ୍ମୀ ଚହ୍ନିଛନ୍ତି—ଅସମ୍ଭବ ।

ଜବା ଡାକ୍ତରୀ ପଢ଼ିବ । ·· ହଁ, ନିଶ୍ଚୟ ପଢ଼ିବ ।

"ତମେ ମନା କରନା । ଜବା ଡାକ୍ତରୀ ପଢ଼ିବ, ସେ ଠିକ୍ ପାରିବ ।"

ଉହୁଁ···ବାହାଘର? ଏତେ ଶୀଘ୍ର ? ମୋ ଜୀବନରେ ଅବଶୋଷ ରହିଯାଇଛୁ, ମୁଁ ଅଶିକ୍ଷିତା, ମୁଁ ଅପୂର୍ଣ୍ଣା । ଅବଶ୍ୟ ଖାଲି ଶିକ୍ଷା ଦୃଷ୍ଟିରୁ କହୁଛୁ, ଏମିତି କହିଲେ ମୁଁ ନର୍କରେ ପଡ଼ିବ ।

ତମେ ମୋ ଜୀବନକୁ ପୂର୍ଣ୍ଣତାରେ ଭରି ଦେଇଛ । ଏ ମୋର ପରମ ପ୍ରାପ୍ତି, ଯାହା ମୁଁ ବିଦ୍ୟା ଶିଖିଛୁ ସେ ତୁମଠୁ କେବଳ···

କିନ୍ତୁ···

ଜବା ଯଦି ତା ମନର ମଣିଷ ନ ପାଏ ?

ଜବା ଯଦି ବିବାହ ପରେ ପଢ଼ିବାର ସୁଯୋଗ ନ ପାଏ ?

ନା-ନା ସେ ପଢ଼ିବ । ମନ ଖୋଲି ବାରମ୍ବାର ଏକଥା କହୁଛନ୍ତି ଲକ୍ଷ୍ମୀ ତାଙ୍କର ସ୍ୱାମୀ ସଦାନନ୍ଦଙ୍କୁ ।

ଏମିତି ଦିନେ ନୁହଁ, କୋଡ଼ିଏ ବର୍ଷ ।

ଉହୁଁ—କୋଡ଼ିଏ ବର୍ଷ କାହିଁକି ଆହୁରି ଅଧିକ ହେଲାଣି ବୋଧେ । ଲକ୍ଷ୍ମୀଙ୍କର ସାଧନା ବିଫଳ ହୋଇ ନାହିଁ । ଜବାମୟୀ ଡାକ୍ତରୀ ପାସ୍ କଲା···

ଲକ୍ଷ୍ମୀଙ୍କର ମାନସ ସନ୍ତାନ ତ ଶୀଳଭଦ୍ର; ଯାହାକୁ ସେ ଜବାମୟୀ ପାଇଁ ବାଛିଛନ୍ତି । ସେ ହୋଇଛନ୍ତି ତୃପ୍ତ···

ଶୀଳଭଦ୍ର ସଚ୍ଚରିତ୍ର, ପ୍ରିୟଦର୍ଶନ ଆଉ ସବୁଠାରୁ ଅଧିକ ବିଶେଷତ୍ୱ ତା'ର ଯେ ସେ ପରମ ଈଶ୍ୱର ଭକ୍ତ । ସଂସ୍କୃତି ଓ ସଦ୍ଧର୍ମ ପ୍ରତି ତା'ର ଶ୍ରଦ୍ଧାର ଅନ୍ତ ନାହିଁ । ସେ ଅଧ୍ୟାପକ । ପ୍ରାଚୀନ ଓ ନୂତନକୁ ସମଭାବରେ ଗ୍ରହଣ କରିବାରେ ନିଷ୍ଠା ତାର ଅଖଣ୍ଡ ।

ଲକ୍ଷ୍ମୀ ତ ଏଇଆ ଚାହୁଁଥିଲେ । ଜବାକୁ ସେ ଏଭଳି ଶିକ୍ଷା ଦେଇଛନ୍ତି । ଜବାମୟୀ ଶୀଳଭଦ୍ରକୁ ପାଇ ନିଶ୍ଚୟ ସୁଖୀ ହେବ···

ଅତି ପ୍ରତ୍ୟୁଷରୁ ସ୍ନାନସାରି ମଠାପିନ୍ଧି ଜବାମୟୀ ଯେତେବେଳେ ଚନ୍ଦନ ଘୋରି ବସେ, ସଂସ୍କୃତ ଶିକ୍ଷକ ସଦାନନ୍ଦଙ୍କ ପ୍ରାଣ ଭରିଉଠେ । ଠାକୁରଘର ଚଟାଣରେ ଜବାମୟୀର ନିପୁଣ ହାତର ଚିହ୍ନ, ଅପରୂପ ଚିତା ।

ଅପୂର୍ବସୁନ୍ଦର ଚନ୍ଦନ, ଧୂପକାଠିର ଗନ୍ଧ; ଦେବୀ ଆରାଧନା ନିମନ୍ତେ ଭରିଉଠେ ଚିତ୍ତରେ ଅଫୁରନ୍ତ ଅନୁରାଗ । ସବୁଠାରେ ଜବାମୟୀର କୁଶଳୀ ହାତର ସୂକ୍ଷ୍ମ ସ୍ୱାକ୍ଷର । ସଦାନନ୍ଦଙ୍କର ମନେହୁଏ ଜବାମୟୀ ତାର ନାମର ସାର୍ଥକତା ।

କେବେ କେବେ ଅଜଣା ମୁହୂର୍ତ୍ତରେ ଲକ୍ଷ୍ମୀ ତାଙ୍କର ଏଇ ଅତି ପ୍ରିୟ କାର୍ଯ୍ୟାବଳୀରୁ ଅବସର ନେଇଛନ୍ତି ଆଉ ତାଙ୍କର ସ୍ଥାନ ପୂରଣ କରିଛି ଜବାମଞ୍ଜରୀ; ଜାଣି ମଧ ଜାଣି ପାରିନାହାନ୍ତି ସଦାନନ୍ଦ ।

ସୁପରିଚିତ ପରିଚ୍ଛନ୍ନ ଠାକୁର ଘର ଭିତରକୁ ପଶିଯାଇ ଅଭ୍ୟାସବଶତଃ ଏବେ ଡାକ ଦିଅନ୍ତି ସଦାନନ୍ଦ···"ଜବା···ଚନ୍ଦନ ଘୋରିଛୁ ?"

"ଜବା···ମାଆ, ଭୋଗ ଆଣି ଦେ ତ !"

କିନ୍ତୁ···

ଆଉ ବୋଧେ ବେଶୀ ଦିନ ଏମିତି ଡାକ ପାରିବେନି ସେ । ଜବାମଞ୍ଜରୀ ଜୀବନର ମହାନ୍ ଲଗ୍ନ ସମାଗତ । ତାର ଆୟୋଜନରେ ଲାଗିଛନ୍ତି ଲକ୍ଷ୍ମୀ । ନିଜକୁ ସମ୍ପୂର୍ଣ୍ଣ ଭାବରେ ହଜାଇ ଦେଇଛନ୍ତି । ଦେବୀ ପୂଜାର ଆୟୋଜନର ଆନନ୍ଦ ଯେ ଅପରିସୀମ ! କିନ୍ତୁ···ଦେବୀ ବିସର୍ଜନର ଦୃଶ୍ୟ ସହ୍ୟ କରି ପାରିବେ ତ ଲକ୍ଷ୍ମୀ ?

ପାରିବେ ସହି ଜବାର ବିଚ୍ଛେଦ ??

ଆଉ ସଦାନନ୍ଦ ନିଜେ ???

ନିଜ ମନକୁ ବୁଝାଇଲେ ସଦାନନ୍ଦ । କାହିଁକି···ବିସର୍ଜନ କାହିଁକି ? ଗୋଟିଏ ଝିଅ ଥିଲା ଜବାମଞ୍ଜରୀ । ଘରକୁ ପୁଅ ଆସିବ, ଶୀଳଭଦ୍ର । ଏ କେତେ ବାଟ ଅବା ସମ୍ବଲପୁରରୁ ବୁର୍ଲା ? ଏମାନେ ନିତି ଆସିବେ । ତାଙ୍କ ଶ୍ରେଷ୍ଠ ସଂସାରକୁ ମୁଖରିତ କରିବେ ସେମାନେ, ଶୀଳଭଦ୍ର ଓ ଜବା ।

ଆଉ ଲେଡ଼ି ଡାକ୍ତରାଣୀ ଜବା କ'ଣ ତାଙ୍କ ନବ ଜୀବନର ସ୍ମାରକ ଲାଲ ଟୁକୁଟୁକୁ ଶିଶୁଟିକୁ ବୃଦ୍ଧ ପିତାମାତାଙ୍କୁ ଉପହାର ଦେବ ନାହିଁ ?? ଏ ଘର ଭରି ଉଠିବ ଶିଶୁର ହସରେ । ସଦାନନ୍ଦ ଓ ଲକ୍ଷ୍ମୀଙ୍କ ଶୂନ୍ୟ ଅଗଣା ଭରିଯିବ ଉଲ୍ଲାସରେ !

ତେବେ···???

ସଦାନନ୍ଦ ମନକୁ ମନ ହସିଲେ ।

ବାଃ···ଏଇଟା ସଂକ୍ରାମକ ରୋଗ ନା କଣ ? ଲକ୍ଷ୍ମୀଙ୍କ ପରି ସେ ବି ତ ବେଶ୍ ଭବିଷ୍ୟତ କଳ୍ପନା କରି ପାରୁଛନ୍ତି ?

ସଦାନନ୍ଦ ଲକ୍ଷ୍ମୀଙ୍କୁ ଖୋଜିଲେ ନିବଷ୍ଟ ଭାବରେ···

ଲକ୍ଷ୍ମୀ ଶ୍ରେଷ୍ଠିଆ ହାତପେଡ଼ିରେ କାଠଖେଳଣା ଓ ଫଳୁଆଳୁଡ଼ିକ ପୁରାଉଛନ୍ତି ।

ହସ ହସ ମୁଖରେ ସଦାନନ୍ଦ ପଚାରିଲେ, "କଣ ଏଗୁଡ଼ାକ ବ ଝିଅ ସାଙ୍ଗରେ ଦିଆଯିବ ? ଜବାର ପିଲା ହେଲେ ଖେଳିବେ, କ'ଣ ଏଇ କଥା ବିଚାରି ଦେଉଛ କି ?"

ଲକ୍ଷ୍ମୀ ଉତ୍ତର ଦେଲେ, "ଏଗୁଡ଼ାକ ବାଧ୍ୟ ପରା । ଆମ ଘରେ ଝିଅ ସାଙ୍ଗରେ ଏମିତି ସବୁ ଦିଆଯାଏ । କୋଡ଼ିଏ ବର୍ଷ ହେଲା ଗାଁ ଛାଡ଼ି ଆସିଲଣି । କ'ଣ ସବୁ-ଗୁଡ଼ାକ ମନେ ଅଛି ? ହେଲେ କିଛି ଯେମିତି ଊଣା ନ ହୁଏ । ଜବାକୁ ମୋର ଶାଶୁଘରେ କିଏ ବାଛି ଦେଲେ ସେ ସହି ପାରିବନି ! ଭାରି ଅଭିମାନିନୀ ସେ !!"

—"ସେଇଥିପାଇଁ ତ ମୁଁ କହୁଥିଲି ଦିଲ୍ଲୀରେ ବାହାଘର କରିବା । ଏଠି ତମକୁ ସାହାଯ୍ୟ କରିବାକୁ କେହି ନାହିଁ । କେତେ ଏକା କରିବ ?"

ଲକ୍ଷ୍ମୀ ବାଧା ଦେଇ ଉଠିଲେ, "ନା—ନା—ନା ଏଇଠି ସେ ବଢ଼ିଛି, ଏଇଠି ତା କଲେଜ ପିଲେ, ଅଧ୍ୟାପକ ସମସ୍ତେ ଅଛନ୍ତି । ଏଇଘରେ ସେ ପିଲାଟି ଦିନରୁ ମଣିଷ ହୋଇ ଆସିଛି, ମୋର କିଛି ଅସୁବିଧା ହେବନି । ମୁଁ ସବୁ କରି ପାରିଲିଣି, ଏ କରିବାରେ ମୋର ଯେ କେତେ ଆନନ୍ଦ ତମେ କଣ ଜାଣିନ ?"

"ହଉ ହଉ, ଏବେ ଖିଆ ପିଆ କର । ମୁଁ ଆସେ", ସଚେତ ସବୁ କରି ସାରିଛନ୍ତି ଲକ୍ଷ୍ମୀ ।

ନାଲି କାଳିରେ ଥାକ ଥାକ ଚିଠି ମଧ୍ୟ ଲେଖି ସାରିଲେଣି ।
ନାଲି କନାମୁଣିରେ ଜିନିଷ ଗୁଡ଼ିକ ପୂରାଇ ସାରିଛନ୍ତି...
ଜବାର ବାହାଘର...
ସଦାନନ୍ଦ ଲକ୍ଷ୍ମୀଙ୍କର ସବୁ କଥା ମାନି ନେଇଛନ୍ତି...

ଜବା ଯେ ଲକ୍ଷ୍ମୀଙ୍କ ଜୀବନରେ କେତେ ବଡ଼ ପ୍ରାପ୍ତି, ସେ କଥା ସଦାନନ୍ଦ ଠାରୁ କଣ ଆଉ କିଏ ବେଶୀ ଜାଣେ ?

କିନ୍ତୁ...

ଆଚ୍ଛା, ଜବାମୟୀ କ'ଣ ଏଇ ଆନନ୍ଦ ଭିତରେ ନିଜକୁ ହଜେଇ ଦେଇ ପାରିଛି ?

ଶାନ୍ତ, ସ୍ୱଳ୍ପଭାଷିଣୀ ଜବାମୟୀକୁ ଚିହ୍ନି ମଧ୍ୟ ଚିହ୍ନିପାରି ନାହାନ୍ତି ସଦାନନ୍ଦ । ସେ ଅନ୍ତଃସଲିଳା ଫଲ୍‌ଗୁ । ତାହାରେ ତରଙ୍ଗ ନାହିଁ, ଉଚ୍ଛ୍ୱାସ ନାହିଁ ଗୋଟାଏ ନିବିଡ଼ ପ୍ରଶାନ୍ତିର ପ୍ରଲେପ...

ନାହିଁ ପାଖରେ ବସାଇ ତ ପଚାରିଲେ ନାହିଁ ସଦାନନ୍ଦ, "ତୋ ମନ କଥା ଖୋଲି କହ ମାଆ ! ତୁ ସୁଖୀ ତ ?"

ନା—ଦରକାର ନଥିଲା ! ଲକ୍ଷ୍ମୀଙ୍କଠାରୁ କ'ଣ ଅଧିକ କିଏ ଚିହ୍ନିଛି ଜବାର ମନକୁ ? ଏଇ ଜବାର ମନ ଜାଣି ଜୀବନ ସାଥୀଟିଏ ଖୋଜିବା ପାଇଁ ଲକ୍ଷ୍ମୀ ତ କମ୍ ଚେଷ୍ଟା କରି ନାହାନ୍ତି !

ଆଉ ଶୀଲଭଦ୍ର···

ସେ ତ ଦେବତାଙ୍କ ଆଶୀର୍ବାଦ ।

ସଦାନନ୍ଦ ତୃପ୍ତିରେ ଗୋଡ଼ ବଢ଼େଇଲେ କର୍ମକ୍ଷେତ୍ରକୁ ।

ନିମନ୍ତ୍ରଣ କାର୍ଡ଼ ଛପା ହେବ । ତାଙ୍କର ବି ବହୁତ କର୍ତ୍ତବ୍ୟ ରହିଛି, କାର୍ଡ଼ଟା ଜବା ପସନ୍ଦ କରି ଆଣିଥିଲେ ବୋଧହୁଏ ଭଲ ହୋଇଥାନ୍ତା ।

ସଦାନନ୍ଦ ବାହାରି ପଡ଼ିଲେ । ମନରେ ଅସରନ୍ତି ଭାବନା ।

କହିବେ କି ଆଜି ଜବାମଣିକୁ ?

( ନିଜ କାମରେ ଏତେ ଯେ ବୁଡ଼ି ରହିଛନ୍ତି ଲକ୍ଷ୍ମୀ ଜାଣି ବି ପାରୁନାହାନ୍ତି କେତେବେଳେ ନାଲି ଟକ ଟକ ସୂର୍ଯ୍ୟଦେବ ମହାନଦୀର ପଛପଟେ ଲୁଚି ଗଲେଣି, କେତେବେଳେ ଅପରାହ୍ନର ମ୍ଳାନ ଛାଇ ମାଡ଼ି ଆସିଲାଣି, ଗୃହିଣୀ ଆସି କାମ ସାରି ଚାଲିଗଲାଣି··· ସଞ୍ଜ ଦେଇ ଆସି ପୁଣି ତାଲିକା କରିବାରେ ଲାଗିଗଲେ ଲକ୍ଷ୍ମୀ । ଆଙ୍ଗୁଠିରେ ମଧ୍ୟ ଗଣି ହେବ ଆଉ କେତେଟା ଦିନ ବାକି । )

"ମୋ ମାଆଟା ଏ ଯାଏ ଆସିଲାନି ଯେ !" ଲକ୍ଷ୍ମୀ ଉଦ୍‌ବିଗ୍ନ ହେଲେ । ପୁଣି ମନକୁ ମନ ହସିଲେ, ସାଙ୍ଗମାନେ ହୁଏତ ଖାଇବାକୁ ଡାକୁଥିବେ । ଛାତ୍ରୀ ଜୀବନ, ମୁକ୍ତ ଜୀବନ···ସରିଆସିଲା ଯେ !

ସନ୍ଧ୍ୟାର ଅନ୍ଧକାରରେ ଘରକୁ ଫେରିଲେ ସଦାନନ୍ଦ···ଅନେକ ଜିନିଷ ଆଣିଛନ୍ତି, ଦୁଆର ବାହାରୁ ଡାକ ଦେଲେ , ଜବା···ଜବା, ମା-ଆ ଜବା···

ବ୍ୟସ୍ତ ହୋଇ ଲକ୍ଷ୍ମୀ ଉତ୍ତର ଦେଲେ, " ଏ ଯାଏଁ କାହିଁକି ଫେରିନି ? ମୁଁ ଲୋକ ପଠେଇଛି ଦେଖି ଆସିବାକୁ !"

ଜବାବିହୀନ ଘର ଏମିତି ଲାଗିବ ଆଉ କେତେଟା ଦିନ ଗଲେ···

ଏମିତି ଶୂନ୍ୟ···ମହାଶୂନ୍ୟ···

ଆହା, ଜବାର ଅନୁପସ୍ଥିତି କେତେ କରୁଣ ! ଅଜଣା ଶୋକରେ ଅନୁଭବ କଲେ ସଦାନନ୍ଦ ଛାତିଭିତରେ ଟିକିଏ ଯନ୍ତ୍ରଣା, ଆରାମ ଚେୟାରରେ ଶୋଇ ରହି ଆଖିବୁଜି ଉଦ୍‌ଗତ କୋହକୁ ରୋଧ କଲେ ସଦାନନ୍ଦ, ଜବାକୁ ଛାଡ଼ି ସେ ରହି ପାରିବେତ ???

ଫାଟି ଫାଟି ପଡ଼ୁଛି ଲକ୍ଷ୍ମୀଙ୍କର ହୃଦ । ଅସୁମାରି ସ୍ମୃତି ଘର୍ଗରର ବନ୍ୟାପରି ମାଡ଼ିଆସି ତଣ୍ଟି ପାଖେ ଅଟକି ଯାଉଛି···ପିଲଟି ଦିନରୁ ଆଜିଯାଏ ପେଡ଼ିଯାଇଥିବା ଥାକ ଥାକ ଅଭୁଲ ସ୍ମୃତି ହୃତ୍ପିଣ୍ଡରେ ଧକ୍କା ଦେଉଛି···

"ଜବା ଫେରିଲାନି ଯେ !!!"

× × ×

ସେଇ ବନ୍ଦଘରର କବାଟଟା; ଯେଉଁଠି ସବୁ ଯୌତୁକ ସାମଗ୍ରୀ ଥୁଆହୋଇଛି, ହଠାତ୍ ପୂରା ମେଲ ହୋଇ ଯାଉଛି···

ଆଉ ଦୁଇହାତରେ ଖଣ୍ଡେ ସାଦା କାଗଜ ଚାପି ଧରି ସଦାନନ୍ଦଙ୍କ ପାଦତଳେ ମଥା ଖୁବ୍ ଜୋରରେ ପିଟୁଛନ୍ତି ଲକ୍ଷ୍ମୀ···ଝରିଯାଉଛି ରକ୍ତଧାର ।

ସଦାନନ୍ଦ ନିର୍ବାକ, ପାଷାଣ ! ଅସହ୍ୟ ଯନ୍ତ୍ରଣାରେ । ମାଡ଼ିଆସୁଛି ଘର୍ଗରର ବନ୍ୟାଜଳ ··

ସେ ଦୁହାର ଅଶ୍ରୁର ପ୍ଲାବନରେ ଭାସି ଯାଉଛି ସଦାନନ୍ଦର ରୁକ୍ଷ ପଦଯୁଗଳ···ମରଣାହତ ହୃଦତର ସେ ପାଣ୍ଡୁର ରୂପ କି କରୁଣ ??? କି ବିଭତ୍ସ ସେ ଦୃଶ୍ୟାବଳୀ !

ଶରବିଦ୍ଧ ପଶୁପରି ଅବ୍ୟକ୍ତ ଯନ୍ତ୍ରଣାରେ ଭାଜି ପାଜି ପଡ଼ୁଛି ଲକ୍ଷ୍ମୀର ସମଗ୍ର ଶରୀର । ଯନ୍ତ୍ରଣାବିକୃତ କଣ୍ଠରୁ ଶୁଭୁଛି ଖାଲି ପଦଏ କଥା···"ମୋତେ କ୍ଷମାକର, ତମେ ମୋତେ କ୍ଷମାକର ! ମୁଁ ଦାୟୀ, ମୁଁ ଦାୟୀ !"

ସଦାନନ୍ଦ କଣ ନିର୍ବାକ୍ ?

କଣ ସ୍ଥାଣୁ ?

କଣ ସମ୍ବିତ୍ହୀନ ପାଷାଣ ? ତେବେ ? ତେବେ ? ତେବେ ?

ଘୂରିଗଲା···ଘୂରିଲେ ଚକ ଦ୍ରୁତବେଗରେ । ଅଜ୍ଞାତ-ଅମ୍ଳାନ ଅତୀତ ।

ଏଇମିତି ଆଉ ଗୋଟାଏ ବର୍ଷାମୁଖର ବିଭତ୍ସ ରାତି !

ବାହାରେ ଖାଲି ନଡ଼ିଆ ପତ୍ରର ସାଇଁ ସାଇଁ ଶବ୍ଦ । ଖସି ପଡ଼ୁଥିବା ବର୍ଦ୍ଧାର ଆର୍ତ୍ତନାଦ ।

ବାଇଶ ବର୍ଷ ତଳର ଘଟଣା···

ଆଶ୍ଚର୍ଯ୍ୟ !!!

ପୋଲଙ୍ଗ ଦୀପର ମୃଦୁ ଆଲୋକରେ ସଦାନନ୍ଦଙ୍କର ପଦଯୁଗଳେ ଧରି ଭାଜି ପଡ଼ିଥିଲ ଲକ୍ଷ୍ମୀ ଅଶ୍ରୁର ପ୍ଲାବନରେ । ଦ୍ରବିଲ ସେ ପ୍ଲାବନ ।

"ମୋତେ କ୍ଷମା କର·· ମୋତେ କ୍ଷମାକର ।"

ମାଟିକାନ୍ଥର କଳା ଭିତର ଦେଇ ଅନେକ ଥର ଦେଖିଥିଲେ ସେମାନେ— ସଦାନନ୍ଦ ଓ ଲକ୍ଷ୍ମୀ ସେଇ ବିଭତ୍ସ ଦୃଶ୍ୟ !

ବୃଦ୍ଧ ମିଶ୍ରେ ଚାପା ଗର୍ଜନରେ ଫାଟି ପଡ଼ୁଛନ୍ତି,

ପୁତ୍ରୀ ବଧୂଟିର ଯନ୍ତ୍ରଣାବିକୃତ କଣ୍ଠରୁ ଖାଲି ଭାସି ଆସୁଛି ଗଁ ଗଁ ଅନୁଚ୍ଚାରିତ ଶବ୍ଦ...

—"ଦେ ଲୁଣ ବଣ୍ଡାଟା ତୋଟିରେ ଥୋଇ ଦେଇ ଗୋଇଠିଟା ବୁଲେଇ ଦେ...

ଘୁଞ୍ଚି ଯାଉ ଘୁଞ୍ଚି ଯାଉ ଏ ପାପଚକ୍ର !"

—"ତୁ ମରୁ ଅଲକ୍ଷଣୀ । ପୁଆଣୀର ଛଅମାସ ନ ହେଉଣୁ ଏ ପାପ ପସରା' କାହାକୁ ମୁହଁ ଦେଖାଇବ ?"

ଗୋଟାଏ ଯନ୍ତ୍ରଣାବିକୃତ କରୁଣ ସ୍ୱର...ଅସହାୟ,
ମୁଁ ଚାଲିଯିବି । ଘରବାର ଭଗବାନଙ୍କରେ ଆମେ ଦୁହେଁ ଭାସିଯିବୁ...
ହେଲେ.. ପାରିବିନି—ଦୟା କରନ୍ତୁ—ମୁଁ ପାରିବିନି ।
ଗୋଇଠି ମୁଁ ବୁଲେଇ ପାରିବିନି—ଏଇ ହାତରେ ମୁଁ ଜମା ପାରିବିନି ।"

ଗୋଟାଏ ନିର୍ମମ ଧକ୍କାରେ ପିଣ୍ଡାରୁ ତଳକୁ ଗଳି ପଡ଼ିଲା ସେଇ ଝିଅଟା—ଗୋପୀ ସ୍ତ୍ରୀ ରୂପା ଯିଏ ବାହାଘରର ଆଠବର୍ଷ ପରେ ପୁଆଣି ହୋଇ ଆସିଛି । ଶାଶୁ ଘରେ ଭଲ ନ ଥିଲା ବୋଲି—ଶ୍ୱଶୁର ବୋହୂକୁ ଆଣି ନଥିଲେ ଦୀର୍ଘ ଆଠବର୍ଷ କାଳ । ଆଜି କୋଳରେ ତାହାର ଅବାଞ୍ଛିତା ଶିଶୁକନ୍ୟା.. କାନ୍ଥର ଜଳା ଭିତରୁ ସେ ଭୟାବହ ଦୃଶ୍ୟ ଦେଖି ଶିହରି ଉଠୁଥିଲା ଲକ୍ଷ୍ମୀ, ସନ୍ତାନହୀନା ଲକ୍ଷ୍ମୀ ।

ସଂସ୍କୃତ ଶିକ୍ଷକ ଜ୍ୟୋତିର୍ବିତ୍ ପଣ୍ଡିତ ସଦାନନ୍ଦ ମିଶ୍ର ଶୁଣାଇ ଦେଇଥିଲେ ଲକ୍ଷ୍ମୀଙ୍କୁ ତାଙ୍କ ଶେଷ କଥା ପଦକ ..ସେ ସନ୍ତାନ ମୁହଁ ଦେଖି ପାରିବେ ନାହିଁ । ସେ ହେବେ ନିଃସନ୍ତାନ !

କନ୍ଥା ଘୋଡ଼େଇ ହୋଇଥିବା ଗୋଟିଏ ଫୁଲ୍ଲଟିଆ ମୁହଁ ହଠାତ୍ ବିଜୁଳି ଆଲୁଅରେ ଝଟକି ଉଠିଲା ..କି ସୁନ୍ଦର କଅଁଳ ମୁହଁ...

ଟଳା ଧକ୍କାରେ ବାଡ଼ିଆଡ଼କୁ ବାହାର କରି ଦେଇ ଭିତରୁ ଦୁଆର ଦେଇ ଦେଲେ ମିଶ୍ର ମହାଶୟ...ଯାଆ—ମର୍, ତୁ ମର୍ ।

ସେ ଦିନ ସତ !!!

ସ୍ତ୍ରୀ ପରେ...ସ୍ତ୍ରୀ ପରେ !

ଏ ଘଟଣା ପରେ ବ୍ୟାକୁଳ ଅଶ୍ରୁରେ ଭାଜି ପଡ଼ି ଲକ୍ଷ୍ମୀ ସଦା ସଦାନନ୍ଦର ପଦ ଯୁଗଳକୁ ଗୁଣ୍ଡିଧରି ମିନତି କରେ ..ମତେ କ୍ଷମାକର, ତେବେ ଆଶ୍ଚର୍ଯ୍ୟ ହେବାର କଣ ଅଛି ?

ସେ ଦିନ ସେ ଜନ୍ମିଲି ପ୍ରଶ୍ନବାଚୀ ପାଖରେ ହାର ମାନିଥିଲେ ସଦାନନ୍ଦ ଗୋଟିଏ ଅତୃପ୍ତ ମାତୃତ୍ୱକୁ ସମ୍ମାନ ଦେବାପାଇଁ, ଗୋଟିଏ ନବଜାତ ଶିଶୁକୁ ବଞ୍ଚାଇବା ପାଇଁ । ପ୍ରଶ୍ନ କରି ନଥିଲେ ସେ···କାହାର ସନ୍ତାନ !

ଜାଣିବାକୁ ମଧ୍ୟ ଚାହିଁ ନଥିଲେ ପିତୃ-ପରିଚୟ । ଅବବୁଝା ସେ ଅଧ୍ୟାୟ··· ରହିଯାଉ ଅବଲୁପ୍ତ ହୋଇ ଲୋକଲୋଚନ ଅଗୋଚରରେ ଚିରକାଳ···

କେଉଁ ଏକ ଦୁର୍ବାର ଶକ୍ତିର ପ୍ଲାବନରେ ଛୁଟି ଯାଇଥିଲା ଲକ୍ଷ୍ମୀ···

ଟଳି ପଡ଼ୁଥିବା ଦୁର୍ବଳ ସୁନ୍ଦର ଶରୀରଟାକୁ ଦୁଇହାତରେ ହଲେଇ ଦେଇ ଫିସ୍ ଫିସ୍ କରି କହି ଉଠିଲା, "ତୁ ମର ପୋଡ଼ାମୁହିଁ, ତୁ ମର୍ ! ହେଲେ ଏ ପବିତ୍ର ଦେବଶିଶୁ ! ଆଉ ପାପ ବଢ଼ାନା··ଦେ···ମତେ ଦେ !" ରୂପାର କଣ୍ଠସ୍ୱର ଥରି ଉଠିଲା କୃତଜ୍ଞତାରେ—ନେବ ? ତୁମେ ନେବ ନାନା ? ମୋ ପାଇଁ ସ୍ୱର୍ଗଦ୍ୱାରରେ ପାଣି ଅଛି, ହେଲେ ତମେ ସତେ ନେବ ନାନା ? ନେଇ ପାରି ମୋତେ ମୁକ୍ତି ଦେବ ? କିନ୍ତୁ···ତା ଆଗରୁ ମୁଁ କହିବାକୁ ଚାହେଁ ତାର ଜନ୍ମ ଇତିହାସ···ମୋର ପାପ-କର୍ମର ଅଧ୍ୟାୟ···ସବୁ ଶୁଣି ତୁମେ ନେଇ ପାରିବ ତ ?

ସେହି ନିସ୍ତବ୍ଧ ରାତିରେ ଲକ୍ଷ୍ମୀ ହେଉଚି ସେ ଦୃଶ୍ୟର ମୂକ ସାକ୍ଷୀ···

ସେ କରୁଣ କାହାଣୀର ଏକା ନୀରବ ଶ୍ରୋତା ଲକ୍ଷ୍ମୀ ଆଉ ଏକ ନାରୀ ଯାହାର ମାଆ ହେବାର ତୃଷ୍ଣା ଅସୀମ ।

ସେ ଦିନ ସେ ଅନ୍ଧକାର ଭିତରେ ରକ୍ତ ସାଲୁବାଲୁ ଜବାଫୁଲ ପରି ସୁନ୍ଦର ଶିଶୁ କନ୍ୟାଟିକୁ କୋଳରେ ଗୃହିଧର ସଦାନନ୍ଦଙ୍କ ପାଦତଳେ ମଥାପିଟି ପୁଣି ଅଳି କରିଥିଲେ ଲକ୍ଷ୍ମୀ···"ମତେ କ୍ଷମା କର, ମତେ କ୍ଷମା କର । ଚାଲ—ଏଇ ଗାଁ ଛାଡ଼ି ଆମେ ଚାଲିଯିବା ବହୁ ଦୂରକୁ । ଏ ପଙ୍କିଳ ପରିବେଶ ମଧ୍ୟରୁ ମୁଁ ତାକୁ ବଞ୍ଚାଇବାକୁ ଚାହେଁ । ମୁଁ ତାକୁ ପବିତ୍ର କରି ଗଢ଼ିବାକୁ ଚାହେଁ । ତୁମେ ମତେ ଆଶୀର୍ବାଦ କର ।"

ବର୍ଷା ଥମି ଯାଇଥିଲା ଅଶ୍ରୁନକ ଭବରେ ଆଶୀର୍ବାଦ ପରି—ଜଗନ୍ନାଥଙ୍କ ଆଶୀର୍ବାଦ ।

କେଉଁ ମାୟା ବଳରେ କେଜାଣି, କେଉଁ ଦୁର୍ବାର ଶକ୍ତି ପ୍ଲାବନରେ କେତେ ଦୂର ଘସି ଆସୁଥିଲେ ସଦାନନ୍ଦ, ନିଜେ ବି ଉତ୍ତର ଖୋଜି ପାଆନ୍ତି ନାହିଁ । ଖବର ପାଇଥିଲେ ସ୍ୱର୍ଗଦ୍ୱାରରେ ବୁଡ଼ୁବାର ସ୍ନାନ କରିବାକୁ ଯାଇ ରୂପା ସଲିଳ ସମାଧି ଲଭିଛି···

କିନ୍ତୁ···

ସେ ତ ଅନେକ ପରର କଥା···

ସେଇ ଜବାମସ୍ତୀ·· ତାଙ୍କ ପ୍ରାଣପ୍ରତିମା ଜବାମସ୍ତୀ, ଜୀବନର କେନ୍ଦ୍ର-ବିନ୍ଦୁ ।

ଅସହ୍ୟ ବ୍ୟଥାରେ ବିଦୀର୍ଣ୍ଣ ହେଉଛି ବକ୍ଷ । ଅଶ୍ରୁର ସାଗରରେ ଧୋଇ ହୋଇ ଯାଉଛି ପଦ ଯୁଗଳ ।

କିନ୍ତୁ···

ସଦାନନ୍ଦ କଣ ସେହି ବନ୍ଦନୀୟ ଋଷିତୁଲ୍ୟ ଶ୍ରେଷ୍ଠରେ ସମସ୍ତ ଜୀବଣୀକ୍ତ ଅଶ୍ରୁ ସାଗରକୁ ପାନକରି ଦେଇଛନ୍ତି ?

ବିନ୍ଦୁଏ ବି ଲୋତକ ନାହିଁ ?

ଖାଲି ଜ୍ୱାଳା—ଜ୍ୱାଳା—ଜ୍ୱାଳା !!

କର୍ଣ୍ଣରେ ନିନାଦିତ ହେଉଛି – କ୍ଷମାକର, ମୋତେ କ୍ଷମାକର···

କୋନାମିଆଁର ରକ୍ତ ତାର ଶରୀରରେ ପ୍ରବାହିତ । ମୁଁ ହାରିଗଲି, ମୁଁ ଅପରାଧ କରିଛି, ମୁଁ ହତ୍ୟା କରିଛି, ମୋର ମୁକ୍ତି ନାହିଁ—ନାହିଁ—ନାହିଁ—

କାଗଜର ପ୍ରତି ଧାଡ଼ି ବାରମ୍ବାର ପ୍ରତିଧ୍ୱନିତ ହେଉଛି···

"କହିବ କହିବ ହୋଇ ଓଠ 'ଖୋଲି କହି ପାରିଲି ନାହିଁ, ମୋ ଭିତରେ ଅସହ୍ୟ ଦ୍ୱନ୍ଦ୍ୱ । ପୁଣ୍ୟ ଗର୍ଭରେ ମୁଁ ଅମର୍ଯ୍ୟାଦା କରିଛି ! ହିନ୍ଦୁ ଘରେ ସଂସ୍କାର, ଦେବ-ପୂଜା, ତୁମର ଅଖଣ୍ଡ ସାଧନା, ସବୁ ମରୁଭୂମିରେ ବୃଷ୍ଟି ଜଳ ପରି ଝରି ପଡ଼ୁଛି··· ଶୋଷି ନେଇଛି ମରୁଭୂମି । ମୁଁ ନିଃସ୍ୱ, ଶୁଷ୍କ ବାଲୁକାରାଶି···ମୁଁ ସବୁ ଶୋଷି ନେଲି ।

କିନ୍ତୁ···ଯେଉଁ ଫୁଲ ରାସ୍ତାକଡ଼ରେ ପଡ଼ିଛି, ଯାହାକୁ କିଏ ପାଦରେ ମାଡ଼ି ଦେଇଛି ସେ କ'ଣ ଦେବପୂଜାରେ ଲାଗି ପାରିବ ? ପବିତ୍ର, ଶୁଭ୍ର ଫୁଲପରି ହୃଦୟଟିକୁ ମୋର ଅର୍ପଣ କରି ପାରୁନାହିଁ ତୁମର ନିବାଚିତ ଶୀଳଭଦ୍ରର ହସ୍ତରେ··ମତେ କ୍ଷମା କର, ମୁଁ ପାରିଲିନି । ମୁଁ ବାଗ୍‌ଦତ୍ତା, ଅଜ୍ଞାତ ସାରରେ ମୁଁ ବିଜାତୀୟ ଯବନ ନିକଟରେ ହୃଦୟଟି ଅର୍ପଣ କରି ସାରିଛି । ମୋତେ କ୍ଷମା କର···

ସେ ସିକନ୍ଦର ଅଲ୍ଲୀ । ମୋର ସହପାଠୀ···ହେଲେ ଆବାଲ୍ୟରୁ ଯେଉଁ ସାବିତ୍ରୀ କାହାଣୀ ଶୁଣିଛି, ସେ ଚିର ଅପାସୋରା···ଜାଣେ, ତୁମେ ମତେ କ୍ଷମା କରିପାରିବ ନାହିଁ । ତଥାପି ସେଇ ବନ୍ଦିତ ପାଦତଳେ ମଥାପାତି କ୍ଷମା ମାଗୁଛି··· ମୃତ୍ୟୁପଥର ଯାତ୍ରୀକୁ ଯେ କ୍ଷମା ଦରକାର···ଏ ଜନ୍ମରେ ପାଇ ପାରିଲି ନାହିଁ । ପରଜନ୍ମରେ ଯେପରି ତାଙ୍କୁ ପାଏ ଜବାମସ୍ତୀ···

ସଦାନନ୍ଦ କ'ଣ ଅଚଳ, ମୃତ, ସଂଜ୍ଞାହୀନ ???

ଅଜସ୍ର ଦ୍ରୁଣ୍ଣବାଚୀ ବିଷାକ୍ତ ଫଣା ତୋଳି ଘୂରୁଛନ୍ତି ଚତୁର୍ଦ୍ଦିଗରେ...

ଆଘାତ କରୁଛନ୍ତି ବାରମ୍ବାର...

ଦୁଇଅକ୍ଷରଯୁକ୍ତ ଶବ୍ଦ ସମୂହର ଅବ୍ୟକ୍ତ ଯନ୍ତ୍ରଣା ରୂ...ପା, ଗୋ...ପୀ, ଜୋନାମିଆଁ, ଲ.. କ୍ଷ୍ମୀ, ଆଉ ଜ...ଧା...ସିକନ୍ଦର କଣ ସାଲବେଗ୍ ହୋଇପାରନଥାନ୍ତା ? ତେବେ ? ତେବେ ? ଏମାନେ ସୃଷ୍ଟି କରୁଛନ୍ତି ଅଜସ୍ର ଶବ୍ଦ ତରଙ୍ଗ ଯନ୍ତ୍ରଣାର ତରଙ୍ଗ । "କ୍ଷମାକର ମୋତେ କ୍ଷମାକର !" ଆଉ ଏ ବିୟୋଗାନ୍ତକ ନାଟକର ନୀରବ ଦର୍ଶକ ଖାଲି ସଦାନନ୍ଦ । କାହାକୁ...କାହାକୁ କ୍ଷମା କରିବେ ସଦାନନ୍ଦ ? ନିଜକୁ ?



## ● ନୟୃତଂ କେନ ବାଧତେ

"ଆଜ୍ଞା"...

"କେଉଁଠିକି ଯିବେ ଆଜ୍ଞା"...

"ଚଲ, ଚଲ...ଆଗ ଚାଲନା"...

କପାଳରେ ଗଣି ଗଣି ବନ୍ଦେ ବନ୍ଦେ ଝାଳ । ମୋଟା ମୋଟା ଯାନ ମଣ୍ଡିଚନ୍ତିଏ । ଚନ୍ଦ୍ରାମୁଣ୍ଡରେ ପ୍ରାୟ ଅର୍ଦ୍ଧେକ କେଶଗୁଚ୍ଛରେ ବାର୍ଦ୍ଧକ୍ୟର ଅସ୍ପଷ୍ଟ ସ୍ୱାକ୍ଷର ।

ଏକାନ୍ତ ବିବ୍ରତ ସେ ! ଅମ୍ବାସାଡର ଗାଡ଼ିର ବ୍ୟାକସିଟ୍‌ରେ ଟୁଙ୍କ ହୋଇ ବସି ଝୁଲିବାକୁ ଲାଗିଲେ । ନିଜକୁ ସ୍ଥିତ ପର୍ଯ୍ୟାୟକୁ ଆଣିବାକୁ ପ୍ରୟାସ କରୁଥିଲେ ଅବା !

ଗତର ନିଶା, ଗତର ମୋହ କାଳୁ ମନକୁ ଆଗକୁ ଟାଣୁନାହିଁ । ଓଟାରୁଛି ...ଓଟାରୁଛି ପଛକୁ, ସେହି ପୁରୁଣା ଦିନ ଗୁଡ଼ାକ ଜଳ ଜଳ ଦିଶୁଛି ।

"ନ ଜାୟତେ ମ୍ରିୟତେ ବା କଦାଚିତ୍" ବାରମ୍ବାର ଆବୃତ୍ତି କଲେ ମଧ୍ୟ କଣ୍ଠନଳୀ ଚିର ଚିର ଫାଟି ପଡ଼ିବା ଉପକ୍ରମ ହେଉଛି ଯେ !

ହଁ ପଲାତକ ସେ ପଲାତକ ପରି ଛୁଟି ଆସିଛନ୍ତି ପରିସ୍ଥିତି ପାଖରୁ ଲୁଚକରି । ସମ୍ଭାଳିବାର ସତ୍‌ସାହସ ତାଙ୍କର ନାହିଁ । ଯାହା କେବଳ ଭୁଲିବାକୁ ଚାହିଁଛନ୍ତି ପଛ କଥା !

ସେ ଭୁଲିବାକୁ ଚାହିଁଛନ୍ତି...ଅତୀତକୁ ମୋଡ଼ି ମାଡ଼ି ବୁଜୁଳିରେ ବାନ୍ଧି ବହୁବାର ସେ ବିସ୍ମୃତିର ଅତଳ ଜଳରେ ଭସାଇ ଦେବାକୁ ଆପ୍ରାଣ ସାଧନା କରିଛନ୍ତି । ତା ନହେଲେ, ୫୪ ବର୍ଷ ସଦାକର୍ମଠ ବହୁ ଅଘାତରେ କ୍ଷତବିକ୍ଷତ ଏଇ ଶରୀରଟାକୁ ସେ ଏତେ ବାଟ ବୋହି ଆଣି ପାରିଲେ କିପରି ???

ପଛକଥାକୁ ଖୁବ୍ ଦୂରକୁ ଫିଙ୍ଗି ଦେବା ଭଳି ଦେହର ଜୋର, ମନର ଜୋର ଆତ୍ମବିଶ୍ୱାସ ଆଉ କାହାର ଅଧିକା ଅଛି, ୬ ଫୁଟ ଉଚ୍ଚତାବିଶିଷ୍ଟ ସଦାପ୍ରଶାନ୍ତ ଏଇ ପ୍ରୌଢ଼ ଅପେକ୍ଷା ? ଫିଙ୍ଗି ଫିଙ୍ଗି ଠିକ୍ ଜାଭେଲିନ୍ ଥ୍ରୋରେ ଚମ୍ପିୟାନ ପରି ସେ ଏତେ ବାଟ ଆଗେଇଆସିଛନ୍ତି !

ତେବେ···ସେ ହାରିଗଲେ କାହିଁକି ଏଭଳି ଅସହାୟ ଭାବରେ ?

ମୃତ୍ୟୁ ··ଏଇ ମୃତ୍ୟୁ ସହ ସେ କେତେ ପିଲା ଦିନରୁ ପରିଚିତ । କେତେ ରୂପରେ, କେତେ ଭାବରେ ସେ ଏଇ ଅପୂର୍ବ ରହସ୍ୟମୟ ମୃତ୍ୟୁର ବିଭିନ୍ନ କଳେବର, ବିଭିନ୍ନ ଅବତାରକୁ ଅବଲୋକନ କରି ଆସିଛନ୍ତି !

"ମରଣରେ ତୁହୁ ମମ ଶ୍ୟାମ ସମାନ !" ଗାଇଥିଲେ କବିଗୁରୁ କିନ୍ତୁ କାହିଁ ସେ ଭଳି ଅପରୂପ ଅନୁଭୂତି କେବେ ହୋଇଛି ବୋଲି ମନେ ହେଉନି ତ, ବରଂ ବେଳେ ବେଳେ ମନେ ହୋଇଛି ଏଇ ମୃତ୍ୟୁ କି ଜଘନ୍ୟ, କି ବିଭତ୍ସ, କି କୁତ୍ସିତ, କି ଦୁର୍ବିସହ, କି ଯନ୍ତ୍ରଣାଦାୟକ—ପୁଣି କି ମର୍ମନ୍ତୁଦ, କେତେ କରୁଣ, କେତେ ବିକଳାଙ୍ଗ ଏଇ ମୃତ୍ୟୁ ··ଅମୃତର ଉପଲବ୍ଧି ପାଇ ପାରନ୍ତି ନି ସେ । ସାତ ବର୍ଷ ବୟସରୁ ତା ସାଥେ ପରିଚୟ ତାଙ୍କର । ସେ ମୃତ୍ୟୁ !

ମାତ୍ର ସାତ ବର୍ଷର ଶିଶୁ । ତଳକୁ ତଳ ଗୁଡ଼ାଏଟି ଭାଇ ଭଉଣୀ । ସବୁ କାମ କରନ୍ତି ତାଙ୍କର ମାଆ । ପୁଣି ଅନାହାର ଓ ଅର୍ଦ୍ଧାହାରରେ ଅତି ଦୁର୍ବଳ ଶରୀର । ସାରା ସଂସାରର କାମ । ଆସନ୍ନପ୍ରସବା ତାଙ୍କର ମାଆ ବିନା ପ୍ରତିବାଦରେ କରିଯାଉଥାନ୍ତି ।

କିନ୍ତୁ ସେ ଦିନ···

ଏ ଘରେ ବାପା ବସି ଚଣ୍ଡି ବୁଝୁଛନ୍ତି । ଇଷ୍ଟଦେବୀଙ୍କର ପୂଜା···ପ୍ରତ୍ୟକ୍ଷ ଦେବୀ ସେ !

ବୁଢ଼ୀ ମା ସେ ଘରଟାର ଦୁଆର ବାହାରୁ ବନ୍ଦ କରି ଦେଇଛନ୍ତି । ଶିକଳଟାକୁ ମଡ଼େଇଦେଇଛନ୍ତି ଝଣ୍ଟିଆ ଦୁଆରରେ । ବନ୍ଦଘରର କବାଟ ପାଖରେ ସାତ ବରଷର ଶିଶୁ ।

ଏଇ ଭଙ୍ଗା ଘରଟାରେ ଆବହମାନ କାଳରୁ ସେ ଅନ୍ଧାର ଜମାଟ ବାନ୍ଧିଛି । ସେ ଘରୁ ବିଭତ୍ସ ପଶୁପରି ଗୋଟିଏ ଗଁ ଗଁ ଯନ୍ତ୍ରଣା ବ୍ୟାକୁଳ କଣ୍ଠର ସ୍ୱର ଅବିରତ ଭାସି ଆସୁଛି । ବାହାରୁ ଚାପା କଣ୍ଠରେ ଗର୍ଜନ କରୁଥାନ୍ତି ଗୋସାଇଁ ମା···

"ଦେ ଲୁଗା ବିଣ୍ଡାଟା ମୁହଁରେ ମାଡ଼ି ଦେ···ବାଇଚି ଗାଡ଼ିଲାଣି ଏଇଟାକୁ ···ଲୋକହସା କରିବୁ ମତେ···

ମାଇପେ ଜନମ କରିବେ, ତା ପୁଣି ଦାଣ୍ଡ ଦୁଆରକୁ ଶିବ—ଛି—ଛି—ଛି —ମରୁନୁ ତୁ । କି ଅପାଟକେ କଥା ଏ କାଳ ଶୁଣିଲି ଛୁଆ···ଟୋଟିରେ ଲୁଣ ଦେଇ ଏନ୍ତୁଡ଼ିଶାଳରେ ଯାହା ଶୋଇଠିଁଟା ଚୁଲେଇ ଦେଇ ନଥିଲି ମାଆ—ଉଃ—ହଃ···ଅଲଜୁକ !"

ଆଉ ଏ ପଟେ···ବାପା କିନ୍ତୁ ଚଣ୍ଡି ବୁଝୁଥାନ୍ତି—ନିର୍ବିକାର ଭାବରେ । ଆଉ ବନ୍ଦ ଘରର କବାଟ ପାଖରେ ସାତ ବରଷର ପୁଅ !

ଜଣେ କିଏ କ୍ଷୀଣ ସ୍ୱରରେ ପ୍ରତିବାଦ କରିଥିଲା—ଦେଇଠେଇ, କାହାକୁ ହେଲେ ଡାକ, ଝିଅଟା ପିଲାର ମାଆ । ହେଇଲାଗେ ଜନମ କରି ପୋଷୁଣୀକୁ ଲୁଗା ହକାଳି ଦ୍ୱିନ । ଆସି ପ୍ରାଣ୍ଟରେ ହେଲଣି ବୁଝ ଚାଲୁଛି ତମେ ବଇଦକୁ ଡାକ ଦେଇଠେଇ ।"

ବୁଢ଼ୀମା ସେ ଘରର ଅଧିଷ୍ଠାତ୍ରୀ ଦେବୀ !

ଚଣ୍ଡୀଙ୍କ ତଳକୁ ତାଙ୍କର ସ୍ଥାନ ! ସେଇଠାରୁ କ'ଣ ମନ୍ତୁରେଇ କରି ଡାଳେ ପାଣି ଆଣି ମାଆକୁ ତାଙ୍କର ପିଇବାକୁ ଦେଇଥିଲେ । ଝିଅଟିଙ୍କ ଲଣ୍ଠିଟାକୁ ଧରିବାକୁ ପରାମର୍ଶ ଦେଇଥିଲେ ।

ବଂଶ ପରମ୍ପରା···ଚାଲି ଆସିଛି । ଏଇଟାକୁ ଧରି ଏ ବଂଶର ସମସ୍ତେ ପିଲା ଜନ୍ମ କରିଛନ୍ତି !!! ଆଉ ଇଏ ଅଇଲେ ଆମର···

କାହିଁକି କେଜାଣି ନିଦ ଆସୁ ନ ଥିଲା ଦେବବ୍ରତ ଆଖିକୁ ।

ସେଇମିତି ପିଣ୍ଡାଟାରେ କାନ୍ଥକୁ ଆଉଜି ମାଘମାସ ଥରୁ ଥରୁ ଶୀତରେ ସେ ବସିଥିଲା ।

ବୋଧେ ରାତି ଦଶଟା ହେବ·· ବୋଉର ଚୋଟିଚପା ଆକୁଳ ଚିତ୍କାର ଶୁଣି ହଠାତ୍ ସିଂହ ବଳରେ ଶିକଳଟାକୁ ଠେଲିଦେଇ ଘରେ ପଶିଯାଇଥିଲା ଦେବବ୍ରତ ···ସାତ ବରଷର ପଢ଼ୁଆ ପୁଅ ଦେବୁ ଡାକ ଦେଇଥିଲା ବୋଉ—ବୋଉଲେ !

ସେ ଦୃଶ୍ୟ ଏବେ ବି ଜଳ ଜଳ ଦିଶୁଛି !

ସେ କି ଦୃଶ୍ୟ···ବୋଉ ତାର ଜିଭ କାଢ଼ି ପଡ଼ିଛି । ରକ୍ତର ସୁଅ ଛୁଟୁଛି । ଅଧା ବାହାରି ଥିବା ଅତି ସାନ ସାନ ଗୋଡ଼ ଦୁଇଟା ଲମ୍ବ ଲମ୍ବ ହୋଇ ହଲୁଛି । ଏତେ ବିଭତ୍ସ ମୃତ୍ୟୁ ! ଏତେ ଭୟଙ୍କର !···ଶିହରି ଉଠି ଚିତ୍କାର କରି ମୂର୍ଚ୍ଛା ହୋଇ ଯାଇଥିଲା ବାଳକ ଦେବବ୍ରତ ।

ସେ ତାର ପ୍ରଥମ ମୃତ୍ୟୁ ଦର୍ଶନ !

ସେଦିନର ସେ ଦୃଶ୍ୟଟା କଅଁଳ ମନରେ ଗାଢ଼ ଦାଗ ରଖି ଦେଇଛି—ସେ କ୍ଷତରୁ ଏବେ ବି ରକ୍ତ ଝରେ । ସେ କ୍ଷତ ନ ଶୁଖୁଣୁ ଦେବବ୍ରତ ପୁଣି ପାଏ ଧକ୍କା·· ଚରମ ଆଘାତ ।

ଜ୍ୟେଷ୍ଠ ମାସର ଡହଡହିଆ ଖରାରେ ପିଇସା ଯାଇଥାନ୍ତି ପାଖ ଗାଁ ହାଟକୁ ! ଏଠିକବେଳେ ଅଚାନକ ମାଡ଼ି ଆସିଛି ଅଶେଶ ପବନ । ଘଡ଼ଘଡ଼ି ଚଡ଼ଚଡ଼ି ସହ ଆକାଶଫଟା ବରଷା !

ପିଇସା ଫେରି ନାହାନ୍ତି । ରାତି ମାଡ଼ି ଆସିଲାଣି—ଅଥଚ ପିଇସା କାହାଁନ୍ତି ?

ସାରା ରାତ ଉବସ୍ତ କାଲି ରେବତୀ ନାନୀ ଦାଣ୍ଡ ଦୁଆରରୁ ବାଡ଼ ଦୁଆର ହେଉଛି । ପଣତ କାନରେ ମୁହଁ ଲୁଚାଇ ସୁକୁ ସୁକୁ ହୋଇ କାନ୍ଦୁଛି ।

ସେତେବେଳେ ଦେବବ୍ରତ ୧୪ ବର୍ଷର ବାଳକ !

ଜାଙ୍ଗୁଲୁ ଜାଙ୍ଗୁଲୁ ରାତି ଆଉଁ ଆଉଁ ଛୁଟାଧର ଯାଇଛି ଦେବବ୍ରତ । ସେତେ-ବେଳକୁ ବର୍ଷା ଛାଡ଼ି ଯାଇଛି । ଖାଲ ଗାଁ ଦାଣ୍ଡରେ ପାଣି ସୁଅ ଛୁଟିଛି ।

ଗହଳିଆ ବଲ ଭିତରେ ସକାଳର କଅଁଳ ଝରେ ଏ ରୂପଦେଖି ଶିହରି ଉଠିଛି ଦେବବ୍ରତ !...

ମୃତ୍ୟୁର ଆଉ ଏକ ଭୟାବହ ରୂପ ।

ପିଉସାଙ୍କର ଅଦ୍ଭୁତ ସୁନ୍ଦର ମୁହଁଟା କ ବିଭତ୍ସ ଦିଶୁଛି ' ପେଟ ଭିତରୁ ବାହାରି ପଡ଼ିଛି ଅନ୍ତବୁଜୁଳା !

ପାଖରେ ପଡ଼ିଛି ଗୋଟିଏ ଅରଣା ମଇଁଷି । ସ୍ତୃତପଟେ ପାଣିର ସୁଅ ନୁହେଁ ଯେ ଛୁଟିଛି ରକ୍ତର ସୁଅ । ପାଣି କେତେ ପାଲଟି ଯାଇଛି !

ବଲମାଲର ଆସୁ ଏ ରକ୍ତଧୂଆ ପାଣିରେ ମୁଣ୍ଡମାଡ଼ପଡ଼ି କାଇଁ କାଇଁ କାନ୍ଦୁଛି ଦେବବ୍ରତ !

ଶଗଡ଼ିଆ ଯେ କେତେବେଳେ ପିଉସାଙ୍କର କ୍ଷୋକ୍ତ ଶବଟା ସହ ତାର ଅଚେତ ଦେହଟାକୁ ବୋହିଆଣି ଘରେ ପହଞ୍ଚେଇ ଦେଇଛି ଜାଣେନାହିଁ ଦେବବ୍ରତ । ତାର ୧୬ ବର୍ଷର ରେବତୀ ନାନୀର ନାକରେ ଦାଉ ଦାଉ ଜଳୁଥିବା ନୁଣା, ବସୁଣି, ତା ହାତର ଝଞ୍ଜୁ ସବୁ ଲୁଚି ଯାଇଛି ।

ରେବତୀ ନାନୀ ବିଧବା । ଲଙ୍ଗଳା ହାତରେ ରେବତୀ ନାନୀ ଭାତ ପରଷିଲା ବେଳେ ଦେବବ୍ରତର ନନା ତାଙ୍କର ଗାମୁଛା କାନରେ ଆଖି ପୋଛନ୍ତି...

ସେ ଦିନର ସେ ଦୃଶ୍ୟଟା ଏବେ ବି ଜଳ ଜଳ ଦିଶେ । ସେ କ୍ଷତରୁ ଏବେ ବି ଝରେ ନାଲି ନାଲି ରକ୍ତ ଧାର । ପୋଡ଼ିଯାଏ ଦେବବ୍ରତର ଅନ୍ତର । କ୍ରୋଧପ ବଢିଯାଏ । ଅଶ୍ରୁରେ ଦେବବ୍ରତର ଆଖି ଅନ୍ଧ ହୁଏ ।

ଏଇ ବିଭତ୍ସ ମୃତ୍ୟୁ ହାତରୁ ମଣିଷକୁ ରକ୍ଷିବା ପାଇଁ କ'ଣ କମ ସାଧନା କରିଛି ସେ ?

ଆପ୍ରାଣ ପ୍ରଚେଷ୍ଟା... ସ୍ୱାନ ଯାନ ସ୍ୱଗ୍ରେଟି ଭାଇ ଭଉଣୀଙ୍କୁ ନେଇ ସେ ମଧ୍ୟ ବାପାଙ୍କ ସଙ୍ଗେ ଉପସ୍ୟା କରିଥିଲା, ଏମାନଙ୍କୁ ବଞ୍ଚାଇବାକୁ । ମୃତ୍ୟୁର କବଳରୁ ରକ୍ଷା କରିବାକୁ ଦେବବ୍ରତ ପ୍ରାକ୍ଟିସ୍ ତ... ଶପଥ କରିଥିଲା !

ଖାଲି ଏଇ ଭୟରୁ, କାଲେ ସେ ବିଭତ୍ସ ମୃତ୍ୟୁଟା ଶୁଣି ଆସି ଓଟାରି ନେବ ତାଙ୍କ ଭିତରୁ ଜଣକୁ । କେଜାଣି...ନାଇଁ—ନାଇଁ.. ନାଇଁ ! ସେ ଧରି ରଖିବ !

ମୃତ୍ୟୁ ପ୍ରତି କି ଜଘନ୍ୟ ଘୃଣା ଦେବବ୍ରତର !

ସେଇଥିପାଇଁ ସଙ୍କଳ୍ପ କରି ଚଣ୍ଡି ଉପାସକ, ପୂଜକ, କାବ୍ୟତୀର୍ଥ, ରାଜଗୁରୁ ମହାଶୟଙ୍କ ପୁଅ ଇଂରାଜୀପାଠ ପଢ଼ିଲା ।

ଏଇ ହାତ, ଯେଉଁ ହାତରେ ସେ ରୁଦ୍ରାକ୍ଷମାଳୀ ଗଡ଼ାଏ, ଗାୟତ୍ରୀ ଜପେ, ସେଇ ହାତରେ କେବଳ ବେଙ୍ଗ ନୁହେଁ, ଆତୁରର ବହୁ କ୍ଷତକୁ କାଟିଛି ସେ । କ୍ଷତ କାଟି ପ୍ରଲେପ ଦେଇଛି । ବଞ୍ଚାଇଛି ।

ସେ ଡାକ୍ତର । ତାର ବୋଉ ମରିଛି । ସେ ମୃତ୍ୟୁ ଦେବବ୍ରତର କଅଁଳ ମନରେ ତାତଲ ଲୁହା ହାତୁଡ଼ିରେ ଯେଉଁ ପାହାର ପକେଇଛି, ସେ କ୍ଷତର ପ୍ରଲେପ ଦେବ ଦେବବ୍ରତ···

"ସେବାହିଁ ଜୀବନର ଧର୍ମ"···

ହଁ···ଧର୍ମ । ଧର୍ମ ପାଇଁ ତ ଚକ୍ରଧରଙ୍କର ଜୀବନ ! ତେଣୁ ସନ୍ତୁଷ୍ଟ ପଣ୍ଡିତ କାବ୍ୟତୀର୍ଥ ପୁଅକୁ ଅନୁମତି ଦେଇଛନ୍ତି ଡାକ୍ତରୀ ପାଠ ପଢ଼ିବା ପାଇଁ । ପରମ୍ପରା ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିଛି ସେ । ଅଥଚ ଏଗାର ବର୍ଷର ଜବାମଣ୍ଡୀ ହୋଇଛି ବୋହୂ···ଦେବବ୍ରତ ବାଧା ଦେଇ ପାରିନି—ଗୌରୀଦାନର ପୁଣ୍ୟ ଅର୍ଜନ କରିଛନ୍ତି କାବ୍ୟତୀର୍ଥ । ବଡ଼ ଦମ୍ଭରେ ପରା କହୁଥିଲା ସିଏ···ଫିଙ୍ଗି ଦେଇପାରେ କସାଂସ୍କୃତି ଅତୀତକୁ···

ବହୁତ ଦୂରକୁ । ସୁଦକ୍ଷ ଖେଳୁଆଡ଼ ପରି···

ପାରିଛି, ପାରିଛି ସିଏ ? କାହିଁ ମନେତ ହେଉନ !

କାବ୍ୟତୀର୍ଥଙ୍କର ଦାୟାଦ ଦେବବ୍ରତ ସେଦିନ ମଧ୍ୟ ପ୍ରତିଦିନ ପରି ପ୍ରାତଃସ୍ନାନ ସାରି ଚଣ୍ଡି ଉପାସନାରେ ବସିଥିଲେ, ତାପରେ ସେ ଯିବେ ଡାକ୍ତରଖାନା···

ଏଇ ଜବା···ଆରେ ଧୂପ ଦେଇଛୁ ? ଚନ୍ଦନ ଘୋରା ସରିଛି ? ଭୋଗ ରନ୍ଧା ହୋଇଛି ? ଆଚ୍ଛା ଆଚ୍ଛା···ବେଶ୍ ବେଶ୍···ଆଣ ଆଣ···ଆଉ ଡେରି କାହିଁକି ? ସ୍ୱାଭାବିକ ଗମ୍ଭୀର ଚଞ୍ଚଳ ସ୍ୱରରେ ଦେବବ୍ରତ ପ୍ରତିଦିନ ପରି ଜବାମଣ୍ଡୀକୁ ଡାକ-ଥିଲେ ।

ଗାଢ଼ ରକ୍ତବର୍ଣ୍ଣର ବରହମ୍ପୁରୀ ପାଟଶାଢ଼ୀ ପିନ୍ଧିଥିଲା ଜବାମଣ୍ଡୀ ।

ତାର କୋଳର ଝିଅ ତା ଗୋଡ଼କୁ ଧରି କାନ୍ଦୁଥିଲା । ସେ ବେକରେ ପଣତ ଗୁଡ଼େଇ ଛୁଆଟାକୁ ପିଣ୍ଡାରେ ବସେଇଦେଇ ପିତଳ ଥାଳିରେ ଭୋଗ ସଜାଡ଼ି ଧରି ଆସୁଥିଲା । ଦେବବ୍ରତଙ୍କର ଆଳତି ସରିଛି । ସେ ବନ୍ଦନା କରୁଛନ୍ତି—

"ନଗଳମ୍ବୋ ଲମ୍ବୋଦର ଜନନୀ କଂ ଯାମି ଶରଣମ୍" ମନ୍ତ୍ରର ଶେଷ ପଦ ଅର୍ଦ୍ଧ ଉଚ୍ଚାରିତ ହୋଇଛି କି ନାହିଁ ଭୋଗଥାଳିଟା ଝଣ ଝଣ ହୋଇ ଖସିପଡ଼ିଲା ।

ଶରୀରକୁ ଜଳି ଆସୁଥିବା ବଡ଼ ପିଲଲ ଦୀପଟା ହଠାତ୍ ଦପ୍ କରି ଲିଭିଗଲା···

ଆଃ ଶିହରି ଉଠୁଛି ଚିତ୍ତ ! କି ବିଭତ୍ସ ସେ ଦୃଶ୍ୟ···ଖଣ୍ଡ ଖଣ୍ଡ ମୁଣ୍ଡା ମୁଣ୍ଡା ଶୀତଳ ରକ୍ତ !

ସମଗ୍ର ମୁଖମଣ୍ଡଳ ମଟରେଗ୍ରଡାରେ ଏକ ବିଭତ୍ସ ହିମାଳୟର କ୍ଷେତ୍ରରେ ପରିଣତ ହୋଇଛି । ବାରି ହେଉନି ।

ଅପୂର୍ବ ସୁନ୍ଦର ଦୀର୍ଘାଙ୍ଗ ଦେହେଟାର ପ୍ରତି ରେଖାରେ ଅଜସ୍ର କ୍ଷତ । ଗ୍ରେଟ ଗ୍ରେଟ ଚୂର୍ଣ୍ଣି ହାଡ଼ଗୁଡ଼ାକ ଛିଟିକି ହୋଇ ପଡ଼ିଛି । ଭଙ୍ଗା ମଟର ସାଇକେଲଟା ଆଣି ପାଖରେ ପକାଇ ଦେଇଗଲେ ସେମାନେ । କେବଳ ବାହାରି ଆସିଛି ତାର ବିଭତ୍ସ ଦୁଇଟା ଆଖି···ନବାମସ୍ମୀର ରୂପବାନ ତରୁଣ ସ୍ୱାମୀ ଇଏ—ଏଇ ମଣିଷ ?

ଆଃ···ଅନ୍ଧ ହୋଇଯାଇ ଯାଉ ଏ ନେତ୍ର, ଏ ବିଭତ୍ସ ଦୃଶ୍ୟ ଦେଖିବା ଆଗରୁ ମୃତ୍ୟୁ ଶ୍ରେୟସ୍କର ! ହଁ ବିଧାତାର ପରିହାସ, ନିୟତିର ନିର୍ଦ୍ଦେଶ···।

ସଙ୍କଳ୍ପ କରିଥିଲେ ସିଏ ଦେବବ୍ରତ ଏଇ ବିଭତ୍ସ ମୃତ୍ୟୁ କବଳରୁ ଉଦ୍ଧାର ଆଣିବେ ସିଏ···

କିନ୍ତୁ···କାହିଁ—ପାରିଲେ ? ପାରିଲେ ?

ସକାଳର ସଜଫୁଟା ଫୁଲ ପରି ଅନିନ୍ଦ୍ୟ ସୁନ୍ଦରୀ ଅପରୂପ ଲାବଣ୍ୟମୟୀ ତପ୍ତକାଞ୍ଚନବର୍ଣ୍ଣୀ କନ୍ୟା ଯାହାକୁ ଦେଖି କାବ୍ୟତୀର୍ଥଙ୍କର ଚିତ୍ତରେ ମହାଦେବୀଙ୍କର ଧ୍ୟାନ ଆସିଥିଲା ନାଁ ଦେଇଥିଲେ ନବାମସ୍ମୀ ।

ସେଇ ସୌନ୍ଦର୍ଯ୍ୟର ପ୍ରତିମା ନବାମସ୍ମୀର ବିଷାଦଗ୍ରସ୍ତ ନିରାଭରଣ ·ଅଙ୍ଗକୁ ସେ କେମିତି ଦେଖିଲେ ? ହିମାଳୟର ତୁଷାର ଶୁଭ୍ର ଶୋକ ସତେ ଯେପରି ନବାମସ୍ମୀର ରୂପ ପରିଗ୍ରହ କରିଛି···

କେତେ ଅବାସ୍ତବ ଏ ବଡ଼ିମା, ଏ ଅହଙ୍କାର ! ଡାକ୍ତର ଦେବବ୍ରତ ପୁଣି ମୃତ୍ୟୁ ସଙ୍ଗେ ସଂଗ୍ରାମ କରିବେ ?

ତେବେ ସେତେବେଳକୁ ତ ଦେବବ୍ରତ ପ୍ରଖ୍ୟାତ ଡାକ୍ତର । ଷୋଡ଼ଶୀ ପତ୍ନୀ ତାଙ୍କର 'ପଦ୍ମା' ବିଦାୟ ନେଲା ସଂସାରରୁ । ବିଫଳ ହେଲା ଦେବବ୍ରତର ସମସ୍ତ ଶିକ୍ଷା, ଡାକ୍ତରୀ ପାଠ, ଅସ୍ତ୍ରଚିକିତ୍ସାର ପାରଦର୍ଶିତା ।

ଅଜସ୍ର ପ୍ରୀତି, ଅଖଣ୍ଡ ଶ୍ରମ ଓ ସାଧନାକୁ ଉପହାସର ଫୁତ୍କାରରେ ଉଡ଼େଇଦେଇ ପାଣ୍ଡୁର ବଦନ ଯନ୍ତ୍ରଣାକ୍ଳିଷ୍ଟ ଅଙ୍ଗରେ ବିଦାୟ ନେଇଛି ପଦ୍ମାବତୀ !

"ଆଃ"...

ସେ କି କରୁଣ କାକୁତି—"ମତେ ବଞ୍ଚାଇ ଦିଅ ତମେ...ମୁଁ ମରିବାକୁ ଚାହେଁ ନାହିଁ । ତୁମେ ନା ଡାକ୍ତର !

ଏବେ ବି ଏମିତି ରାତିର ଘନ ଅନ୍ଧକାରରେ ଅସଂଖ୍ୟ ପଦ୍ମାର ସ୍ୱର ତାଙ୍କର କର୍ଣ୍ଣ ପାଖରେ ଚିତ୍କାର କରେ ।

ଦେବବ୍ରତର ରକ୍ତଚାପ ଦ୍ୱିଗୁଣିତ ହୁଏ । ସ୍ଲିପିଙ୍ଗ ଟାବଲେଟ୍ ଖାଇ ନିଦ୍ରା-ଯାଏ ଡାକ୍ତର ଦେବବ୍ରତ !

ଓଃ—କି ଦହନୀୟ ରୂପ ମୃତ୍ୟୁର...

ଚଳିଶ୍ରିକ ଜୀବନରେ ସେ ଦେଖିଛନ୍ତି ମୃତ୍ୟୁର ଅଜସ୍ର ରୂପ...

କିନ୍ତୁ ଅମୃତ କାହିଁ ? ମୁକ୍ତି କାହିଁ, ନିର୍ବାଣ କାହିଁ ?

ତଥାପି ବଞ୍ଚିଛନ୍ତି ଦେବବ୍ରତ । ଲଢ଼ିବାକୁ ହେବ ଯେ !

କର୍ତ୍ତବ୍ୟ ବାରମ୍ବାର ଆବୃତ୍ତି କରଛନ୍ତି ଗୀତାର ବାଣୀ ଗମ୍ଭୀର ଶ୍ରଦ୍ଧାରେ ଅଜସ୍ର ଭକ୍ତିରେ...

"ଗତାଂସୂଂଚ... ...ନାନୁ ଶୋଚନ୍ତି ପଣ୍ଡିତାଃ ।"

ହଁ ସେ ଶୋକ ଭୁଲିଛନ୍ତି ।

ଶୋକ ଭୁଲି ନଥିଲେ ଆଜିଯାଏ ଏ ଶରୀରଟା ବଞ୍ଚି ଆସିଲେ କିପରି ? ପୁଣି ସଦା କର୍ମରତ ଏଇ ଶରୀରଟାକୁ ?

ନେବ ଭିତରୁ ଯେତେବେଳେ ମଠାଶାଢ଼ୀ ପିନ୍ଧି ପୂଜାଡାଲାରେ ଫୁଲ ରଖିଦିଏ 'ପ୍ରଜ୍ଞା', ଜବାର କନ୍ୟା ।

ଏଇ ଘରେ ସେ ମଣିଷ । ବାପ ଛେଉଣ୍ଡ ପାଇ ଭଉଣୀ ଦଉଡ଼ି ।

ପ୍ରଜ୍ଞାର ଉପାସନା ପାଇଁ ସେ ତାର ନାମ ରଖିଥିଲେ 'ପ୍ରଜ୍ଞା ପାରମିତା' । ସତ୍ୟର ଆଉ ପ୍ରଜ୍ଞାର ସନ୍ଧାନ ପାଇଁ ଆକୁଳିତ ହୋଇଥିଲେ ଯେତେବେଳେ ଦେବବ୍ରତ ଦେବାଶିଷ ପରି ଆସିଥିଲେ ସେମାନେ ··ସନ୍ଦୀପ ଓ ପ୍ରଜ୍ଞା ।

ବିପତ୍ନୀକ ଦେବବ୍ରତଙ୍କର ମନର କ୍ଷତ ଶୁଖି ଆସୁଥିଲା ବୋଧହୁଏ । ତା ନହେଲେ କ୍ୟାଲେଣ୍ଡରରେ ଏତେ ନାଲିଗାର କେମିତି ସେ ମନେ ରଖି ଦେଉଥିଲେ ?

ଷ୍ଟେଥେସ୍କୋପ୍‌ଟା ଗଳାରୁ କାଢ଼ି ଇଜି ଚେୟାରରେ ବସିପଡ଼ି ସେ ଠିକ୍ ଡାକ ଦିଅନ୍ତି...

ଆରେ ଜବା...ଦେଖ୍, କାଲି ମେ ୧୦ ତାରିଖ ନା...

କାଲି ପ୍ରଜ୍ଞାର ଜନ୍ମଦିନ ଯେ ! ମାଆ ପାଇଁ ଶାଢ଼ୀ ଆଣିବ ଆଜି ନା...ଆଜି କାହାକୁ ପଠାଇବାକୁ ହେବ ବାଲେଶ୍ୱର !

ଜବାମନ୍ତ୍ରୀ ହସେ - କାହାକୁ ପଠାଇବାକୁ ହେବ ? ସେ କହନ୍ତିନ କହୁ । କଫି ଧରି ବେହେରା ଘରୁ ଆସୁ ଆସୁ ସେ ଚେକ୍ ସାରେ ବସି ଗୁଳୁପାଆନ୍ତି…କଫି ଅଣ୍ଡା ହୁଏ । ଜବାମନ୍ତ୍ରୀ ଚାହିଁଛୁ ତା ପାଚିଲା ଗାଲକୁ ।

"ଦେଖ—ଏଇଠି ରଖ୍, ଏଇ ଶୁଣ୍, ଗୋଟାଏ ଭଲ ଶାଢ଼ୀ ଦେବ । ହଁ, ଲାଲ ଶାଢ଼ୀ—ଗାଢ଼ ଲାଲ ଶାଢ଼ୀ ।"

ଦୋକାନୀ ହସେ ··

"ଆଜ୍ଞା ଝିଅ ପାଇଁ ନା ?"

"ହଁ ତାରି ଜନ୍ମ ଦିନ !"

ଆଖିଦୁଇଟା ବନ୍ଦ କରି ଦିଅନ୍ତି ଦେବବ୍ରତ । କପାଳରେ ଧାଡ଼ି ଧାଡ଼ି ଶିରା କୁଞ୍ଚିତ ହୁଏ ।

କହନ୍ତି, "ଶୁଣ୍, ଆଜିକାଲିର ପସନ୍ଦ ଶାଢ଼ୀ ଦେବୁ । କିନ୍ତୁ ଫିକେ ଗାଢ଼ ରଙ୍ଗ ଦେବୁରେ·· ନା—ନା—ଶୁଣ ଗାଢ଼ ଲାଲ ରଙ୍ଗ···ବୁଝିଲୁ ?"

ମନ ଆନନ୍ଦରେ ସେ ଗୋଡ ହଲାନ୍ତି । ହଁ ବେଶ୍ ଦିଶେ, ବେଶ୍ ମାନେ ତାକୁ ସେ ଲାଲ ରଙ୍ଗଟା···ଗୋରି ଝିଅଟା ନା !

ତୃଷ୍ଟିଦ୍ରୂମ ପରୋପକାରୀ ଡାକ୍ତର ଦେବବ୍ରତ । ସହରର ସମସ୍ତଙ୍କର ଶ୍ରଦ୍ଧାର ପାତ୍ର । ମୁଗ୍ଧ ଦୋକାନୀ ଶାଢ଼ୀ ପ୍ୟାକେଟ ରଖିଦିଏ ଟେକ୍ସୀରେ ।

ଟେକ୍ସୀ ଛୁଟେ କଟକର ଜନଗହଳି ରାସ୍ତାରେ ।

"ଜବା···ଜବା"

ଡାକ ପକାନ୍ତି ଦେବବ୍ରତ—

"ଦେଖ୍, ଶାଶ୍ୱତ୍ ଚଠି ଦେଇଛି ନେ ଶୁଣ୍···ଆଜ ମାଆ ତୁମମାନଙ୍କୁ ନେଇ ଆସୁଛି···ବୁଝିଲୁ ? ବେଶ୍, ବେଶ୍ ମଜାରେ କଟିଯିବ ଦିନ କେଇଟା ନାରେ !"

ବେଶ୍ ମନଖୋଲା ହସ ତ ହସି ପାରୁଥିଲେ ଦେବବ୍ରତ ।

ହଁ, ଶୁଖି ଯାଇଥିଲା କ୍ଷତ । ଚାହିଁ ମଧ୍ୟ ଲଭ ଆସୁଥିଲା ବୋଧହୁଏ । ନୂତନର ସ୍ୱାଦ ।

କିନ୍ତୁ··· ଏ କଣ ହେଲା ?

ଏମିତି ସବୁ ଓଲଟି ପଡ଼ିଲା କାହିଁକି ?

ଇତିହାସର କଣ ଏମିତି ପୁନରାବୃତ୍ତି ଘଟେ ?

ସେ କେମିତି ସହ୍ୟ କରିବେ ସେଇ ନିର୍ମମ ଦୃଶ୍ୟ ବାରମ୍ବାର ?

କେମିତି ମାନିନେବେ ଏ ଜଘନ୍ୟ ସତ୍ୟକୁ ?

ପାରିବେ ? ପାରିବେ ମାନି ?

ରାତିର କଳା ଅନ୍ଧକାରରେ ଜପ୍‌ରେ ବନ୍ଧା ଆଖିଲେ ତାର ରକ୍ତାକ୍ତ ବିକୃତ ଶରୀରଟାକୁ...

ଦୁର୍ଘଟଣା...ଜପ ଆଉ ଟ୍ରକ ଦୁର୍ଘଟଣା, ଏଇ ଦୁର୍ଘଟଣା ଗୁଡ଼ାକ କ'ଣ ଏତେ ବିଭତ୍ସ ଭାବରେ ଘଟେ ?

ଦେବବ୍ରତର ହୃଦ ଭିତରର ପ୍ରତି ରକ୍ତକଣିକା, ଶିରାପ୍ରଶିରା ଆଉ ପ୍ରତ୍ୟେକ ଅସ୍ଥିକୁ ଯେମିତି କ୍ଷତ ବିକ୍ଷତ କରିଦେଲା । କମିତି ଆଖିମେଲି ଦେଖିପାରିଲେ ଦେବବ୍ରତ ତାଙ୍କ ଆଦରିଣୀ ପ୍ରଜ୍ଞାର ସ୍ୱାମୀ ଶାଶ୍ୱତ୍‌ର ଧ୍ୱସ୍ତବିଧ୍ୱସ୍ତ ଶରୀରଟାକୁ !

ବସୁଧା ଏ ଦୃଶ୍ୟ ଦେଖିଲା—? ଫାଟି ଗଲା ନାହିଁ ? ବିଦୀର୍ଣ୍ଣ ହେଲା ନାହିଁ ଦେବବ୍ରତର ବକ୍ଷ ? ପଥର ନିର୍ମମ ଦେବବ୍ରତ ।

ହଁ ସାରା ରାତିର ଅଜସ୍ର ପ୍ରଳାପ ପରେ ଦେବବ୍ରତ ମୁକ୍ତି ଖୋଜିଛନ୍ତି । ସେ ଛୁଟି ଆସିଛନ୍ତି ପଳାତକ ପରି । ଏ ବିଭତ୍ସ ମୃତ୍ୟୁର ହସ୍ତରୁ ମୁକ୍ତି ପାଇ ସେ ପ୍ରାଣପଣେ ଛୁଟି ଆସିଛନ୍ତି ।

ଆଶ୍ରୟ—ନିରାପଦ ଆଶ୍ରୟ ପାଇଁ ।

"ବାବୁ, ଏଇ ବାଙ୍କରେ ଗାଡ଼ି ନେବି ତ...ଭୁବନେଶ୍ୱରପୁର ଉଗ୍ରତାରାଙ୍କ ମନ୍ଦିରକୁ..."

"ହଁ—ହଁ—ନେ—ନେ—ଚାଲ—ଚାଲ, ଚାଲିରେ !" ଗାଡ଼ି ଭିତରକୁ ଗଲା ।

ଆଲୋକିତ ହେଉଛି—କଣ୍ଠରେ ମନ୍ଦାର ମାଳ । ଏକାନ୍ତ ଶୁଭ୍ର ଗୌର ଦୀର୍ଘାଙ୍ଗ ଶରୀର । ଚନ୍ଦନଚର୍ଚ୍ଚିତ ପ୍ରଶସ୍ତ କପାଳ । ମହାଦେବୀଙ୍କର ଧ୍ୟାନରେ ନେତ୍ର ନିମୀଳିତ...କଣ୍ଠ ଜଳଦଗମ୍ଭୀର—ଶବ୍ଦ ଅର୍ଥ ଭେଦ କରି ସ୍ଫୁଟ ହୋଇଛି ମର୍ମସ୍ପର୍ଶୀ । ସମସ୍ତେ ବିଦାୟ ନେଇଛନ୍ତି...ପୁତ୍ର, କନ୍ୟା, ପତ୍ନୀ । ମାତ୍ର ଏଇ ଅଖଣ୍ଡ ମୋହରେ ସେ ଆନନ୍ଦର ଉପାସକ...ଅମୃତ ପଥର ପଥିକ ।

ମନ୍ଦିରର ପୂଜକ ସେ । ଦେବବ୍ରତ ଗାଡ଼ିରୁ ଓହ୍ଲାଇପଡ଼ି ପ୍ରଣାମ କଲେ । ନିବିଡ଼ ଧ୍ୟାନ ।

ହଁ ଶକ୍ତି ସଞ୍ଚୟ କରିଛନ୍ତି ଦେବବ୍ରତ ।

ମୃତ୍ୟୁର ଆଉ ଏକ ଅଭିନବ ରୂପ ଦେଖିବାକୁ ସେ ପ୍ରତୀକ୍ଷା କରିବେ ।

ଅମୃତମୟ ରୂପ !

ଅନନ୍ତ ଶାନ୍ତିପ୍ରଦାୟିନୀ, ପିଙ୍ଗଳକେଶିନୀ ମୃତ୍ୟୁ ଆସିବ ତାଙ୍କ ପାଖକୁ । କେତେବେଳ ଆଉ ବାକି ଅଛି ?

ଏବେ ବି କର୍ତ୍ତବ୍ୟ ରହିଛି କର୍ତ୍ତବ୍ୟର ଶେଷ ନାହିଁ ଯେ । କଣ ହେବ ଏମାନଙ୍କର ? ଦ୍ରୁଙ୍କା—ଦ୍ରୁଙ୍କାର ସନ୍ତାନମାନେ ? ନେତ୍ର ବନ୍ଦ କରି ଧ୍ୟାନ କଲେ ଦେବବ୍ରତ ଦେଖିଲେ ମୃତ୍ୟୁକୁ ଯିଏ ତାଙ୍କ ପାଖକୁ ଆସିଛି ଅମୃତର ଘଣ୍ଟ ଧରି···ଆମନ୍ତ୍ରଣ ଜଣେଇବ । ପିଙ୍ଗଳକେଶିନୀ ଅନ୍ଧ ବଧିର ମୃତ୍ୟୁ···ଆସ ଆସ ତୁମେ ! ଜଗଦୀଶ ହେ···ତୁମ ଇଚ୍ଛା ପୂର୍ଣ୍ଣ ହେଉ !!!

× × ×

ଗାଡ଼ି ଛୁଟିଛି କଟକ ଅଭିମୁଖେ···କପାଳର ରେଖା ଆହୁରି କୁଞ୍ଚିତ । ଅଧର ଆହୁରି ସୁଦୃଢ଼, ସଂକଳ୍ପର ଔଜ୍ଜ୍ୱଲ୍ୟରେ ଆଲୋକିତ ।

ବିରାଟ ଏ ଭାରତର ଜୀବନ-ଦର୍ଶନ । ସାନ୍ତ୍ୱନାର ମହାନ ବାଣୀ ରହିଛି ଆଦ ଗ୍ରନ୍ଥରେ, ଦ୍ରୁତ ଧ୍ୱନିରେ । ମନକୁ ମନ ଗୁଣୁ ଗୁଣୁ ହେଉଥିଲେ ଡାକ୍ତର ଦେବବ୍ରତ ଗାଡ଼ିର ଗତି ସଙ୍ଗେ ସମତାଳରେ—

କେଶବ ମାତୁଳଯସ୍ୟ ପିତା ଯସ୍ୟ ଧନଞ୍ଜୟ
ସୋଽଭିମନ୍ୟୁ ରଣେ ଶେତେ ନିହତଃ କେନ ବାଧତେ !



## ● ମଙ୍ଗଳାବାର୍ ବସ୍‌ଷ୍ଟାଣ୍ଡରେ କେତୋଟି ମୁହୂର୍ତ୍ତ

"ଏ ବସ୍ ଆଉ ଆସିବନି ନା କ'ଣ ? ଆଉ କେତେ ସମୟ ଏମିତି ଅପେକ୍ଷା କରିବାକୁ ହେବ ଶୁଣେ ?"

ପୁଷ୍ଟ ମନ୍ଦରର ଅଭଳା କୁଣ୍ଡୁଆ ଆକାରର ଲମ୍ବା ଖୋସା ଦୋହଲି ଉଠିଲା ଉଦ୍ଧତ ପ୍ରଶ୍ନକାରୀର ଡଙ୍ଗରେ...

ଅପରୂପ ମେଦଶୂନ୍ୟ ଶରୀରେ ଦୋହଲାଇ ପ୍ରଶ୍ନଟି କହିଲା, "ମୁଁ ଗ୍ଭଲିଲି, ଟ୍ୟାକ୍‌ସି ଧରିନେବି । ଅପେକ୍ଷା !! ବା—ବା—ଝକ୍‌ମାଷ୍ଟ ।"

ରମାର ଶାନ୍ତ ନରମ ମାଂସଳ ହାତଟା ଉଦ୍ଧତ କାନ୍ଧରେ ହାଲୁକା ଚାପ ଦେଲା ।

ହସିଲା ରମା । ଲମ୍ବା ବେଣୀ ଉଚ୍ଚ ମାଂସପେଶୀ ଭିତରେ ମୋଡ଼ି ମୋଡ଼ି ହେଉଛି । ହସର ଛୁଟିରେ ଦୋହଲୁଛି...

"ଉହୁଁ, ଏମିତି ବ୍ୟସ୍ତ ହେଲେ ଚଳିବ ନା ! ତୁ ପରା ଅପେକ୍ଷା କରିବୁ ଲୋ ଦୀର୍ଘ ଦୁଇବର୍ଷ ! ଏଥିପାଇଁ ପରା ଆଗ୍ନେୟ ଶପଥ ନେଇଛୁ । ଆଉ ଏବେକରେ କ୍ଲାନ୍ତ !" ସୁଦୀର୍ଘ ଭ୍ୟାନିଟି ବ୍ୟାଗ୍‌ରୁ ଉଙ୍କି ମାରୁଥିବା ସଦ୍ୟପ୍ରାପ୍ତ ଆମେରିକା ଚିଠି ଉପରେ ନଜର ପକାଇ ବୋଧ ଦେଲା ରମା ତାର ନବବିବାହିତା ବାନ୍ଧବୀଙ୍କୁ ପରିହାସର ଭଙ୍ଗୀରେ...

"ଅପେକ୍ଷା ? ପୁଣି ମୁଁ କରିବ ? ପାଗଳ ! ଏଇ ଦେଖ୍, ଆଜି ଏଇ କଲେଜରେ join କରିବ ତ ପୁଣି ଦୁଇମାସ ନ ହେଉଣୁ ଚମ୍ପଟ । Scholarship ଟା ଶୀଘ୍ର ମିଳି ଯିବାର ବ୍ୟବସ୍ଥା ହେଉଛି । ବାପ୍‌ରେ ବାପ୍, ଏମାନଙ୍କୁ ପୁଣି ବିଶ୍ୱାସ ! ଗୋଟାଏ ଅପେକ୍ଷାର ପରିଣତିକୁ ତ ତୁ ଏଠୁ ବେଶ୍ ଦେଖିପାରୁଥିବୁ । ଦେଖିଲୁ ତ ! ଏଇମ । ଦେଖ୍ ନା ଆଲୋ ମୀରାକୁ ! ସାମ୍ନା ଦୋକାନରୁ ସିନ୍ଧ ଚଢ଼େଇ କିଣିବାର ଛଳନା କରୁଛି, ଚିହ୍ନି ପାରୁନୁ !"

"ଏ ତୋର ବଡ଼ ଅନ୍ୟାୟ ପ୍ରଶ୍ନଟି ! ଛଳନା ବୋଲି ଭାବୁଛୁ କାହିଁକି ଶୁଣେ ? ଏମିତି ବି ହୋଇପାରେ, ଅପେକ୍ଷା କରି କରି ତାର ମଧ୍ୟ ଅପେକ୍ଷା ପ୍ରତି

ବନ୍ଧୁସ୍ଥା ଆସିଛୁ । ଏ ଅସହ୍ୟ ଅବସ୍ଥାରୁ ମୁକ୍ତ ପାଇଁ ସିଧା ଦୋକାନଟା ମନ୍ଦ କଣ ଶୁଣେ ?"

"ମାନୁଛୁ ଅସହ୍ୟ ନିଶ୍ଚୟ । କିନ୍ତୁ ଇଏ ନିକେ ଦେଖିଛନ୍ତି କାଣ୍ଡ । ଗ୍ରେଟ ଲେକଟାର ଚିନି ଚିନାଟା ପିଲ ! ନମ୍ବର ୱାନ୍ ପ୍ରତାରକ ! ଆଶ୍ଚର୍ଯ୍ୟ ! ଏବେ ବି ସେ ଦେଇଥିବା ଶାଢ଼ୀଗୁଡ଼ାକ ପିନ୍ଧିପାରୁଛୁ ମାଁଗି ! ମୁଁ ହୋଇଥିଲେ ପୋଡ଼ି ଦେଇଥାନ୍ତି ! ବେଶ୍ ଜାଣେ ମୁଁ । ମୋତେ Avoid କରିବାକୁ ସେ ଦୋକାନକୁ ଯାଇଛୁ । ଆଚ୍ଛା, ସେ ବି କ'ଣ ବଡ ଯାଏ ଏଇ ବଜାରେ ?"

"ନିଶ୍ଚୟ ! ଖାଲି ସେ ନୁହେଁ, ଅନେକ । ଆମର ପ୍ରାପ୍ୟ ପରିଚିତା ! ମାଆଙ୍କ ଦେହ ଖରାପ ଯୋଗୁ ମୁଁ ତ ଦୁଇବର୍ଷ ହେଲା ଏମିତ ସିଧା ଆସିବା କରୁଛୁ । ମଣିଷ ଜୀବନର ଗୋଟିଏ ଚମତ୍କାର ସମୀକ୍ଷା କରିହୁଏ ଏଇ ବସ୍ ଷ୍ଟାଣ୍ଡରେ । ପୁଣି ବସ୍‌ରେ ସହଯାତ୍ରୀ ଭାବରେ । ଅଦ୍ଭୁତ ସୁନ୍ଦର !"

"ଆହା ଚମତ୍କାର, ସୁନ୍ଦର ! ମରୁଳୁ ତୁ; କି ଚେଷ୍ଟା !" ସୁରଭିତ ରୁମାଲଟା ନାକରେ ଗୁଞ୍ଜି ପଛକୁ ଫେରି ଆସିଲି ପ୍ରିୟତୀ ।

ଗହଳି ଜମି ଆସିଲଣି । ନାନା କିସମର ଯାତ୍ରୀ ଅପେକ୍ଷାରତ ।

"ଦେଖ, ଦେଖ ଟର୍ଣ୍ଣେଲ ତ ନୁହେଁ । ଆଲେ ଟୋଟିଏ ଛାତର ବଜାର ଉଠେଇ ଆଣିଛୁ । ଢଙ୍ଗ ଦେଖ, ନେତାଙ୍କୁ ଦେଖ । ପାଇଜାମା ଉପରେ ଫୁଲ୍‌ସାର୍ଟ । ପୁଣି ଜାମା ବୋତାମ ଖୋଲା । ଓଠରେ ସିଗାରେଟ୍ । ସେ ଛିଟ ସାର୍ଟକୁ ଦେଖିଲୁ ! ବେଲ୍‌ବଟମ୍ ପିନ୍ଧି ଲମ୍ବା କାଲି ରଖି ବାବୁଙ୍କର ହିପ୍‌ପୀ ହେବାକୁ ମନ ଦେଖ ! ଆହା ଯେଉଁ ତ ଚେହେରା ! ଛି—ଛି— ପଛଆଡ଼ୁ ହିପ୍‌ପୀ ହେବ ଇଏ । ବୁଢ଼ାକୁ ଦେଖୁନୁ ଶୁଖୁଆ ଯାଉଛୁ ସେ (ଇସ୍ କି ଗନ୍ଧ) ହଉକି କମ୍ ତ ନୁହେଁ !

ଦେଖୁନୁ ରମା; ପୁଣି ଯୋଡ଼ା ବେଣୀ । ଢଙ୍ଗରେ ନାଲି ରିବନ । ମା ଲୋ, କି କଟି ମିଟିଆ ହଳଦିଆ ନାଇଲନ୍ ଶାଢ଼ୀ ! ତଳେ ପୁଣି ନାଲି ସାୟା ସେ ରିବନ ' ସିଂଗାଣିନାକା ହେଲ କଲା କୁଟୁ କୁଟୁ ପିଲଟା କୋଳରେ । ଦେଖୁଛୁ; ପୁଣି ଦୋକାନ ଆଗରେ ଟ୍ରଙ୍କଟା ଉପରେ ବସି ପଡ଼ିଛୁ । ଛି—ଛି—ଏ ମାଆ—ବ୍ଲାଉଜର ବୋତାମ ଖୋଲଲଣି ସେ ! ଇସ୍ ମୁଁ କିନ୍ତୁ ମରିଯିବି । ରାକ୍ଷସ ପିଲଟା ପୁଣି ମୁହଁ ଲଗାଇ ଗ୍ରେପି ଦେଲଣି ଲେ । ରମା; ମୁଁ କିନ୍ତୁ ଏ ବସ୍‌ରେ ଏମିତ ସବୁବେଳେ ଆଦୌ ଯାଇପାରିବି ନାହିଁ । ପଛେ ଗ୍ଲୁକସାରୁ ରିଜାଇନ୍ ଦେଇ ଘରେ ବସିବି । କିନ୍ତୁ ଏ ଅସମ୍ଭବ । ଆଚ୍ଛା ତୁ କ'ଣ ଭୁବନେଶ୍ୱରରେ join କଲ ଦିନଠୁ ଏମିତ ଯାଉଛୁ ?"

"ସେଇ ବନଠୁ ଯାଉଛୁ । ଆଉ ସିଏ ବି ସେଇବନଠୁ ଯାଉଛି । ଚିହ୍ନିଲୁ ତ ? ଏଇ କମଳା କଣୁଛି ମ !" ହସି କରି ରମା ଇଙ୍ଗିତରେ ଦେଖାଇ ଦେଲା ।

ସାଧା ସିଧା ହୁଗୁଲା ବେଣୀ ଝୁଲି ପଡ଼ୁଛି ବେକ ତଳକୁ । କଇଁପଡ଼ କମଳା କଣୁଛି ସିଏ । କାନ୍ଧରେ ଝୁଲୁଛି କଳା ଭ୍ୟାନିଟି ବ୍ୟାଗ୍ । ଧଳାଶାଢ଼ୀ ପିନ୍ଧା ବେଣୀଗୁଛା ପଛରୁ ଚିହ୍ନା ଚିହ୍ନା ମନେହେଲା ଛବିରାଣୀର...

ଛବିରାଣୀର ଉଜ୍ଜ୍ୱଳ ଖୋସା ଭିତରୁ ବନ୍ଦ ହେଲା । ନମସ୍କାର ହେଲା, ବୁଲେଇ ଚାହିଁଲା ଛବିରାଣୀ । "କମଳା କଣୁଛି ସେ କିଏ ଲୋ ? ମୋତେ ଚିହ୍ନିଲା ଚିହ୍ନିଲା ପରି ଲାଗୁଛି ମ !"

"ଉହୁଁ, କମଳା କଣୁନି ଲୋ । ତୋ ଭୟରେ କଣିବାର ଛଳନା କରୁଛି । ମାନେ ତତେ Avoid କରିବାକୁ ଚାହେଁ କାରଣ ସେ ତତେ ତୁ ଆଜି ନୂଆ, ତହିଁରେ ପୁଣି କୃଶାଙ୍ଗିନୀ, ସୁଦର୍ଶନା, ଅନନ୍ତ ଯୌବନା ଉର୍ବଶୀ । ଆଉ ସିଏ ସବୁ ହରାଇ ଦେବାଲିଆ ।

ଛବିରାଣୀର ଉଗ୍ର ଆଧୁନିକା ବେଶଭୂଷା ଓ ସଦ୍ୟଚିତ୍ରା ସିନ୍ଦୂର ବିନ୍ଦୁକୁ ନିରେଖି ଚାହିଁ ରମା ଅର୍ଥପୂର୍ଣ୍ଣ କଟାକ୍ଷ ହାଣିଲା ।

ବହୁ ଯତ୍ନସଂରକ୍ଷିତ ଆପଣାର ମେଦଶୂନ୍ୟ ଦୀର୍ଘ ଶରୀର ଉପରେ ଆଖି ବୁଲେଇ ଆଣି ପରମ ତୃପ୍ତିରେ ହସିଲା ଛବିରାଣୀ । ପରିମିତ ଆହାର, ବ୍ୟାୟାମଲବ୍ଧ ତାର ଏଇ ଶରୀରଟା ସବୁରି ଈର୍ଷାର ଲକ୍ଷ୍ୟସ୍ଥଳ ।

ସେ ଖାଲି ସୁନ୍ଦରୀ ନୁହେଁ, ବୟସକୁ ଧରି ରଖିବାରେ ତାର କୃତିତ୍ୱ ଯେ ପ୍ରଶଂସନୀୟ ।

ଅଧ୍ୟାପିକା ରମା ଅବିବାହିତା । ସେ ତାର ସହପାଠିନୀ । ହେଲେ ରମା ତୁଳନାରେ ଛବିରାଣୀ କେତେ ଅଳ୍ପ ବୟସୀ, କେତେ ସତେଜ, କେତେ ପ୍ରାଣବନ୍ତ !

ଛବିରାଣୀ ଅସନ୍ତୁଷ୍ଟ ହେଲା—ଏ ବଡ଼ି ଷ୍ଟାଣ୍ଟଟା ଆଦୌ ଭଲ ଲାଗୁନି !

"ବ୍ଲେପାଉଡ଼ା", ଗୃପା ଓଠରେ ଦାନ୍ତର ଘର୍ଷଣ ଅନୁଭବ କଲା ସିଏ,

ମଲା କହୁନୁ, କିଏ ବା ସିଏ ? ବୁଢ଼ୀଟା ପରି ଦିଶୁଛି ପଛରୁ । ସେ ହୋ କଣୁଛି ତ କମଳା ! ଆହା ଅସନ୍ତେ କଣା ଲୋ ! ତୋର ଗୋଟାଏ ସବୁଥିରେ ଢଙ୍ଗ । କିଏ ବା ସିଏ ? ଆମ ସାଙ୍ଗ କହୁବୁ ତ ! ଆଗ ଗୋଟାଏ ଟୌରିଚନ୍ଦ୍ରିକା କରିବା ଅଭ୍ୟାସ ।

"ଆଉ ସିଙ୍ଘ ଚଟ୍ଟୋଇ ଗ୍ରୁପ୍ ଏବେ ଠିକ ହାତୀ କଣା ଗଳିଛୁ ଯାହାର ତାଙ୍କୁ ଦେଖୁ ନା ? ତୋର ମନେ ଅଛି ନା ? ସେ କେମିତି ମେଣ୍ଟ ଧରୁଥିଲ ବଦେଶୀ ଶାଢ଼ୀ ଓ ଗଢ଼ ପ୍ରଦର୍ଶନୀ ମହିଳା କଲେଜର ସେହି ଚମତ୍କାର ବେଦୀ ଉପରେ ? Romantic Cornerରେ ଆମେ ଲୁଚି ଲୁଚି ତା'ର ବହୁତ ଚଠି ପଢ଼ିଛୁ ! କିଏ ଜାଣିଥିଲ ସବୁ ମିଛ । ପ୍ରତିଶ୍ରୁତିର ଗୋଲ୍ଡବାଲ ବୋଲି !"

"କିନ୍ତୁ ଆଶ୍ଚର୍ଯ୍ୟ ! ଏତେ ଘଟଣା ପରେ ବ ତ ସେ ବେଶ୍ ସାଜ ପାରୁଛି ! କ'ଣ ପରା foreign firm ରେ ଚାକିରୀ କରୁଛି ? ଓହୋ; ତେବେ ସେ ସନ୍ଦରେ ସିଙ୍ଘ ଜନକ କଣ୍ଠ । ଇଏ ପରା ଲେଖିଛନ୍ତି ଯୋଡ଼ାଏ ତାଙ୍କେସି ଫୁଲ ଓ ସିଙ୍ଘ କାମ ପାଇଁ ! ଉପହାର ଦେବେ ସେଠି । ମତେ ଖୁବ ଡର ଲାଗୁଛି ଲେ ! ଦେଖୁନୁ ମାଙ୍କର ଭାଗ୍ୟ । କିଏ କ'ଣ ଭାବିଥିଲ ସୁରେଶ ଏମିତି ଧପ୍‌ପାବାଜି ଖେଳୁଛି ବୋଲି ? ମୁଁ କିନ୍ତୁ ନିଶ୍ଚୟ ଦୁଇମାସ ଭିତରେ ଚାଲିଯିବ । Foreignରେ ସ୍ୱାମୀମାନେ ରହିଲେ ସେମାନଙ୍କୁ ଜମା ବିଶ୍ୱାସ ନାହିଁ ଲେ !"

"ବିଶ୍ୱାସ କ'ଣ ଘରେ ରହିଲେ ? ସବୁବେଳେ ମିଥ୍ୟା ପ୍ରତିଶ୍ରୁତିର ଗୋଲ୍ଡ-ବାଲି ଉପରେ ଘର ବାନ୍ଧେ ନାହିଁ ! ଦେଖିଲୁ ଏଇ ଗାଡ଼ି ନମ୍ବରଟା ଆମେ ମୁଖସ୍ତ କରି ନଥିଲେ । ଚହ୍ନି ପାରିଲୁ ? ଚାହାଁ ଲେ ! ଏଇବାଟେ ଚାଲ ମ ଭୁବନେଶ୍ୱର !"

"Sure, Sure, ଚହ୍ନିବନ ! ସାମ୍ନାରେ ତେବେ ଟିଉଲ ବସିଥିଲ ନା ? ବାଃ କେତେ slim ଅଛି ମ ! ଦେଖୁଛୁ; ଦେଖ କେବେଠୁଁ ବାହା ହେଲେଣି ସିଏ, ତୋଟାଏ ଯୁବତୁ ଅଧିକ । ଆଖି ମାଡ଼ି ଟିକେ ଚେହେରାକୁ ଦେଖ, ପୁଣି ପୁଅଟେ ଅଛି ଲେ ! ଖୁବ ଭାଗ୍ୟବତୀ ଲେ ! strange; ଆମକୁ ସିଏ କ୍ୟାଣ୍ଡିନ୍‌ରୁ ଧୂମ୍ ଝୁଆଏ ନା ଲେ !' ଦିନ୍ ଘଡ଼ି ବଦଳାଇ ଆସେ ।"

ପ୍ରତିଟୀର ସାଜଲ ଓଠ ଦଫାଲ ପ୍ରସାରିତ ହେଲ । "ଚମତ୍କାର ଯୋଡ଼ି ! ଅଦ୍ଭୁତ ସୁନ୍ଦର ଦିଶୁଛି ସିଏ ! ଏବେ ବ, ଆଶ୍ଚର୍ଯ୍ୟ ' ଆଉ ତୁ ଆମର ବୁଢ଼ୀ ହୋଇ ବସିଥା ! ଦେଖୁଛୁ ତ, ଟିକିଏ ଆଖି ମାଡ଼ି ଦେଖ ତାଙ୍କୁ ।"

ପ୍ରତିଚୀ କଣ୍ଠରେ ପ୍ରଚ୍ଛନ୍ନ ଈର୍ଷା ।

ରମା ଆଖିରେ ନରମ ଦୁଷ୍ଟାମୀ ହସ । "ମୁଁ ତ ଦେଖୁଛି ! ତୁ ଟିକିଏ ଦେଖ । କ'ଣ ଆଉ ଦେଖିଲୁ, ଆଲେ ଏଇଟା ପରା ନୂଆ ଫିଆଟ୍ । ଖାଲି ନମ୍ବରଟା ପୁରୁଣା । ପୁରୁଣା ପ୍ରତି ବହୁତ ମାୟା ତାଙ୍କର । ଦେଖୁନୁ, ଅମରେଶବାବୁଙ୍କୁ ଧନ୍ୟବାଦ ଦେବା

କଥା । ଅନ୍ତତଃ ପୁରୁଣାର ଏତିକ ଚିହ୍ନ ଏବେ ବି ଅଛି । ବାକୀ ସବୁ ଝକମକ ନୂଆ । ଦେଖିଲୁ—କମଳା କିଣା ତାର ଏବେ ବି ସରିନି । ଆଉ ସବୁଠୁ ମଜା କଥା କ'ଣ ଜାଣୁ ? ଏତେ ଦରଦାମ୍ କଷି କଷି ପରେ ସେ ମାତ୍ର ଦୁଇଟି କମଳା କିଣିବେ ଶେଷରେ ଖାଇବା ପାଇଁ । ଲାଇବ୍ରେରୀ ବନ୍ଦ ହେଲେ ଆସିବ ଯେ, ଫେରୁ ଫେରୁ ସନ୍ଧ୍ୟା । ଏବେ ସେ ପିଆଜ ରସୁଣ ସବୁ ଛାଡ଼ି ଦେଇଛନ୍ତି ଲୋ । ହେଉଛି ଏ ଆଡ଼େ ଆସୁଛି । ଚିହ୍ନିଲୁ ତ ଏଥର ତାକୁ ?"

ପ୍ରୀତି ଚମକି ଚାହିଁଲା । ଗୋଟେ ଗମ୍ଭୀର ହସଟା ଆଖିରୁ ଖସେଇ ଆସିଲା ତଳକୁ ।

ଆରେ, ଏ ତ ଶିଉଳି ! ଇସ୍ କି ଅସମ୍ଭବ କେମ ବୁଢ଼ୀ ହୋଇଯାଇଛି ! ସାମ୍ନାର ସବୁ ବାଳଗୁଡ଼ାକ ଧଳା ହୋଇଗଲାଣି । ରଙ୍ଗ କେତେ କମିଛି ରମା !"

ରମାର ହାତଟା ଚିପି ଧରିଲା ପ୍ରୀତି ଅସହାୟ ଭାବରେ…

ଅଧ୍ୟାପିକା ପ୍ରୀତି

ଶିଉଳିର ସହପାଠିନୀ ପ୍ରୀତି…

ସଦ୍ୟବିବାହିତା ପ୍ରୀତି ଯିଏ ଦୀର୍ଘ ଦୁଇ ବର୍ଷ ପରେ କଟକ ଆସିଛି । ଆଉ ପ୍ରଥମ ଥର ପାଇଁ ବସ୍ଷ୍ଟାଣ୍ଡରେ ଅପେକ୍ଷା କରିଛି ଭୁବନେଶ୍ୱର ବସ୍‌କୁ…

ପ୍ରୀତିର ସୁଦୀର୍ଘ କୃତ୍ରିମ ଜୁଡ଼ା ଭାରସାମ୍ୟ ହରାଇ ବସୁଛି ଯେ । ପ୍ରୀତି କଣ୍ଠରେ ଆବେଗ—"ତେବେ ଅମରେଶ୍ ପାଖରେ ଯିଏ ବସିଥିଲା, ସିଏ କିଏ କହୁନ ରମା ?"

( ଧଳା ଶାଢ଼ୀ, ହୁଗୁଳା ଖୋସା ତପସ୍ୱିନୀ ମୂର୍ତ୍ତି ଫେରିଗଲା, ଧୂପକାଠି କିଣୁଛି ସିଏ )

ରମାର କଣ୍ଠ ଶୁଷ୍କ । "ସିଏ ଅଲକା, ଆମଠାରୁ ଦୁଇବର୍ଷ ଜୁନିୟର । ଭଲ ନାଚେ । ରେଭେନ୍ସାରେ କାମ କରୁଥିଲା । ରିଜାଇନ୍ ଦେଇ ନୂଆ ଏଇ କାମରେ ଯୋଗ ଦେଇଛି । ଜାଣୁ, ଅମରେଶ୍ ଏଯାଏଁ ଶିଉଳିକୁ Divorce କରିନି ଲୋ । ତଥାପି ସେ ସରକାରୀ ବ୍ଲକଘରେ ଅଛି । କଟକରେ ରହୁଛି । ନିତି ଭୁବନେଶ୍ୱର ଯାଏ । ପୁଣି ଏଇ ସମୟରେ ଏଇ ବାଟେ ଶିଉଳି କମଳା କିଣୁଥାଏ, ବୋଧହୁଏ Avoid କରିବା ପାଇଁ ?"

( ଧୂପକାଠି କିଣୁଛି ଶିଉଳି, ନିଜକୁ ଜାଳି ଅନ୍ୟକୁ ସୁରଭି ବାଣ୍ଟିବା କ'ଣ ତାର ଧର୍ମ ? )

ତଥାପି…

ଶିଉଳିର ରେଖାଯୁକ୍ତ ଶିରାବହୁଳ ମୁହଁରେ କଣ ଈର୍ଷାର ମ୍ଳାନ ଛାୟା ? ତେବେ ଶିଉଳି ପାଖକୁ ଆସୁନି କାହିଁକି ???

ଶିଉଳି ଆସିବନି ! ଆପଣାର ଚମତ୍କାର ରଙ୍ଗିନ ଜୀବନ ନାଟ୍ୟର ବମୁଗ୍ଧ ଧା ଦର୍ଶକମାନଙ୍କ ଆଗରେ ତାର ଭଗ୍ନ ବିପର୍ଯ୍ୟସ୍ତ ଜୀବନର ଛୁଟବସ୍ଥା ଏମିତି ଅସହାୟ ଭାବରେ ମେଲି ହୋଇଗଲା ଯେ !

ଶିଉଳି କଣ ଫେରସିବ ବସ୍ ନ ଧରି ??

ରୁମାଲରେ ବାରମ୍ବାର ବେକ ଓ ମୁହଁରୁ ଝାଳ ପୋଛୁଥିଲା ଶିଉଳି ।

ସେ ଇତସ୍ତତଃ ହେଲା ।

କିନ୍ତୁ ଫେରି ପାରିଲା ନାହିଁ ସୁବ୍ରତ ଜନନୀ ଶିଉଳି !

ଘଡ଼ିକୁ ଚାହିଁଲା "ଇସ୍ ବସ୍‌ଟା କେତେବେଳେ ଆସିବ ଯେ ! ଅସହ୍ୟ ଏ ଅପେକ୍ଷା !"

"ବସ୍‌ଟା କେତେବେଳେ ଆସିବ ଯେ" କହି ଦୋକାନ ଭିତରକୁ ଅସ୍ତବ୍ୟସ୍ତ ହୋଇ ପଶି ଆସିଲା ସିଏ ସିଏ ଶିଉଳି ନୁହେଁ, ଲାବଣ୍ୟ !

ଲାବଣ୍ୟର ଶରୀରରେ ଲାବଣ୍ୟ ନ ଥିଲା । ତେଣୁ ବିଦାୟର ପ୍ରଶ୍ନ ନାହିଁ । କିନ୍ତୁ ଲାବଣ୍ୟର ପ୍ରତିବନ୍ଧକ ସ୍ଥାପନ କରିବା ନିମନ୍ତେ ପ୍ରଚେଷ୍ଟାରେ ଭଲେ ହେଲେ ଘାଟି ନାହିଁ ତାର ! ଅସମ୍ଭବ ମେଦ ବୃଦ୍ଧି ହେତୁ ଧଇଁ ସଇଁ ହେଉଛି ଲାବଣ୍ୟ । ଦାମୀ ଶାଢ଼ୀ, ଦାମୀ ଘଡ଼ି, ଦାମୀ ଚଟି, ଗହଣାରେ ଝଲମଲ କରୁଛି ଲାବଣ୍ୟ । ଖୋସା ନୁହେଁ ତ, ଟେବୁଲ ଫ୍ୟାନ୍ ଦୋହଲୁଛି ପବନରେ ।

"ଏ ବସ୍‌ଟା କେତେବେଳେ ଆସିବ ? ବାରମ୍ବାର କହୁଛି ମୋର ଜରୁରୀ କାମ । ଏ କଥା ନ ଶୁଣି କାର୍ ନେଇ ଚାଲିଗଲେ । ଟେଲିଫୋନଟା ପୁଣି ଖରାପ । ହୋପ୍‌ଲେସ୍ । ଓହୋ ! କି ଗରମ !"

ମୁଣ୍ଡରେ ଟେବୁଲ ଫ୍ୟାନ୍ ହଲୁଛି । ତଥାପି ମୁହଁରୁ ଝାଳ ପୋଛୁଥିଲା ଲାବଣ୍ୟ । ରମାକୁ ପ୍ରଶ୍ନ କଲା ।

ରମା ହସିଲା ପରିଚିତ ହସ···

"ଏଇ ଆସିସିବ ବେଳ ହୋଇଗଲାଣି ଯେ !"

ଲାବଣ୍ୟ ରମାର ଗ୍ରାହୀ ରଚତାର ମାଆ । ରମା କହିଲା ଶୁଣ ଆଉ ମଜାକଥା କେବଳ ମୋର ନୁହେଁ ଲେ ତୋର ମଧ ସିଏ ସହପାଠିନୀ । କଲିଜ ଶ୍ରେଣୀରେ ଫାଷ୍ଟ ବେଞ୍ଚରେ ବସେନି ଲେ ସେ ! ଭାରି ଷ୍ଟାଇଲ୍ କରେ । ଆମେ ପୋଟଲ ବୋଲି ଚଡ଼ାଉ । କଲେଜଛକ ବସ୍‌ରେ ଆସୋ କଣ୍ଟାକ୍‌ଟର୍ ଝିଅ ୮ ମନେ ନାହିଁ କିଲେ ?"

ଫିସ୍ ଫିସ୍ କରି ପ୍ରତିତାର କାନ ପାଖରେ କହିଲା ରମା "ଆଲେ ରାଗିଗଲୁକି ? ନିଜକୁ ବହୁତ ବୁଢ଼ୀ ପରି ମନେ ହେଉଛି ତୋର ନୁହେଁ ଲେ ଆମମାନଙ୍କୁ ଦେଖି !"

"ଚୁପ୍ କର ମୋ ଏ ଗୋଟାଏ ବସ୍ ଷ୍ଟାଣ୍ଡ ନା ଚିଡ଼ିଆଖାନା ! ମତେ ତୁ ମାରିଲୁ ।"

( ଲବଣ୍ୟ ନୂଆ ଡ଼ିଜାଇନ୍ ର ଟି ସେଟ୍ ଦେଖୁଛୁ ! ଉପରେ ପଙ୍ଖା ଘୂରୁଛୁ । )
'ଚିଡ଼ିଆଖାନା ତ ଏ ସଂସାରଟା ଜାଣିନୁ' ହସିଲ ରମା " ମୁଁ ପାଗଳ ହୋଇଯିବି ତୋ କଥା ଶୁଣି । କୋଉ କ୍ଲାସରେ ନାଇନ୍ ରେ କିଏ ପଢ଼ୁଥିଲା ? କଟକ ଭୁବନେଶ୍ୱରରେ ମାଡ଼ି ହୋଇ ବହି ବରଷକୁ ବରଷ ଗୋଟାଏ ଗୋଟାଏ ଭଉଣୀ ବାହାକରି ନିଜେ ତ ବାହାହେବା ଆଗରୁ ଆଈ ହୋଇ ବସିଲୁ । ସେଥିରେ ଗୋଟାଏ ସୂଚନା କେନ୍ଦ୍ର ଖୋଲି ସମସ୍ତଙ୍କୁ ବୃତ୍ତି କରାଇବା ହିସାବ ଖୋଲି ବସିଥାଅ । ଏସବୁ ଦେଖି ମୋ ବାଲବୁଢ଼ାକ ପାଚିବାକୁ ଆରମ୍ଭ କଲାଣି । ରମା ! ଚାଲ ରେକ୍ସା ନେଇ କଲେଜଛକରୁ ଟ୍ୟାକ୍ସି କରି ଯିବା । ମୋ ନିଃଶ୍ୱାସ ବନ୍ଦ ହୋଇଯାଉଛି । ସମୟ ହେଲାଣି । ତୁ ଯିବୁ ନା ନାହିଁ ଶୁଣେ ?"

( ଚଉକିରେ ବସିପଡ଼ି ହାଇ ମାରୁଛୁ ଲବଣ୍ୟ । ଜରଦାଖିଆ କଳାଦାନ୍ତ-ଗୁଡ଼ାକ ଅପନା ଦିଶୁଛୁ । )

ରମା ପ୍ରିୟତମା ହାତରେ ମୃଦୁ ଚାପ ଦେଲା । "ସମସ୍ତ ହୋଇନ ଲୋ ! ଚାହାଁନା ଦେଖିବୁ କେତେ Competent ଏ ଭଦ୍ର ମହିଳା ନା । ଚେଷ୍ଟିବୁ କହ ? ଚମତ୍କାର ଶିକାର୍ । ମାଛଧରା ତାଙ୍କର ହବି । ମାଛ ଏମିତି ସେମିତି ନୁହେଁ ଲୋ ! ଖାଲି ରୋହି ! ମାଛମାନଙ୍କରେ ରାଜା । ଟିକେ ଦେଖନା ।"

ଲବଣ୍ୟ ପଙ୍ଖାତଳେ ବି ଝାଳରେ ଗାଧୋଇ ପଡ଼ିଲେଣି । ପାଖ ବେଞ୍ଚରେ ବସିଲି ରମା । ପ୍ରିୟତମାକୁ ଯୋର କରି ବସାଇଲା । ଲବଣ୍ୟ ହସିଲି ପରିଚୟର ସୂଚନା ପରେ କଥା ଆରମ୍ଭ କଲା ରମା ।

"କ'ଣ କେମିତି ଚାଲିଛି ? ଦିନ ତ ପାଖ ହୋଇଗଲା ।"

ଲବଣ୍ୟ ଗମ୍ଭୀର ଭାବରେ କହିଲେ—"ଚାଲି ତ ଥିଲି ବେଶ୍ । ପ୍ରାୟ ସମାନ ସମାନ ଥିଲୁ ଆମେ । ଏବେ ଟିକିଏ ଗୋଳମାଳିଆ ଆଡ଼କୁ ଗତି କରୁଛି । ତୁମେ ତ ଜାଣ, ମୁଁ ମଧ୍ୟ Competition କୁ ଆଦୌ ଡରେ ନାହିଁ । ସେ ନିଧିଦାସ ଭାବୁଛି ଟଙ୍କାବଳରେ ସେ ଜିତିଯିବ । ଗତଥର ମଧ୍ୟ exactly ଏହି situation ହୋଇ-ଥିଲି । ଶେଷକୁ ଗୌର ଦାସ ପାରିଲା କି ? ବାଧ୍ୟ ହୋଇ ହାରିଲା । ସେ ବି ତ ସୁଅ ମୁହଁରେ ଟଙ୍କା ବୁହାଇବାକୁ ପଛାଇ ନ ଥିଲା । କ'ଣ ହେଲା ଦେଖିଛ ତ ?"

ଭଦ୍ରମହିଳା ଓଠ ପ୍ରସାରିତ କଲେ । ଗର୍ବରେ ଗାଲ ତଳର ପେଶୀଗୁଡ଼ାକ ଝୁଲି ଆସିଲା ତଳକୁ ।

"ଏମାନେ ଅସଲ କଥାଟା ଜାଣନ୍ତି ନାହିଁ ! ଏସବୁ ଧନ୍ଦାରେ ନିଜକୁ ଧାଁ-ଧପଡ଼ କରିବାକୁ ହୁଏ । ଲୋକ ଲଗେଇ କାମ ହେଉନାହିଁ ଆଜି କାଲି ! ଯେଉଁ ହାତେ ଯିଏ ବାଇଶି ଫାଲ । ଆଙ୍ଗୁଠି ଦେଖେଇଲେ ବାହା ଗିଳିଦେବେ । ଆରେ ବାବା, ଟଙ୍କା ମତେ ଟଙ୍କା ପକେଟ୍‌ରେ ପଶିଲା, ଆରାମରେ ଘରେ ଶୋଇଲେ । ମୁଁ କିନ୍ତୁ ଘରେ ସବୁରି ସାଙ୍ଗରେ ଡାଇରେକ୍ଟ କଣ୍ଟାକ୍ଟ କରେ । Agent ଦ୍ୱାରା କାମ ମୋର ଆଦୌ ପସନ୍ଦ ନୁହେଁ । ହେଇ ଦେଖ କାର୍ ନାହିଁ ତଥାପି ବସ୍‌ରେ ଯିବାକୁ ସକାଳୁ ଆସିଲି । ନ ଗଲେ ନ ଚଳେ । ଭାବ ତ, କେତେ Strain ନେବାକୁ ହେଉଛି ମତେ !

ଚୁଡ଼ଚୀ ରମାକୁ ଚିମୁଟି ପାରିଲାଣି । ଗୁନ ଗୁନ କହିଲା; "ଏ ଭଦ୍ରମହିଳା କ'ଣ ଇଲେକ୍‌ସନ୍‌ରେ କଣ୍ଟେଷ୍ଟ କରୁଛନ୍ତି ?"

"ହୁଁ" ଜବାବ ଦେଲା ରମା ।

ପୁଣି କଥା ବଢ଼େଇଲା, "ଗୋଲମାଲଟା ପୁଣି କିଏ କଲା, ସେହି ନିଧି ଦାସ ?"

"ଉହୁଁ—ଆଉ ପାର୍ଟି, ମନ୍ତ୍ରୀ Interfere କରୁଛନ୍ତି । ଭୟ ଦେଖାଇ ଜାଲରେ ପକାଇବାର ଗୋଟିଏ ଫନ୍ଦି । ହେଲେ କିଏ ଡାଲେ ଡାଲେ ଗଲେ ମୁଁ ପତ୍ରରେ ପତ୍ରରେ ଯିବି । ମୁଁ କ'ଣ ନୂଆ ହୋଇଛି ଯେ ଡରିବି । କ'ଣ କହନ୍ତିନା କଂସାରି ଘରର ପାରା ସେ ପୁଣି କୁଳି ଡାଉଁ ଡାଉଁକୁ ଡରିବ ? ମୁଁ ବେଶ୍ ଶୁଣେଇ ଦେଇଛି । ଖାଲି ବୟସ ବଡ଼ କଥା ନୁହେଁ ମୋର extra qualification ଅଛି । ପୁଣି ମୁଁ Graduate । ସବୁତ ପୁଣି ଦେଖିବାକୁ ହେବ ! କାଲି ଫଟୋକୁ ବସି ବସି ୪୦ଟା କପି ଆଣି ରାତିକୁ ଘରକୁ ଫେରିଲି । ଫଟୋଗୁଡ଼ାକ ପୁଣି ସବୁ groupକୁ Appeal କଲାପରି ହେବା ଦରକାର । ମୁଁ ଗୋଟିଏଟା ଗ୍ରୁପ୍‌ରେ ଭାଗ କରି ଦେଇଛି ।"

ରମାକୁ ପୁଣି ଚିମୁଟିଲା ଚୁଡ଼ଚୀ । କାନ ପାଖରେ ଫିସ୍ ଫିସ୍ କରି କହିଲା "ଏହି ଭଦ୍ରମହିଳାଙ୍କର ୪୦ଟା ଫଟୋ election ପାଇଁ ! ପୁଣି ସମସ୍ତଙ୍କୁ ppeal କରିବ ! ହରିବଲ ! (Horrible) ରମା !"

ଏଣେ ରମାର ପିଠି ଦରଜ ହେଲାଣି ଚିମୁଟା ଖାଇ ଖାଇ । ରମା ଓଠ ଚିପି ହସ ରୋକୁଛି । "ଫଟୋ ଗୁଡ଼ାକ ଆଗେ ଦେଖ ନା !"

ଉତ୍କଣ୍ଠିତା ହୋଇ ନଇଁ ପଡ଼ୁଛି ପ୍ରଭାତୀ । ଝୋପାଟା ଝୁଲି ପଡ଼ିବ ବୋଧହୁଏ । ଅତ୍ୟଧିକ କୌତୂହଳରେ ଅସତର୍କ ହୋଇ ପଡ଼ୁଛି ପ୍ରଭାତୀ । ଅଭଡ଼ା କୁଡ଼ିଆ ଦୋହଲୁଛି, ତାର ନାଭିକେନ୍ଦ୍ର ବିଚଳିତ ହେଲାଣି ।

ଗୁଡ଼ାଏ ସୁଦୀର୍ଘ ଲଫାପା । ଗୋଟି ଗୋଟି କରି ଦେଖାଇବାକୁ ଲାଗିଲେ ଲାବଣ୍ୟ । ପ୍ରଥମ ଲଫାପା ପ୍ରାର୍ଥୀ ପାଇଁ ବିଭିନ୍ନ ପୋଜ୍‌ରେ ୮ଟି ଫଟ । ବ୍ୟାଡ୍‌ମିଣ୍ଟନ ର୍ୟାକେଟ୍ ସହ ସ୍ଲାକ୍‌ସ ପିନ୍ଧା, ସାବ୍ୱ, ଶାବ୍ୱ ପିନ୍ଧା, ନୃତ୍ୟର ବିଚିତ୍ର-ଠାଣି, ଗାଓଲେନ୍ ସହ ଶାଢ଼ୀପିନ୍ଧା ଫଟ ସୁରୁଚି ସମ୍ପନ୍ନ ।...ସାଲଓ୍ୱାର ପଞ୍ଜାବୀ ପୁଣି ବେଲ୍‌ସ୍ ପିନ୍ଧା ଫଟ ଗୋଟେ ଆର୍କରେ ସାର୍ଟ ଓ ବେଲ୍‌ବଟମ୍ । କିଏ ?

ପ୍ରଭାତୀ ନିଜ ଜୁଡ଼ାକୁ ସମ୍ଭାଳିବାକୁ ଭୁଲି ଯାଇଛି । ଜୁଡ଼ା ଦୋହଲୁଛି ଅଚାନକ ବାତ୍ୟାରେ ।

ହସିଲା ରମା । "ଏଗୁଡ଼ାକ ଜୋଇଁଙ୍କ ପାଇଁ ନା ? ଆଉ ଆର ଲଫାପା ?" "ଦେଖ୍‌ନା" ଲାବଣ୍ୟର ମୁହଁ ଆତ୍ମପ୍ରସାଦରେ ଉଜ୍ଜ୍ୱଳ ଦେଖାଗଲା ।

ପୁଣି ଓଠରେ ପାନ ପୂରାଇଲେ ଲାବଣ୍ୟ । ବିଜୟିନୀର ହସ ଲାବଣ୍ୟ ଓଠରେ ।

ଶାଶୂ ଶ୍ୱଶୁରଙ୍କ ପାଇଁ ।

ଭିନ୍ନ ପରିବେଶରେ ଅପୂର୍ବ ଫଟ—ଶତା ଦେଉଛି ଚେତା, ଚନ୍ଦନରତା ଚେତା, ଶାଦା ଶାଢ଼ୀପିନ୍ଧା ଗାଉଁଲିଟିଆ ଚେତା, ଲୁଗା କାଚୁଛି ଚେତା; (ନେକ୍‌ସ ବିଜ୍ଞାପନ) ଠାକୁରଘରେ ପୂଜାରତା ଚେତା, ଫୁଲ ତୁଳୁଛି ଚେତା, ଦିଲ୍ଲୀକୁ ଚାଧୋଇ ଦେଉଥିବା ଚେତା । ପୁଣି ବିଭିନ୍ନ ବୟସର ଗୁଡ଼ାଏ ଶିଶୁ ସହ ପରିଚାଳିକା ଚେତା ! ଚମତ୍କାର ଫଟ !

"ଏ ପୁଣି କିଏ ?" ଶେଷ ଫଟୋକୁ ଦେଖାଇ ପ୍ରଶ୍ନ କଲା ରମା ।

"ସେଇ ତ ମଜା । ଝୋକାଟା ସିନା ସ୍ମାର୍ଟ, ଆଧୁନିକ, ଆଇ: ଏ: ଏସ୍: ବର୍ଷେ ହେଲା ପାଇଲାଣି । ହେଲେ ବାପ ବୁଢ଼ା, ପୁରୁଣା କାଳିଆ । ଏବେ ବି ଫ୍ୟାମିଲି ପ୍ଲାନିଙ୍ଗ୍ କଣ ଶିଖି ନାହିଁ । ବୁଢ଼ାର ଗୁର ଗୁରିଟା ସାନ ଛୁଆ, ପୁଣି ସେମାନଙ୍କ Sentimentକୁ appeal ନକଲେ—ଗୁଡ଼ିକ ସବୁଆଡ଼କୁ ନଜର ସିନା ସ୍ତ୍ରୀ ଲୋକଙ୍କର ଥାଏ । ଆଉ ଯଦୁ ଦାସ ପୁଣି ମୋ ସଙ୍ଗେ ପାରିବ ? ହୁଁ ! ଦେଖ, ଏଇଟା ନଣନ୍ଦଙ୍କର । ନଣନ୍ଦ ହେଲେ ଅଲଗା ପାଠୋଇ ନାଖିନେବି ନା ! ତେଣୁ ତାଙ୍କ ପାଇଁ ଏଇ ପ୍ୟାକେଟ୍‌ଟା ।" ଲଫାପା ଖୋଲି ଦେଲା ।

ମଉଳ୍ପୁଗାର୍ଲ ରଚତା, ସାଦାସିଧା ସୁନ୍ଦର । ନାନା ପ୍ରକାର ଫଟର ସମ୍ମିଶ୍ରଣ । ବିଚିତ୍ର ବନ୍ଧୁ କପ୍ ଓ ସିଲ୍ଡ଼ ସହ ରଚତା । ପାଖରେ ଲେଖାହୋଇଛି ସର୍ବୋତ୍କୃଷ୍ଟ ଗ୍ରହୀ !!

ଫଟଟି ଦେଖାଇ ସାର ରମା ମୁହଁକୁ ଚାହିଁ ହସିଲ ଲାବଣ୍ୟ । ଦେହପରୁ ଆ ହସ । ତାଚ୍ଛଲ୍ୟର ଛୁଟା···

"ସବୁଛନା ରଚତାର ପାଠ ପଢ଼ା କଥା । ଠିକ୍ ଧରି ପାରୁଥିବ । ଏଗୁଡ଼ାକ ରଞ୍ଜିତାର ନାଚର କପ୍ ସିଲଡ୍, ଆଉ ରଚତାର ମଧ୍ୟ ପାଠ ବୋଲି ଚଳେଇ ଦେଲେ କଣ ହେବନ ? ଶ୍ୱଶୁର ଦୟା ରାଷ୍ଟ୍ରପତି ପୁରସ୍କାରପ୍ରାପ୍ତ ପ୍ରାଇମେରୀ ଶିକ୍ଷକ । ତାଙ୍କର ଇଚ୍ଛା ଭଲ ଗ୍ରହୀଟିଏ ବୋହୂ କରିବେ ।"

ପୁଣି ଲମ୍ବି ଆସିଲ ଶିଥିଳ ଗାଲ । ନିଜ ବୁଦ୍ଧିକୁ ନିଜେ ତାରିଫ କଲେ ଲାବଣ୍ୟ—"ସିଧା ଅଙ୍ଗୁଳିରେ ଘିଅ ଭଲ କିଏ କାଢ଼ିଲାଣି ? ଷେସେକର୍ମ ବଦ୍ଧପ୍ରତେ ! କଣ କହୁଛ ?"

"ନିଶ୍ଚୟ" ଟିପ୍ପଣୀ ଦେଲ ରମା । 'ତୁମକୁ ଆଉ କିଏ ବାଛିବ !'

"ନିଧିଦାସ ସବୁଛ ଖାଲି ନକ୍ଷେ ଟଙ୍କା Cash ଦେଲେ ସେ ଜିତିଯିବ । ଖବର ପଠେଇଛି ବୁଢ଼ା ପାଖକୁ । ଆରେ ବାବୁ, ବୁଢ଼ାର ମାଷ୍ଟ୍ରିଆ ବୁଦ୍ଧି । ଟଙ୍କାଠୁଁ ଗୁଣକୁ ବେଶୀ ଚହେଁ । ଫ୍ଲାଟ୍, ଫ୍ରିଜ୍, ଫିଆଟ୍, ଫର୍ନିଚର, ଫିଡଚର ପାଇଁ ଆଶା ଏତକ ନ ଦେଇ କିଏ ଭଲ I. A. S. କଲଣି ଶୁଣେ ? ତମେତ ଜାଣ ! ରଞ୍ଜିତା ବେଳକୁ ମୋତେ କେମିତ ଦେବାକୁ ପଡ଼ିଲ । ରଞ୍ଜିତା 8th Standardରୁ Conventରୁ ଆସି ମାଟ୍ରିକ୍ ପ୍ରଥମ ଥର ପାସ୍ କଲ । ଟଙ୍କା ଖର୍ଚ୍ଚ ନ କରିଥିଲେ ହୋଇଥାନ୍ତା ଷୋଳ ବର୍ଷରେ B. A ପାସ୍ ? ମୋଟା ଗଢ଼ଣ ତାର । ପଢ଼ାକୁ ହଇରାଣ ହୋଇଥାନ୍ତି । କମ୍ ଟଙ୍କାଟା ଖର୍ଚ୍ଚ କରନ ଡିଗ୍ରୀ ପାଇଁ । ଖର୍ଚ୍ଚ କଲ ହେଲେ କାଇଦା କରି । କାମ ଖତମ୍, ପଇସା ହଜମ୍ । ଗୋବର୍ଦ୍ଧନର ଘରର ଦାରିଦ୍ର୍ୟ କଥା ଶୁଣି ଡରିଲ ଗୌର ଦାସ । ମଫସଲ ଜାଗା । ତା ଝିଅ ଚଳିପାରିବନ ! କର୍ମ ସେପର କରୁଥିଲ ଓହରିଗଲ । ଅଥଚ ଦିନେ ଯାଇଛ ନା ଗାଁକୁ ରଞ୍ଜିତା ? ଆରେ ବାବୁ କାମ ସରିଲେ ତୁମେ କିଏ ଆମେ କିଏ ? ଗାଁ ତ ଗାଁ ଓଡ଼ିଶାକୁ ଦିନେ କାଳେ ଆସେ ରଞ୍ଜି ? ଖାଲି ଭୁବନେଶ୍ୱରରେ କୋଠା ତୋଳୁଛି ବୋଲି ଏବେ ଆସୁଛି । ଗୋବର୍ଦ୍ଧନ ଏବେ ହରିୟାନାରେ କଲ୍ଲାପାଲ । କାଳେ ଭଦ୍ରେ ଗାଁକୁ ଯାଏ ନା ସିଏ ? କଣ କହନ୍ତନ ବୁଦ୍ଧି ଥିଲେ ବାପଘରେ ଝିଅ ।—ତା କ'ଣ ଏଇନେ କାନ୍ଧ ପକାଉଥିଲ ? ଟୁଡ଼—ଟୁଢ଼—ବନ୍-ଷ୍ଟାଣ୍ଡର ପରି !"

ପୁଣି ପାନ କଲରେ ପୂରେଇ ଖଲ୍ ଖାଲ୍ ହସ ହସିଲେ ଲବଣ୍ୟ । ସୁନା ବ୍ୟାଣ୍ଡବନ୍ଧା ଘଡ଼ିକୁ ଗୁହିଁ ବସ୍ତ୍ର କାମୁଡ଼ିଲା ପରି ଚମକି ଛୁଟିକି ପଡ଼ିଲେ, "ନା—ନା ଆଜି ଆଉ ବସ୍ ଆସିବନି ଦେଖୁଛି । ମୁଁ ନଗଲେ ସବୁ ଭଣ୍ଡୁର ହୋଇଯିବ । କ'ଣ ବସ୍ ଏଯାଏଁ ଆସିନି ?" ଛୁଡ଼ା ହୋଇ ପଡ଼ିଲେଣି ଲବଣ୍ୟ ।

"କ'ଣ ବସ୍ ଏ ଯାଏ ଆସିନାହିଁ ? ରକ୍ଷା କଲୁ ମା କଟକଚଣ୍ଡି ! ମୁଁ ବଞ୍ଚିଗଲି ।"

ତର ତର ହୋଇ ଚେକ୍‌ସାରୁ ଓହ୍ଲେଇପଡ଼ିଲା ସିଏ । କୁଞ୍ଚୁକୁଞ୍ଚିଆ ଅଧା-ପାଚିଲା ଓଦା ବାଳ । ଫିଟି ପଡ଼ିଛି ପିଠିରେ । ବାଳ ତଳେ ଘନ ବେଣୀଟେ । କପାଳରେ ସିନ୍ଦୂର ସଙ୍ଗେ ଚନ୍ଦନ । ଦୁଇଟା ମୁଣି ଦ'ହାତରେ । ମୁଣି ଥୋଇଲା ତଳେ । ସଗ ଭିତରୁ ସିନ୍ଦୂର କାଢି ମୋ ବେକରେ ଲଗେଇଲା ଲୀଳାବତୀ ।

ସବୁର କାତରେ ସିନ୍ଦୂର ଦେବା ବେଳକୁ ଲବଣ୍ୟ ମୁହଁ ବୁଲେଇ ଗ୍ଲାଲିଗଲା ଭିତରକୁ ।

ବ୍ୟସ୍ତ ବିବ୍ରତ ଲବଣ୍ୟ !

ମିଠାଟିଏ ରମା ପାଟିରେ ପୂରେଇ ଦେଇ ଲୀଳା କହିଲା, "ଯାହାହେଉ, ଠିକ୍ ସମୟରେ ପହଞ୍ଚିଗଲି । ନହେଲେ ପୁଣି ଦିନଟେ ସ୍କୁଲରୁ ଛୁଟି ନେବାକୁ ପଡ଼ିଥାନ୍ତା ।"

ରମା ହସିଲା । "କୁଆଡେ ଥିଲୁ ଲୋ ପାଞ୍ଚଦିନ ହେଲା ? ତତେ ନ ଦେଖି ମୁଁ ଟିକେ ବ୍ୟସ୍ତ ହୋଇପଡ଼ିଥିଲି । ଆଜି ଫେର Hospital ଯିବ ବୋଲି ଭାବିଥିଲି । ଯାହାହେଉ, ସୁ ଖବର । କହୁ ଆଉ X-ray ପ୍ଲେଟ୍‌ରୁ ବାହାରିନି ତ ? ତୁ ଖାଲି ଯାହା ମିଛରେ ଡରୁଥିଲୁ ନା ।" ରମା କଣ୍ଠରେ ଆନ୍ତରିକତାର ଅନାବିଲ ମାଧୁର୍ଯ୍ୟ ।

"ନା ଲୋ ! ଏ ଯାଏଁ ରିପୋର୍ଟ ଆସିନି । ଗୁରଦିନ ହେଲା ବେଶୀ Serious ହେଲା ସ୍ୱାଙ୍କ ଦେହ । ପୁଣି ଛୁଟି ନେଇ ଖାଲ୍ ଏଇଠି ଥିଲି । ତେଣେ ଶାଶୁ ପଡ଼ିଛନ୍ତି । ସୁରେଖାଟା ଚଲେଇ ନେଉଛି । ଜମା ନିଦ ନାହିଁ ତାଙ୍କୁ । ଏଇ ଗୁରଦିନ କାଳ । ଯାହାହେଉ, କାଲି ଟେଲିଗ୍ରାମଟା ପାଇ ଏବେ ଟିକେ ଭଲ ଅଛନ୍ତି । ଆଜି ଲଗେଇଥିଲେ ତୁ ଯାଆ ଚଣ୍ଡି ମନ୍ଦିରରେ ଦୀପ ବଢେଇ ମୋ ପାଇଁ ଫୁଲ ସିନ୍ଦୂର ଆଣିବୁ । ଆଜି ପାଞ୍ଚଦିନ ପରେ ହରଲିକ୍‌ସ ଅଙ୍ଗୁର ଖାଇଛନ୍ତି ଟିକେ । ହେଲେ ମୁଁ ଆସୁଛି କେତେବେଳେ ? ଗର୍ଧବାକୁ ତାଙ୍କର ଆଜି ଧାଗ ମନ । ମତେ ବୋଲ କାହିଁ କହିଲୁ ? ଅଣନିଃଶ୍ୱାସୀ ହୋଇ ଆସିଛି । ହଁ ଲୋ; ଅସଲ କଥା କହିନି ତତେ । ତାଙ୍କୁ କହିଲି – ଶୁଣିଲେ କଣେ କନ୍ତୁ ଭାବି ଖୁସି ହେବ ।

ସେ ଆମ ରମା । ଦୀପୁକୁ ମୋର ପିଲାଦିନୁ ସେ ଭଲପାଏ । ମନେ ନାହିଁ ତୋର ସ୍କୁଲ ଫ୍ରାଇଜ୍‌ରେ ତୋ ପାଖରେ ସେ ସାରାଦିନ ରହିଗଲା ! ତୁ ତା ନାଁ ଦେଇଥିଲୁ ନା ଦୀପକ୍ !"

ମଧୁର ସ୍ମୃତିର ରୋମନ୍ଥନରେ କଳାବତୀର ଶେତା ଦୁର୍ବଳ ମୁହଁଟା ଝଟକି ଉଠିଲା । ଘୋଷ ହୋଇଯାଇଥିବା ଦାନ୍ତ ଦିଶିଗଲା । ଲାବଣ୍ୟର ଛଟା ଏବେବି ରହିଛି ପତଳା ଓଠ ତଳେ, ଚିବୁକର ରେଖାରେ ।

"ଦୀପୁ I.A.S. Interview ରେ Select ହୋଇଗଲା ଲେ ! 3rd position ମାଙ୍କର ଆଶୀର୍ବାଦ ।"

କଳାବତୀ ମୁହଁ ଉଜ୍ଜ୍ୱଳ ଦିଶୁଛି । ସୌନ୍ଦର୍ଯ୍ୟର ପଦଚିହ୍ନ ତାର ରେଖା ଗୁଡ଼ାକ ଝଟକି ଉଠୁଛି ।

ରମା କଳାବତୀର ହାଡୁଆ ଦୁର୍ବଳ ହାତ ଦୁଇଟା ଚୁପି ଧରିଲା ପରମ ସ୍ନେହରେ ।

"ତୋ ପୁଅ ଭଲ କରିବନି କଳା, ତୁ ପରା ସେ ଯୁଗରେ ମ୍ୟାଟ୍ରିକ୍‌ରେ ପୋଜିସନ୍ ରଖିଥିଲୁ । ସେ କଥା କ'ଣ ମନେ ନାହିଁ ମୋର ?"

"ତୁନିହ, ତୁନିହ, ଲୋକେ ଶୁଣିଲେ ହସିବେ । ଆହା ବଡ଼ ପାଠୋଇଟା ନା ! ସେ କଳା ଅନେକ ଦିନୁ ମରିଛି । ଏ ଖାଲି ତାର ପ୍ରେତାତ୍ମା ।"

ଉତ୍ତେଜନାରେ କଣ୍ଠର ନୀଳ ଶିରା ଟାଣି ହୋଇ ଯାଉଛି । ନିଃଶ୍ୱାସ ଦ୍ରୁତ । ଦୁର୍ବଳତାର ସଙ୍କେତ ।

ପ୍ରୌଢ଼ାଟି ଓଠରୁ ଅଜାଣତାରେ ଖସିଗଲା ପଦୁଟିଏ—"କଳାବତୀ ଦାସ ।" ( ସ୍କୁଲର ନେତ୍ରୀ କଳାବତୀ , ଅସାଧାରଣ ଧୀମତୀ ଛାତ୍ରୀ କଳା )

କଳା ହସିଲା । ସୁନ୍ଦର ଦାନ୍ତ ଗୁଡ଼ାକ ଘୋଷ ହୋଇ ଯାଉଛି ଠିକ୍ ସୁନ୍ଦର ରୂପ ପରି ।

"କିଏ ମଙ୍ଗଳା ନା ? ମୁଁ ଦୋ ଦୋ ଚନ୍ଧା ହେଉଛି ଲେ । ଆଖିକୁ ଆଉ ଜମା ଦିଶୁନି । ଖୁକଶିଆ ଧରିଲାଣି । ଏଥର ଚଷମା ନଦେଲେ ନଚଳେ ।

ରମା କଥା କାଟିଲା "ଉହୁଁ ! ମଙ୍ଗଳା ନୁହେଁ, ସେ ବି ମରିଛି । ଇଏ ପ୍ରୌଢ଼ାଟୀ ତୁ କି ତ କଲେଜରେ ପଢ଼ି ନଥିଲୁ ସେବେ । ପଢ଼ିଲା ବେଳୁ ସେ ତା ନାଁ ବଦଳେଇ ଦେଇଛି ?

ପ୍ରୌଢ଼ାଟୀର ହାତରେ ସ୍ନେହରେ ଚାପ ଦେଲା କଳା ।

ବସ୍ ଆସିଗଲା ।

ହଠାତ୍ ସଜାଗ ହୋଇ ଉଠିଲେ ସମସ୍ତେ···

ନାଇଲନ୍ ଶାଢ଼ୀ, ପରବା ବୋଝ, ଧୂପକାଠି, ସିଙ୍ଘ କାମ, ଥର୍ମୋଫ୍ଲାସ୍, ଟିଫିନ୍ କ୍ୟାରିୟର, ସୁଦୀର୍ଘ ଭ୍ୟାନିଟି ବ୍ୟାଗ, ଟେବୁଲ ପଙ୍ଖା ପରି ଜୁଡ଼ା ଗମ୍ଭୁଜ ଖୋସା ସବୁହେଲେ ଏକାକାର ।

ସମସ୍ତେ ଠେଲା ଠେଲି ପେଲା ପେଲି ହେଲେ ।

ଏକଦ ହେଲେ ଆଗପଛ ବସ୍‌ର ସିଟ୍‌ରେ ।

ବସ୍ ଛୁଟିଲା ।

ବସ୍ ଛୁଟିଲାବେଳକୁ ଦେଖାଗଲା, ଲବଣ୍ୟ ହାତରେ ଲୀଳାବତୀର ମଳଚଆ ଥର୍ମୋଫ୍ଲାସ୍ ଓ ଟିଫିନ୍ କ୍ୟାରିୟରର ଭରା ବ୍ୟାଗ୍ ।

କାଚ ପାଖରେ ମେଞ୍ଚାଏ ଚର୍ଣ୍ଣି ସିନ୍ଦୂର ଲେପି ହୋଇ ଯାଇଛି ।

ଲୀଳାର ଦେହ ଘୁଞ୍ଚି ବସିଛି ଲବଣ୍ୟ । ଟେବୁଲ୍ ଫ୍ୟାନ୍ ପରି ଖୋସାଟା ଓଢଣା ଭିତରେ ଛପି ଯାଇଛି କେମିତି କେଜାଣି !

ଆଶ୍ଚର୍ଯ୍ୟ !!!

ଲୀଳାର ହାଡୁଆ ହାତ ଲବଣ୍ୟର ମାଂସଳ ହାତ ଭିତରେ ଲୁଚି ଯାଇଛି, ଛପି ଯାଇଛି ବେଶ୍ ସହଜରେ

ହସୁଛି ରମା...
ପ୍ରଦ୍ଧରୀ ଆଖିରେ ଶୂନ୍ୟତା...
ମୀରା ଫେମିନା ପଢ଼ୁଛି...
ଶିଉଳି ଚଷମା କାଚ ପୋଛୁଛି...
ବସ୍ ଛୁଟୁଛି...
ମଙ୍ଗଳାବାଗ୍ ଛକ ପାର ହୋଇ ସାରିଲାଣି ।



# ● ସମ୍ଭାବ୍ୟ କ୍ରିୟା

ସବୁଠାରେ ସେଇ ଗୋଟିଏ କଥା, ସେଇ ଗୋଟିଏ ସମସ୍ୟା···

"ବାଳ ସବୁ ଝଡ଼ୁଛି ।"

କିଏ କହେ ପରମାଣୁ ବିସ୍ଫୋରଣର ପ୍ରତିକ୍ରିୟା···

କିଏ କହେ ସୌଖିନ ତେଲର ଗୁଣ···କିଏ କହେ ଏବେ ସବୁ ଭେଜାଲ, କିଏ ବା କହେ ନାନା ପ୍ରକାର କେଶବିନ୍ୟାସ ଅତିଷ୍ଠ କରି ତୋଳୁଛି ବାଳ ଗୋଛାକୁ···

ସବୁରି ମୁଣ୍ଡରେ ପ୍ୟାଡ୍, ଟ୍ୟାସଲ, ରଙ୍ଗ୍, ଯାବତୀୟ କୃତ୍ରିମ ଉପକରଣ ··

ଅଥଚ···

ତାର ପୋଡ଼ା କପାଳକୁ ହୁ ହୁ ହୋଇ ବାଳଗୁଡ଼ାକ ବଢ଼ି ଚାଲିଛି କାହିଁକି ? ଏକଦମ୍ ତାଡ଼କା ଅସୁରୁଣୀ ପରି ଏତେ ବାଳ, ଏତେ ରୂପ ? ଛି—ଛି—ଛି; କି ଲାଭ ?

ଏ ଗୁଡ଼ାକ ନ ଥିଲେ କଣ ଚଳନ୍ତା ନି ??

ତାର ଭଉଣୀ ରେଣୁ, ବାହା ହେବା ବୟସ ହେଲାଣି । ଦୁଇଟା ମୋଟା ମୋଟା ଟ୍ୟାସଲ୍ ଦେଇ ବେଣୀ ପକାଉଛି । ସେ ପୁଣି ମାତ୍ର ଦୁଇ ଆଙ୍ଗୁଳି ସରୁ !

ଲାଜରେ ମୁଣ୍ଡ କଟି ଯାଉଛି । ଅପାତ୍ରରେ ଏ ଦାନ କାହିଁକି ???

ଆଉଣି ଯୌବନର ସବୁ ମଧୁ ଝରି ଯାଇଛି ! ତରଳ ଚାହାଣୀ, ପୂରିଲା ପୂରିଲା ଗୋଲାପି ଗାଲ, ଆମନ୍ତ୍ରଣପିପାସୁ ଅଧରର ଲୋହିତାଭ । ସବୁ ସରି ଯାଇଛି ।

ଗାଲରେ ବ୍ରଣ ପୋଡ଼ ଗୁଡ଼ିଲା ଧରିବ । କପାଳରେ ଲମ୍ବା ଲମ୍ବା ନାଲି ସମାନ୍ତର ଶିରା କେଇଟା ଭିଡ଼ ବାନ୍ଧିଲେଣି । ଓଠ ଦୁଇଟା ସାଦା କାଗଜ ପରି ଧୋବ । ରକ୍ତଶୂନ୍ୟତାର ପ୍ରତୀକ । ଆଖି ଚାରିପଟେ ଗାଢ଼ ବହଳ କଳା ଦାଗ । ମୁଣ୍ଡରେ ଟିକିଏ ବି ତେଲ ବାଜେ ନାହିଁ । ଦ'ଦିନରେ ଥରେ ପାଣିଆ ବାଜୁଛି, ନିଜ ରୂପ ପ୍ରତି ଚରମ ଅବହେଳା ଆଚରଣ ।

ତଥାପି···

ଶତ୍ରୁ ପରି ଝିକି ଝିକି କରି ଯୌବନକୁ କୋରି ଖାଇବାକୁ, କାଳସର୍ପ ପରି ଘଞ୍ଚି ଘଞ୍ଚି କଳା କେଶର ଜଙ୍ଗଲ ଗୁଡ଼େଇ ହୋଇ ବଢ଼ି ବଢ଼ି ଚାଲିଛି, ପିଠିରେ ଲମ୍ବି ଯାଇଛି । ବିଷାକ୍ତ ସର୍ପର ଦଂଶନରେ ଅଧୀର ହେଉଛି ଆରତି ।

ସେ ବାଳ ଗୋଛାକ ଗୁଡ଼େଇ ହୋଇ ଫଣାପରି ବାରମ୍ବାର ଆଘାତ କରୁଛି ଭଙ୍ଗା ମନକୁ—ସ୍ମୃତି ! ମଧୁର ସ୍ମୃତି !

ସ୍ମୃତିର ଫଣା···ତା'ର ଆଘାତ !

ଆଃ···କି ଯନ୍ତ୍ରଣା !

ଘନକଳା କୁଞ୍ଚୁକୁଞ୍ଚିଆ ଅପରୂପ କେଶଶ୍ରୀ । ଦେଖିଲେ ଆଖି ଫେରାଇ ହୁଏ ନାହିଁ । ସମଗ୍ର ଶରୀରର ସବୁ ସୌନ୍ଦର୍ଯ୍ୟ ଚପୁଡ଼ି ନେଇ ସେ ବାଳ ଗୋଛାକରେ ଅବା ନଚାଡ଼ି ଦେଇଛି କିଏ !

ରେଣୁ କେତେ କହେ; ଯାଇ ପଡ଼ିଶା ସଭିଏଁ କହନ୍ତି—"କେତେ ସୁନ୍ଦର ବାଳ ଲୋ ତୋର— ଦେଖିଲେ ଲୋଭ ହୁଏ ।"

କହନ୍ତି ପରା—ଦୃଷ୍ଟି କଲେ ଛିଡ଼ି ଯାଏ ! କାହିଁ ଯାଉନି ତ !!

ସ୍ନାନପରେ ଶୁଖିଗଲେ ସେଇ ବାଳ ଗୋଛା ଧରି ଟାଣେ । ତଥାପି ଶତ୍ରୁ ପରି ବେଦନାର ସମୁଦ୍ର ଭିତରକୁ ଟାଣି ନେବାକୁ ସେଇ ବାଳଗୁଡ଼ାକର ଅହରହ ପ୍ରଚେଷ୍ଟା ! ସେ ବାଳ ଭିତରୁ ଦୁଇଟି ଆବେଗ ବିହ୍ୱଳ ହାତର ସ୍ପର୍ଶ ରକ୍ତକୁ ଚଞ୍ଚଳ କରେ । ତାର ଭିତରୁ ଉଙ୍କି ମାରେ ଦୁଇଟା କ୍ଷୁଧାର୍ତ୍ତ ନୟନ, କହେ, "ମୁଁ ଏଇଠି ଅଛି ରତି ! ମୋର ଅତି ପ୍ରିୟ ଏଇ ମେଘମାଳା ଚୂର୍ଣ୍ଣ କୁନ୍ତଳରେ । ପାରୁଛ ମତେ ଅନୁଭବ କରି ?"

ବେଦନାର ଆତିଶଯ୍ୟରେ ଆରତିର ଆଖିପତା ଭିଜି ଭିଜି ଗଲା । ବିବାହିତ ଜୀବନର ଶ୍ରେଷ୍ଠ ଅଧ୍ୟାୟ କିନ୍ତୁ କେତେ ବର୍ଣ୍ଣିଳ—ସୁଷମାମଣ୍ଡିତ ସେ ଅଧ୍ୟାୟ !

ସେ କହୁଥିଲେ ସଦାବେଳେ—

ତାର ସୁଦୀର୍ଘ କଳା କୁନ୍ତଳରେ ପ୍ରାଣଭରା ଚୁମ୍ବନ ଦେଇ କହୁଥିଲେ—

"ଅଳକେ କୁସୁମ ନା ଦିଓ । ମୃଦୁ ଶିଥିଳ କବରୀ ବାନ୍ଧିଓ । କାଜଲ ବିହୀନ ସଜଲ ନୟନେ ହୃଦୟ ଦୁଆରେ ଘା ଦିଓ ।" ରବୀନ୍ଦ୍ରନାଥଙ୍କର ଏଇ ପଂକ୍ତି ଦିଓଟି ଥିଲା ତାଙ୍କର ଅତି ପ୍ରିୟ । ସଯତ୍ନରକ୍ଷିତ ଅପରୂପ କେଶର ସୁରଭି ତାଙ୍କୁ ମୁଗ୍ଧ କରୁଥିଲା । ଆଃ—ଆଘ୍ରାଣ କରୁଥିଲେ କଳାକେଶର ସୁରଭି ସେ ।

"ଜାଣ ରତି ! କବିମାନେ କାହାକୁ ବେଶୀ ଭଲ ପାଆନ୍ତି ? ଗୋଛାଏ ଭୁବନଭୋଳା କଳାକେଶର ଢେଉ ଆଉ ଦୁଇଟା କଜ୍ଜଳ କଳା ଢଳ ଢଳ ଗମ୍ଭୀର

ଆଖି । ଏଇ ହେଉଛି କବିମାନସୀ ହେବାର ଉପାଦାନ । ତୁମର କ'ଣ ଅଭାବ ଥିଲା କହିଲ ?" ହସି ଉଠନ୍ତି ସିଏ ।

ଜାଣେ ଆକାଂକ୍ଷା, ଆଖି ଦୁଇଟା ତାର ଭାରି ସୁନ୍ଦର । ସାଙ୍ଗୀମାନେ କହନ୍ତି, ରାଜୁ ରାୟଙ୍କ ନୀଳ ଲହରୀର ପୋଖରୀ ଆଖିର ମଡ଼େଲ !

ହସି ହସି କୌତୁକ କରି କହେ ସେ କାହିଁ ?
କେଉଁ କବିର ତ ମାନସୀ ହୋଇ ପାରିଲି ନା ।
ଖାଲି ଶୁଷ୍କ ନୀରସ କାୟା ଓ ଜନନୀ ··

"ଉହୁଁ···ମରୁଭୂମିରେ ଝରଣା ଧାରା ବୁହାଇଲ ଯେ ! ତା ନହେଲେ ମୋ ପରି ଅରସିକ ପୁଣି କବି ହୁଅନ୍ତା କି ? ଏମିତି କେଶଗୁଚ୍ଛର ପ୍ରେମରେ ପଡ଼ି ପାରନ୍ତା ?"

ତୃପ୍ତିରେ ଭରିଉଠେ ଆକାଂକ୍ଷାର ପ୍ରାଣ । ଆପଣା ମନମତାଣିଆ ମୁକୁଳାକେଶ ବନ୍ଦୀ ହୋଇଯାଏ ପ୍ରବୀରର ମୁଠିରେ···

ମନ୍ତ୍ରମୁଗ୍ଧ ପ୍ରବୀର କହେ, "ଜାଣ ମୁଁ ନୂଆ ଭାଗବତ ସୃଷ୍ଟି କରିଛି । ଅଳକ ମହାତ୍ମ୍ୟ ଅରସିକଂ କରୋତି ରସିକଂ, ଶୁଷ୍କଂ କରୋତି ପଲ୍ଲବିତଂ କୃଷ୍ଣ ଅଳକାସ୍ପର୍ଶ । ତୁମ୍ଭକ ରଚୟତି କବିତା ! ଆରେ—ହସ ନାହିଁ ତୁମେ ! ତୁମପରି ମୁଁ ତ ଫାଙ୍କି ତ ପଢ଼ିନି କି ତାର ଧାର ଧାରେ ନାହିଁ । ଏ ତମ ବାଳର କାରସାଦି । ସେହି ବାଳର ମୋହ ସୃଜନୀ ଶକ୍ତି ଆଣି ଦେଇଛି । ନବୋଢ଼ା ଭାବରେ ସେ ଜାବୁଡ଼ି ଧରନ୍ତି କଳାକେଶର ଜଙ୍ଗଲକୁ, କ୍ଷୁଧିତ ପିପାସିତ ଭଙ୍ଗୀରେ ।

"ମାଧବୀ ଦିନ ଗୁଲ ମିଳିଏ ଯାଏ ।" ଆଜି ଅନ୍ଧକାର ରାତି ଓ ମରଣର ଆମନ୍ତ୍ରଣରେ ହିଁ ଲୁଚି ରହିଛି ଆକାଂକ୍ଷା । ସେ ଯାଇଛନ୍ତି । ତାଙ୍କ ସଙ୍ଗେ ସବୁ ଯାଇଛି । ଅଳକରେ କୁସୁମ ନାହିଁ, ନୟନରେ କଜ୍ଜଳ ନାହିଁ···ତଥାପି ସେହି କଳା କେଶର ଜଙ୍ଗଲ ମଧ୍ୟରେ ମୁକ୍ତାପରି ବନ୍ଦୀ ହୋଇ ପଡ଼ିଛି ଦୁଇଟି ଆବେଗବୋଳା ହାତର ମଧୁମୟ ସ୍ପର୍ଶ ! କେତୋଟି ଅଭୁଲା ଶବ୍ଦର ତରଙ୍ଗ···ସ୍ପନ୍ଦନକୁ ଦ୍ରୁତ କରୁଛି ।

ସେ ଦିନ ଏହି ବାଳ ଗୋଛାକ ପାଇଁ ତାଙ୍କ ସଙ୍ଗେ ଜୀବନରେ ପ୍ରଥମ ଥର ପାଇଁ ମନାନ୍ତର ହୋଇଥିଲା ଆକାଂକ୍ଷାର । ଉଦ୍‌ଭ୍ରାନ୍ତ ପ୍ରବୀର ଦିନେ ଜିଦ୍ ଧରି ବସିଥିଲା, ସାମ୍ପୁ ଦେଇ ବାଳ ଛଡ଼ାଇ ଫୁରୁ ଫୁରୁ କରି ଉଡ଼ାଇ ଦିଅ ! ଭୁଇଁରେ ବିଛାଇ ଦିଅ ସେ କଳା କେଶର ତରଙ୍ଗ ମାଳା ! ସେଇ ତରଙ୍ଗ ମାଳାରୁ ସେ ସାଉଁଟିବ ମୁକ୍ତା ! କି ଅଜବ ଖିଆଲ ! ସେତେବେଳକୁ ଆରତୀକୁ କେତେ ବା ବୟସ ହୋଇଥିବ ? ନା—୨୦ ବର୍ଷ ବି ଅତିକ୍ରମ କରି ନଥିଲା ସେ । ପିଲା ମନରେ ଭରି

ରାଗ ହେଲ—ଆରତି ମୁହଁ ଭାର କଲ । ନା—ନା—ନା—ବାଲ ମେଲାଇଲେ ନା ବାଲ ଛିଡ଼ିଯିବ ମୋର ଅଡୁଆ ହୋଇଯିବ—ବୋଉ ମନା କରିଛି ।

ମୋର ମଣ୍ଡି ନଡ଼ିଆତେଲ ଦେବା ଅଭ୍ୟାସ । ଇଏ କଣ ମ !

ଅଦ୍ଭୁତ ଖିଆଲ ଚିପି ଧରିଥିଲ ତାଙ୍କ ମସ୍ତିଷ୍କରେ । ନା—ନା ତୁମକୁ କରିବାକୁ ହେବ । ଛିଣ୍ଡୁ—ସେ ବାଲ, ସବୁ ଛିଣ୍ଡୁ । ମତେ ଯଦି ତୃପ୍ତି ନ ଦେଲ; କି ଲାଭ ଏତେ ରୂପ ଥାଇ···

କେଜାଣି କାହିଁକି ତାର ମଧ୍ୟ ସେ ଦିନ ଜିଦ ବଢ଼ି ଯାଇଥିଲା । ନା—ନା— ଜାଣୁ ଜାଣୁ ଏତେ ସୁନ୍ଦର ବାଲଗୁଡ଼ିକୁ ସେ ନଷ୍ଟ କରିପାରିବ ନାହିଁ···କି ଅଦ୍ଭୁତ ଖିଆଲ ଯେ !

ସେଦିନ ସେ ରାଗି ଥିଲେ । ଆଉଆଖିରେ ଚାହିଁଲେ ନାହିଁ ଆରତୀକୁ । ଆଉ ଆରତୀର ସୁନ୍ଦର ମୁହଁରେ ନଇଁ ଆସିଲ ଆଷାଢ଼ର ଘନ କଳାବାଦଲ । ଆଉ ଠିକକୁ ଝରିଯିବ ଆକାଶଫଟା ବରଷା ଧାରା ! ସ୍ୱାମୀର ଏ ଅବହେଳା ସେ ସହ୍ୟ କରିପାରି ନଥିଲ । ଓଡ଼ିଆ ଘରର ଝିଅ ସେ । ତେଣୁ ନରମ ହୋଇ ନିଜ ଆଡ଼ୁ କ୍ଷମା ମାଗିଥିଲା ସରଳା ଆରତି । ସତେତ ···"ପ୍ରିୟେଷୁ ସୌଭାଗ୍ୟ ଫଳାହି ଚାରୁତା"ଯଦି ପ୍ରିୟ-ଜନଙ୍କୁ ଆନନ୍ଦ ନ ଦେଲ; ତେବେ ଏତେ ରୂପ ଥାଇ ଲାଭ କଣ ? ସ୍ୱାମୀ ପାଇଁ ସିନା ଏ ରୂପ···ତାଙ୍କର ପାଇଁ···

ଆଖିର ଲୁହ ପୋଛି ସାମ୍ନାରୁ ଦେଇ ଫୁରୁଫୁରୁ କରିଥିଲ ଆରତୀ ତାର କଳା କଳା କେଶଗୁଚ୍ଛକୁ··· ସ୍ୱାମୀରକୁ ଭଲ ଲାଗିବ । ସେ ଖୁସି ହେବେ ।

ସ୍ୱାମୀର ମୁହଁ ବୁଲାଇ ନେଇଥିଲେ ରାଗରେ । ହେଲେ ନରମ ହାଲୁକା ବାଲର ଗୋଛାଏ ତାଙ୍କର ଗାଲରେ ବାଜିଲ । ନରମ ଓଠର ଦି ପଦ କଥା କାନରେ ବାଜିଲ···ଅପରୂପ କଳା କେଶ ମନର କାଳିମା ପୋଛିଦେଲ ।

ସେଦିନ ସେ କହିଥିଲେ—ବାଲ ହୁଏତ ଛିଣ୍ଡିଯିବ ରାଣୀ । କିନ୍ତୁ ଆଜିର ହୃଦୟ ସବୁ ଦିନକୁ ରହିଯିବ ମରମ ତଳେ, ଏ ପାଗଳକରା ଆନନ୍ଦର ଶିହରଣରେ ପ୍ରତି ରକ୍ତକଣିକା ମୋର ସିକ୍ତ ହୋଇ ଉଠୁଛି ଆଉ ସିକ୍ତ ହୋଇ ଉଠୁଛି ତୁମର ପ୍ରତି କେଶଗୁଚ୍ଛ । ଯଦି ମୁଁ ମରିଯାଏ, ତେବେ ଏଇ କେଶଗୁଚ୍ଛ ମଧ୍ୟରେ ଲୁଚି ରହିବ ମୋର ପ୍ରେମଭରା ସ୍ପର୍ଶ । ବାଲ ପାଇଁ ଦୁଃଖ କରନାହିଁ···ଏଇ ବାଲକୁ ମୁଁ ସବୁଠାରୁ ବେଶୀ ଭଲ ପାଏ ।

ଆରତି ଦୁଇ ହାତରେ ମୁହଁକୁ ଚାପିଧରିଲ—ଛି—ଛି—ଅଲକ୍ଷଣୀ କଥା କୁହ କାହିଁକି ?

ଅବ୍ୟକ୍ତ ବ୍ୟଥାରେ ଭାଙ୍ଗି ପଡ଼ିଲ ପ୍ରତି ତନ୍ତ୍ରୀ । ଗଭୀର ରାତିର ଘନ ଅନ୍ଧକାର ତାର ଘନକୃଷ୍ଣ କେଶଗୁଚ୍ଛ ସଙ୍ଗେ ତାଲ ପକାଇ ମାତି ଆସୁଛି

ବ୍ୟଥାର ସୁରଭି ଧରି···ପଛ କଥା—ଆନନ୍ଦ ଦୁଃଖ ଗୋଳାଗୋଳି· ମିଶାମିଶି !

ସବୁ ଯାଇଛି । ମୃତ୍ୟୁର ଗହ୍ୱରରେ କେତୋଟି ଅମୂଲ୍ୟ ନିଧି ଧରି ତାର ଅବଶିଷ୍ଟ ଜୀବନ ବଢିବ, ଜୀବନ ଅଙ୍ଗନରେ ଅଜ୍ଞାତସାରରେ ଓହ୍ଲାଇ ଆସିବ ଅପରାହ୍ନ । ଏଇମିତି ବିଚାରି କରି ସେ ମିଳକୁ ମଣିଷ କରିବାକୁ ବଞ୍ଚିବ ।

ସାନପୁଅ ବାଳ ଉପରେ ଗୋଡ଼ ପକେଇ ଶୋଇଛି । ଆଖି ଲୁହରେ ବାଳ ଗୋଛା ଭିଜୁଛି । ତେଲ ବିନା ଫୁର୍ ଫୁର୍ ଉଡୁଛି । ଅଯତ୍ନ, ଅବହେଳା, ଅନାହାର ତଥାପି ଛିନ୍ନ । ଅକ୍ଷୟ ହୋଇ ରହିଛି । ଶେଷ ଚିହ୍ନ, ପ୍ରେମର ସ୍ମାରକ—ଆଃ— ପ୍ରୀତିର ଯେ ଏଇଠି ଧ୍ୱଂସିଛି ।

ବାଳ ଛିଣ୍ଡିଲାନି । ଅକ୍ଷୟ ରହିଲା ।

ଆଉ ସିଏ—ସୁସ୍ଥ ସବଳ ଛଅ ଫୁଟ ଲମ୍ବା, ଛାତିର ଚଉଡ଼ା ୩୮ ଇଞ୍ଚ, ସେ ଚାଲିଗଲେ···ଅକାଳରେ—ନୀରୋଗୀ ମଣିଷ !

ସବୁ ଅପ୍ରତ୍ୟାଶିତ । ଜୀବନର ମୋଡ଼ ବାଙ୍କି ଲେ କେଡ଼େବେଗେ ! ଆରତି ପୁଣି ସବୁ ସହିଲା—ଛାତିକୁ ପଥର କରି ହସିଲା—ସ୍ୱୀକାର ବି କଲା !

ମୃଦୁ ଆଲୋକରେ ଆପଣାର ଚାରୋଟି ଛୁଆଙ୍କୁ ଚାହିଁଲା ଆରତି । ଆଖି ଲୁହରେ ଭୂଇଁ ଭିଜିଲା···

ସେଇ···ତାଙ୍କର ସେଇ ଅମଙ୍ଗଳ ବାଣୀ ଫଳିଲା···

ଛିଡ଼ିଲା ନାହିଁ ବାଳ, ଅଥଚ ସେ ଚାଲିଗଲେ···

ଦଗ୍‌ଧ ସଳିତା ପରି ହୁ ହୁ ହୋଇ ଜଳୁଛି ଆରତି । ଜଳୁଛି ଛାତି । ଅତି ଅସହାୟ ଭାବରେ ନିରେଖି ଚାହିଁଲା ଆରତି ଧେଇ କଳା ବାଳ ଗୋଛାକୁ । ଏକ ଅବ୍ୟକ୍ତ ସମ୍ବେଦନାରେ ଭରି ଉଠିଲା ମନ—ଆହା ତାଙ୍କର ପ୍ରିୟ କେଶଗୁଚ୍ଛ··· ଆହା ମୋ ବାଳ ଲୋ—ମୋ ଧନ ଲୋ—ତତେ କେହି ଆଦର କରୁ ନାହାନ୍ତି ଲୋ—ମୋ ସୁନା ! ଚାରି ସନ୍ତାନର ଜନନୀ ଆରତି ହୋତାଙ୍କ ରକ୍ତ ସହସା ଚଞ୍ଚଳ ହୋଇ ଉଠିଲା ।

ଚାରି ଆଡ଼କୁ ଚାହିଁଲେ ସିଏ···

ନା—କେହି ନାହିଁ । ସମଗ୍ର ଜଗତ ନିଦ୍ରାଚ୍ଛନ୍ନ । ପାଗଳିନୀ ପରି ଆପଣାର ସୁଦୀର୍ଘ କୁଞ୍ଚିତ କେଶଗୁଚ୍ଛ ସାଉଁଟିବାକୁ ଲାଗିଲେ ସିଏ ପର ଲୋକଗତ ସ୍ୱାମୀଙ୍କର ଆବେଗବୋଳା ସ୍ପର୍ଶ···

ସେତେବେଳେ ଘଡ଼ିରେ ୧୨ ଟା ୨୫ । ଜୁନ୍ ମାସ ପନ୍ଦର...ଏକ ବିଶେଷ ସ୍ମରଣୀୟ ମୁହୂର୍ତ୍ତର ଦିନ ।

× × ×

ସେହିଦିନୁ ନବାଭରଣା ଶୁଭ୍ରସନ୍ତାନ ଜନନୀ ଆରତି ହୋତାଙ୍କ ସୁଦୀର୍ଘ କେଶ ଆଉ ଅଳସ ହୋଇନ...ଅସଜଡ଼ା ହୋଇନ । ପରମ ଯତ୍ନରେ ସେ ବାନ୍ଧନ୍ତି ତାଙ୍କର ଘନକୃଷ୍ଣ କେଶଗୁଚ୍ଛିକୁ...

କିନ୍ତୁ ଆରତି ନିର୍ଲିପ୍ତ, ଶାନ୍ତ, ଧରଣୀ ସମ ନୀରବ ।

କଥାଟା ଅନ୍ୟ ଭାବରେ ପଲ୍ଲବିତ ହେଲା ।

ଆଶ୍ଚର୍ଯ୍ୟ...

ଏ ବୟସରେ ପୁଣି ହେଲା କଣ ଆରତିଙ୍କର ?

ସବୁରି ତୁଣ୍ଡରେ କେତେ ସମ୍ଭାବନା, ସନ୍ଦେହର ସମାବେଶ, ଆରତି ହୋତା କିନ୍ତୁ ନିର୍ଲିପ୍ତ ଭାବରେ କେଶ ପ୍ରସାଧନରେ ଲାଗିଥିଲେ...କେଶର ଚର୍ଚ୍ଚାରେ ବେଶ୍ ସମୟ କଟେଇ ଦେଉଥିଲେ ତାପରେ...ବେଶ୍ ଅନେକ ଦିନ ପରର ଘଟଣା । ଆଉ ଗୋଟାଏ...

ଜୁନ ମାସର ଦୁଇ ତାରିଖ । ସେଇଟା ଥିଲା ତାଙ୍କର ବିବାହ ବାର୍ଷିକ ଦିନ । ଆକସ୍ମିକ ଭାବରେ ତାଙ୍କର ବସାଘରୁ ଆବିଷ୍କୃତ ହେଲା ଆରତି ହୋତାଙ୍କ ମୃତଦେହ । ସୁଦୀର୍ଘ କେଶଗୁଚ୍ଛ ସାହାଯ୍ୟରେ ଆତ୍ମହତ୍ୟା କରିଛନ୍ତି ଆରତି ହୋତା । ଲୁଗା ଧଡ଼ିର ଛାତପଟେ ଝୁଲେଇ ହୋଇ ପଡ଼ିଛି ସେହି ସୁଦୀର୍ଘ ସୁନ୍ଦର କେଶଗୁଚ୍ଛ । ନାଗସାପ ପରି ବେଢ଼େଇ ହୋଇ ରହିଛି...ହୁଏତ ଦେହ ଦଂଶନ କରିଛି ଆରତିଙ୍କୁ ।

"ଏ କାଳ ସର୍ପର ଜ୍ୱାଳା ସହି ପାରୁନି । ତାର ସହାୟତାରେ ମୃତପତିଙ୍କ ନିକଟକୁ ଯାଉଛି । ଜ୍ୱାଳାର ଉପଶମ ଅନିବାର୍ଯ୍ୟ" ପାଖରେ ଚିଠିଟିଏ ସମ୍ବୋଧନ ହୀନ...।—"ଏ ମୃତ୍ୟୁ ପାଇଁ ଦାୟୀ ଏଇ କେଶଗୁଚ୍ଛ ।"

ଆଶ୍ଚର୍ଯ୍ୟ !!!

ଜନରବ ଶୁଣାଯାଏ ସୁଦକ୍ଷ ଶିଳ୍ପୀ ଆଶୁତୋଷ ଦାସଙ୍କୁ ଶ୍ରୀମତୀ ହୋତାଙ୍କ କୁଞ୍ଚିତ କେଶ କୁଆଡ଼େ ବିଶେଷ ଭାବରେ ପ୍ରଭାବିତ କରିଥିଲା । ଶ୍ରୀ ଦାସ ପ୍ରେମ ନିବେଦନ କରିଥିଲେ—କୁଆଡ଼େ ସେ ରୋମାଞ୍ଚକର ନୂତନ ଅଧ୍ୟାୟ ଏଥି ନିମନ୍ତେ ଦାୟୀ ।

ହୁଏତ ତାର ପ୍ରତିକ୍ରିୟା...

ହୁଏତ ସମ୍ଭବ । ମନୀଷ ବଡ ଚଚଣ ଥିବ କିଏ ଜାଣେ । ସହକର୍ମୀଙ୍କ ମୁଖରୁ ଶୁଣାଯାଏ, କେଜାଣି·· ହୋଇଥିବ । ହେବା ବ ବଚନ ନୁହେଁ କହୁ—ଏ ଯୁଗର ଧର୍ମ ସିଏ ଶ୍ରୀ ଦାସ ଥିଲେ ଅବା କଣା ପଡ଼ୁଥାନ୍ତା···

ମାସ ଘଟଣାର ଦୁଇଦନ ପୁର୍ବରୁ ଶ୍ରୀଯୁକ୍ତ ଦାସ ବୋଧହୁଏ ଫେରାର । ହୁଏତ କାମରେ ଯାଇ ବ ପାରିଥାନ୍ତ । ନକଟରେ ହୁଏତ ଫେରିଆସି ପାରନ୍ତ ··କିଏ ଜାଣେ ? ନଚେତ୍ ତାଙ୍କର ଆକସ୍ମିକ ଦ୍ରସ୍ଥାନଟା ସନ୍ଦେହଜନକ ବେଣ୍ ।

ଯଦ ଫେରଥାନ୍ତେ ତେବେ ଅବା କାରଣଟା ଜଣା ଯାଇ ପାରିଥାନ୍ତା । ଏଇନ ଜନରବ···ନବୁଜ ମନ କୋଠଶ ଖବର କଣ ସବୁବେଳେ ମିଳେ ଖାଲ ସମ୍ଭାବନା ସିନା ଉଠେ ।



## ● ଗୀତାର ମୁକ୍ତି

"ହେଇଟି ଝିଅ କହୁ ନଥିଲି ମୁଁ ସ୍ମାଣ କଥା ମ ! ମୋ ଝିଅ ଉମା କଥା ମ ! ଏଇ ପରା ଉମା ହେ ।"

"କାହିଁକି କହୁନାହାନ୍ତି, କ'ଣ ହୋଇଛି ଝିଅର ।" ଗୀତା ହସ ହସ ମୁହଁରେ ପଚାରିଲା ।

"ଆଉ ଅବସ୍ଥାରେ ଅଛି ସେ ! କାଲି ବାପ ଯାଇ ନେଇ ଆସିଛନ୍ତି । ତମେ କହୁଥିବ ଝିଅ, ଏ ଦାହ ଅବସ୍ଥା, ଏଥିରେ ପୁଣି ୯ ମାସ ପେଟରେ । ଘରଯାକର ସବୁ ଯାଇଛି କରିବ । ଶାଶୁ ସାହାବଲାଣ୍ଟା ଯେ··· ।"

"ବୋଉ; ଶୁନହେଲୁ ? କ'ଣ ଏମିତି କହୁଛୁ ଏଣୁତେଣୁ—ଛି !"

"ଶୁଣ ମ ଶୁଣ । ଝିଅକୁ ମୋର ବାଧୁଯାଉଛି । ନାଇଁ, ତୋ ଶାଶୁ ତ କୋଟିକିଆ କି ତୁଳସୀ !"

ସାମ୍ନା ଚୌକି ଦେଖାଇ ଗୀତା କହିଲା, "ବସ ଉମା, ଏଇଠି ବସ । ତମେ ହେଲେ ବସ ମ ନାନୀ !"

ପତଳା ନାଲି ଓଠ ଦଉଟିରେ ବ୍ୟକ୍ତିତ୍ୱର ବହଳିଆ ଛାପ । ତୀକ୍ଷ୍ଣ ନାକ ଉପରେ ଦାଉ ଦାଉ ଜଳୁଛି ମମତାବୋଳା ଗଭୀର ଦୁଇଟି ଭସାଣିଆ ଆଖି । ଚେପ୍ଟିଆ କପାଳକୁ ଘୋଡ଼େଇ ହୋଇପଡ଼ୁଛି କୁଞ୍ଚୁ କୁଞ୍ଚିଆ ବାଳ । ବିଧବା ନା ସଧବା ନା ଅଭିଆଡ଼ି ବାରିହେଉନି । ପତଳା ଅଳତା ଉଚ୍ଚର ସୁନ୍ଦର ଶାନ୍ତ ରୂପ । କଅଁଳିଆ ଲମ୍ବା ମୁହଁ । ବୟସ ବି ଆଦୌ ବାରି ହୁଏନି । ଓଠରେ ଲାଗି ରହିଥାଏ ସଦାବେଳେ ହସର ଛଟା । ମାତ୍ର ଆଠଟି ମାସରେ ସେ ସବୁରି ମନ କିଣି ନେଇଛନ୍ତି ଏଇ ଗାଁ ଗହଳିର ବଚନ ମୁଣିଙ୍କ ମନ ।

"କ ଘର ଝିଅ ମ !"

"ମତେ ନାନୀ ଡାକ ମ । ଦାଦ କାହିଁକି ଡାକୁଛ ?"

"ନାଇଁ ମାଉସୀ ଆପଣ ମୋଠୁ କେତେ ବଡ଼ । ଆଗ ବସନ୍ତୁ ନ ହେଲେ କିଛି ଶୁଣିବନି ।"

ଅଭିମାନ କଲେ ସୁନ୍ଦର ମୁହଁ ଭରିଯାଏ । ହସିଲେ ଗାଲରେ ଟିପଚିହ୍ନ ପଡ଼େ । ଆହା ଏଡ଼କ ସୁନ୍ଦର ରୂପ ! ତାଳୁରୁ ଉଳପା ଯାଏଁ କେଉଁଠା

ବାଛି ନେବାକୁ ନାହିଁ ··ହେଲେ—ଏତେ ବଡ଼ ସୁନ୍ଦରୀଙ୍କୁ ନମିଳେ ବର—କେଜାଣି ଲୋ ମା !

" ଏ ଅପନ୍ତରା ଯାଗାରେ କଅାଁ ଚାକିରୀ କଲେ ମ ? କୋଉ ଗାଆଁ ଯାଙ୍କ ଘର ଜାଣେ ପାରବୋଉ ? ଆମର ପାଇଁ ଏ ବୟସରେ ଏ ହନ୍ତସନ୍ତ !

" କି ଜାଣ ହେ ? ହଇହେ ଆମ ଭଲଘର ଝିଅ ହୋଇଥିଲେ ଭୋଗ-ମଣ୍ଡପ ଅଭଡ଼ା ଆଣ୍ଟିକା ପରି ଝୋଲି ବରଷ ନ ପୂରୁଣୁ ବରଘର ମୁଣ୍ଡେଇକରି ନେଇ ସାରନ୍ତେଣି ! ଏ ରୂପକୁ ପୁଣି ବର ମିଳନ୍ତା ନାହିଁ ? ଅଭାଗ୍ୟ କଥା । ଆଉ କଣ ଦୋଷ ଥିବ ହେ !

ଖାଲି କ'ଣ ରୂପ ? ଗୁଣରେ କିଏ ବା ଖୁଣିବ ? ଏତିକି ନରମ କଥା ! କଥା ଶୁଣିଲେ ଦେହର ଅଧା ରୋଗ ପଳେଇବ । ପେଟ କାକର ହେବ ।

"ନାଇଁ ହେ ମତେ ପରା କେମିତି କେମିତି ଲାଗୁଛି । ତାଙ୍କର ଯୁଁ ଦାଆଁ ପୂଜା, ଓଷାବ୍ରତ ନା"···

"କେଜାଣି ଲୋ ମାଆ, ସିନ୍ଦୁର ତ ପିନ୍ଧୁ ନାହାନ୍ତି—ସବୁବେଳେ ଧୋବଶାଢ଼ୀ !"

"ହୁଏତ ବାଳୁତ ବିଧବା ହୋଇଥିବେ । ଏ କାଳକୁ ବିଧବା ପାଠ ପଢ଼ି ଚାକିରୀ କରୁଛନ୍ତି ହେ !"

"ସେଥିରୁ କଣ ମିଳିବ ମ ? ଯା—ଯା—କଣ କହୁନ୍ତନ ଚଡେଇ ଚିରୁବୁଣୀଙ୍କର ପେଟ ଚହଲିବାକୁ । ଖାଲି କ'ଣ ଡାକ୍ତରାଣୀ ଧନ୍ୱନ୍ତରୀ ହେ ! ହାତ ମାରିଦେଲେ କେତେ କେତେ ରୋଗ ଗୋଟାପଣେ ଓହ୍ଲେଇପଡ଼ିବ । ଏ ଗାଁଟାକୁ ପୂରା କେଇଟା ମାସରେ ସେ ବଦଳାଇ ଦେଲେଣି । ସବୁରି ମୁହଁ ବାଛି ହୋଇଗଲାଣି ।"

" ଯାଙ୍କୁ ଜାଣିନ···କେମିତ ଟିଙ୍ଗିଶୁଳା ଅବୁଝା ମଣିଷ···"

"ଆଲୋ ଯେମିତ ଡାକ୍ତରାଣୀ କହି ଦେଇଛନ୍ତି ଯୋକ ମୁହଁରେ ଲୁଣ ଦେଲା ପରି ଦପ୍‌ଖତ କରିଦେଲେ । ଯାହା କହି ଭଉଣୀ, ପେଟର ଝିଅ ଏମିତି କରିବେନ । ଅପରେସନ୍ ପରେ ଏବେ କେତେ ଦମ୍ଭ ଆସିଗଲାଣି । ଦେହରେ ବଳ ପଶିଲାଣି । କହିଲି—ଆଗରୁ ହେଲେ ଏ ବୁଦ୍ଧି ବତାଇ ଥାଆନ୍ତି···ପାଞ୍ଚ ପାଞ୍ଚଟା ପିଲା ଧରି ଏଭଳି ସନ୍ତୁଳି ହୋଇ ନ ଥାନ୍ତୁ ଆମେ !

ତମେ କହୁଛ କି ପାରବୋଉ, ମୋ ଝିଅ ଇନ୍ଦୁକୁ ଆଣିଥିଲି । ହେଲେ ଅପରେସନ୍ କଥା କହିଲେ ନ ! ଆଉ କଆରୀ ଔଷଧ ଦେଲେ । ମୁଁ ତ ତାଟକା । ତଳ ଉପର ଯାଇ ଭଉଣୀ ଯୋଡ଼ାକ ଦ ବରପିଆ କଣ୍ଢ । ଏଥର ପାଞ୍ଚ ବରଷ ଆସି

ହେଲଣି । ଇନ୍ଦୁ ଦେହରେ କି ସୁନ୍ଦର ମାଉଁସ ଲାଗିଲାଣି ! ହାତଟିଅଣ୍ଟା ତ ଗଣ୍ଡକୁଣ୍ଡେଇ ଭଲ ସୁନ୍ଦର ହୋଇଛି । ଇନ୍ଦୁ ନେଇ କରି ଆସିଥିଲା ଡାକ୍ତରାଣୀଙ୍କ ପାଖକୁ । ବର ଘରଜା ଦୁହେଁ ଆସିଥିଲେ । ଖୁସି ଖୁସି ହେଲେ ଡାକ୍ତରାଣୀ । କହିଲେ—ବୁଝିଲ ଚାରି ବର୍ଷ ବାଦରେ ପିଲାହେଲେ ଦେହ ଏମିତି ରହିଥିବ । ମା'ଆ ଦେହ ଆଦୌ ଭାଙ୍ଗି ପଡ଼ିବନା ! ପିଲା ଦେହ ମଧ୍ୟ ଖୁବ୍ ଭଲ ରହିବ ସତକୁ ସତ ଇନ୍ଦୁ ପିଲାଙ୍କୁ ଦେଖିଲଣି ?

କି ସୁନ୍ଦର ପୁଅଟିଏ, ଆଉ ଝିଅଟିଏ ଲୋ ! କେହେ ନାହିଁ କି କଷ୍ଟ ନାହିଁ । ଆଉ ତାର ସାଙ୍ଗର ସ୍ୱାମୀକୁ ଦେଖୁନ ? ଆଠବର୍ଷରେ ଆଠଟା ପିଲା । ଶେଷ ବେଳକୁ ଆସିଥିଲା ଧୋଧାଘର । ଆଉ ଡାକ୍ତରାଣୀ··ମଣି··ନୁହେଁ ଲୋ ସାକ୍ଷାତ ଠାକୁରାଣୀ । ଟପ ଟପ ହୋଇ ବଡ଼କୋଳି ଟୋପା ଭଳି ଲୁହ ଆଖିରୁ ଝଡ଼ି-ପଡୁଥାଏ । ତା ସାଥିରେ ବହୁତ ଲାଗିଲେ । ତା ପରେ କଟକ ବଡ଼ ଡାକ୍ତର-ଖାନାକୁ ପଠାଇ ଦେଲେ । ହେଲେ କ'ଣ ଆଉ ତା' ଦେହରେ ଥିଲା ? ପେଟଟା ତ ଜଳପୋଡ଼ି ପାଉଁଶ ହୋଇଯାଇଥିଲା ହେ ।

"କି ରୋଗ ମ ।"

"କ୍ୟାନସର । ପିଲା ରହିବା ଥାନରେ କ୍ୟାନସର ହୋଇଥିଲା । ଆଠ ଆଠଟା ବାଲୁତ ପିଲା ଅନାଥ ହେଲେ । ଏବେ ପୁଣି ସ୍ୱାମୀ ବର ପାଇଁ କନ୍ୟା ଖୋଜା ପଡ଼ୁଛି ଯେ—ଏଇ ସଂସାର '

ସତେ ମ ! ସ୍ତ୍ରୀ ମଲା ଖବର ପାଇ ସେ ଦିନ ମୋଟାକ ଡାକ୍ତରାଣୀ ଉଠି ନାହାନ୍ତି ଶେଯରୁ । ଜାଣିଛ, ସେଦିନ ସେ ଛୁଟି ନେଲେ ।

ଏଇ ଡାକ୍ତରାଣୀ ଗୀତା ମିଶ୍ର । ଜନପ୍ରିୟ ଲେଡ଼ି ଡାକ୍ତରାଣୀ—

ଏବେ ଆଉ ଗାଁ । ମୁଣ୍ଡ ପୋଖରୀ ତୁଠରେ ପର ଝିଅ, ପର ବୋହୂଙ୍କ ଚର୍ଚ୍ଚା ହୁଏ ନାହିଁ । ସବୁରି ତୁଣ୍ଡରେ ପଦେ କଥା ଆଲୋଚନାର କେନ୍ଦ୍ରସ୍ଥଳ । ନୂଆ ଡାକ୍ତରାଣୀ ଆଉ ତାଙ୍କର ପ୍ରଶଂସା ।

ପରିବାର ନିୟନ୍ତ୍ରଣ କେନ୍ଦ୍ର ସାଇନ୍‌ବୋର୍ଡ଼ ପାଖରେ ମାଈପିମାନଙ୍କର ଭିଡ଼ ଲାଗିଥାଏ ପିମ୍ପୁଡ଼ି ଧାର ପରି । ସବୁରି ମନ ଜାଣି ଔଷଧ ଦିଅନ୍ତି ନୂଆ ଡାକ୍ତରାଣୀ ଅଳ୍ପ ବୟସର ବୋହୂମାନେ ଲୁପ୍ ନିଅନ୍ତି ; ଔଷଧ ନିଅନ୍ତି । ଦେହକୁ ବଳ ହେବ । ବରଷକୁ ବରଷେ ପିଲା ହେବ ନାହିଁ । କୁଟୁମ୍ବ ବଢ଼ିବ ନାହିଁ । ଅଭାବ ହେବ ନାହିଁ । ତୁଣ୍ଡ ବାଇଦ ସହସ୍ର କୋଶ । ଆତୁରି ଆସନ୍ତି ମାଇପେ ବହୁତ ଦୂରରୁ । ଛତା ଥୋଇ ହାତ ଯୋଡ଼ି ବସି ପଡ଼ନ୍ତି । ହଳଦୀ ଗୁରୁ ଗୁରୁ ଗାମ ଗାଉଛି, ଘରେ ଭାତ ନାହିଁ ପୁଅ ବହୁତ···ଲୋଡ଼ା ନାହିଁ ହେ ଦିଅ ।

ମା—ତୁ ଜଗଜ୍ଜନନୀ···ତୁ ରକ୍ଷାକର ମା ! ବରଷକୁ ବରଷ ଅଲକ୍ଷଣୀ କାଠ ମୁଣ୍ଡାପରେ ଛୁଆ ଜନମ କରି ଥୋଇ ଦେଉଛୁ । ମୋ ଦେହ ଶୋଷି ଖାଇଗଲାଣି । କୁଆଡୁ ଆସିବ କହ ?

ନାରୀ ଗୃହାଣୀ । କହଁ ଲ କଥା । ବହୁରୂପ ନାହିଁ । ବିରକ୍ତି ନାହିଁ । ଖାଲି ଅଛି ହୃଦୟଭରା ସହାନୁଭୂତି··ସ୍ନେହ ଆଉ କରୁଣା । ଏମାନେ ଅଶିକ୍ଷିତ ଦରିଦ୍ର ଜନତା । ଚିତ୍ତବିନୋଦନ ନିମନ୍ତେ ଏମାନଙ୍କର ସୁଯୋଗ ନାହିଁ, ସମ୍ବଲ ନାହିଁ । ନାହିଁ ଉନ୍ନତ ରୁଚିବୋଧ । ଅବିଶ୍ରାନ୍ତ ପରିଶ୍ରମରେ ପରିଶ୍ରାନ୍ତ କ୍ଲାନ୍ତ ଦେହର ଗୃହେଁ ଟିକିଏ ଆନନ୍ଦ, ଟିକିଏ ଆମୋଦ, ଟିକିଏ ଆହ୍ଲାଦ । କ୍ଷୁଧିତ ଦେହ ଆଶ୍ରୟ ଖୋଜେ ପତ୍ନୀର ଦୁର୍ବଳ ଦେହତଟରେ । ହେଲେ ଦୁଃଖ ଅପସରି ଯାଏ ନାହିଁ ବରଂ ଦ୍ୱିଗୁଣିତ ହୁଏ । ପରିଣାମରେ ଅନାଟନ, ଘୋର ଅଭାବ, କ୍ଷୁଧା, ଯନ୍ତ୍ରଣା । କୁତ୍ସିତ ଜଘନ୍ୟ ଦାରିଦ୍ର୍ୟ ଚକ୍ରର ପରିଧି କ୍ରମଶଃ ବଢ଼ି ବଢ଼ି ଚାଲେ ।

ମୁକ୍ତି କାହିଁ ?···

ମନକୁ ପାଇଲା ପରି ସଞ୍ଜ ଭାଷାରେ ବୁଝାଇ ଦିଅନ୍ତି ଡାକ୍ତରାଣୀ···

ମାଇପିମାନଙ୍କୁ ନେଇକରି ଆସନ୍ତୁ···

ଆଉ ଚିନ୍ତା ହେବ ନାହିଁ···

ଜଞ୍ଜାଳ ରହିବ ନାହିଁ ··

ବିରକ୍ତି ଆସେ ନାହିଁ ? ଆସେ ନାହିଁ କ୍ଲାନ୍ତି ? ଅନବରତ ଏଇ ଅଗଣିତ ମୂର୍ଖ ଲୋକଙ୍କ ସାଥିରେ କାରବାର କରି ବିତୃଷ୍ଣା ମଧ୍ୟ ଆସେ ନାହିଁ ? ଆଶ୍ଚର୍ଯ୍ୟ···

ଜନ୍ମ ନିୟନ୍ତ୍ରଣର ମହତ୍ତ୍ୱ···

ସେ ଦିଗରେ ଲୋକଙ୍କୁ ଆଗ୍ରହୀ କରିବା ପାଇଁ ଅହରହ ପ୍ରଚେଷ୍ଟା ଚାଲିଛି ତାଙ୍କର·· ଖାଲି କଣ ଚାକିରୀର କର୍ତ୍ତବ୍ୟ । ···ଆଉ କିଛି ନୈତିକ ବୋଧ ନୁହେଁ ?

କେହି ଆସିବାକୁ ରାଜି ହେଲେନି । ହେଲେ ଏଇ ବିଚିତ୍ର ମଫସଲ ଗାଁ'ରେ ଗୀତାର କଣ ଶ୍ୱାସରୁଦ୍ଧ ହୋଇଯାଏ ନାହିଁ ? ଏ ପରିବେଶରେ ?

ମନ ଭିତରଟା କେବେ କଣ କଲବଲ ହୁଏ ନାହିଁ ?

ଲୋଭ ହୁଏ ନାହିଁ ସାଉଁଟିବାକୁ ଟିକିଏ ଆରାମ···

ଟିକିଏ ବିଶ୍ରାମ···

ଟିକିଏ ମୁକ୍ତି···

ଅମୃତ ଆସ୍ୱାଦନର ସ୍ୱପ୍ନ ତରୁଣୀ ଗୀତା କ'ଣ କେବେ ଦେଖିନାହିଁ ? ଜୀବନ-ଅଗଣାରେ କେବେ କଣ କାହାର ପଦକ୍ଷେପ ହୋଇନାହିଁ ? ମାନସ-ପୁରୁଷ ଆସିନାହିଁ ?

ନାରୀ ଜୀବନର ଚରମ ସାର୍ଥକତା ତା'ର ମାତୃତ୍ୱ ।

ତେବେ...

କଅଁଳିଆ ଲାଲ ଟୁକୁ ଟୁକୁ ପିଲାମାନଙ୍କୁ ନିଜ ହାତର ଆଙ୍ଗୁଳିରେ ମାତୃଗର୍ଭରୁ ପୃଥିବୀର ଆଲୋକକୁ ଆଣିଲାବେଳେ ଏମିତି ଏକ ସୃଷ୍ଟି କରିବାର ମଧୁର ସ୍ୱପ୍ନ କ'ଣ ତାଙ୍କ ମନ ମଧ୍ୟରେ ଉଙ୍କି ମାରେ ନାହିଁ ?

ଜଳି ଜଳି ଯାଏ ନାହିଁ ଗୁଡ଼ା ' ଅତୀତର ପ୍ରତ୍ୟାଖିତ ପ୍ରେମ କଥା ସ୍ମରଣ କରି ଅନୁତାପରେ ଥରି ଉଠେନା କି ସ୍ନାୟୁ ତନ୍ତ୍ରୀ ? ଅତୃପ୍ତ ଆକାଂକ୍ଷାର ନିଆଁ କୁହୁଳି ଉଠେନା କି ସେହି ସୁନ୍ଦର ଶରୀର ତଳେ ? ସେ କଣ ଅନୁଭୂତିଶୂନ୍ୟ ଗୋଟାଏ ଯନ୍ତ୍ର ? ନିଜକୁ ବହୁବାର ଏ ପ୍ରଶ୍ନ ପଚାରିଛନ୍ତି ଲେଡ଼ି ଡାକ୍ତର ଗୀତାଞ୍ଜଳି ମିଶ୍ର ।

ମେଡ଼ିକାଲ କଲେଜରେ ୬ ବର୍ଷ ଛାତ୍ରୀ ଜୀବନରେ ନିଜ ସହିତ ବହୁବାର ମୁହାଁମୁହିଁ ହେବାକୁ ହୋଇଛି ତାଙ୍କୁ । ସେଉଁଦିନ ତାଙ୍କ ସହପାଠୀ ଏକାନ୍ତ ଭଦ୍ର ମେଧାବୀ ଛାତ୍ର, ସଜିତ୍ ଆଗ୍ରହରେ ହାତ ବଢ଼େଇ ଆସିଥିଲା ! ସେ ବନ୍ଧୁତ୍ୱକୁ ନିର୍ମମ ଭାବରେ ପ୍ରତ୍ୟାଖ୍ୟାନ କରି ପୁଣି ନିଜକୁ ଏଇଭଳି ପ୍ରଶ୍ନ କରିଥିଲେ ଗୀତା ଯଦିଓ ସଜିତ ତାଙ୍କୁ ଭଲ ଲାଗୁଥିଲା । ଆହତ ସଜିତ୍ ମୁଖରେ ବି ଫୁଟିଥିଲା ସେହି ପ୍ରଶ୍ନ "କାହିଁକି ତୁମେ ସ୍ୱାଭାବିକ ନୁହଁ ଗୀତା...?

କାହିଁକି ତୁମେ ଏତେବଡ଼ ବ୍ୟତିକ୍ରମ ?

ହଁ, ଚିରକାଳ ଗୀତା ଏକ ବ୍ୟତିକ୍ରମ । ତାର କଅଁଳିଆ ମନରେ ଲୁହା ହାତୁଡ଼ିଗୁଡ଼ାକ ସେଇ ଶ୍ରେଷ୍ଠ ବନ୍ଧୁସବୁ ଏତେ ବଡ଼ ବଡ଼ ପାହାର ପକେଇ ଦେଇ ଯାଇଛି ଯେ ସବୁ ଆକାଂକ୍ଷା, କାମନା, କିଶୋରୀ ସୁଲଭ ମଧୁର ସ୍ୱପ୍ନ ସେ ଆଘାତରେ ଚୂର୍ଣ୍ଣ ହୋଇ କେବେ ଅଜାଣତାରେ ମିଶିଯାଇଛି ଜାଣିନାହାନ୍ତି ଗୀତା । ପରିଣତ ହୋଇଛି ପୁଞ୍ଜୀକୃତ ଅଭିମାନ, କ୍ଷୋଭ, ଅଭିଯୋଗ, ଆତ୍ମଗ୍ଲାନି ଆଉ ବିଦ୍ରୋହରେ ।

ସେଇ ବିଦ୍ରୋହର ନିଶା ମନରେ ଆଣିଦେଇଛି ଏକ ଆଗ୍ନେୟ ଶପଥ ।

ସେ ହେବ ଲେଡ଼ି ଡାକ୍ତର ।

ରକ୍ଷା କରିବ କେତେ କଅଁଳ ନିରମାଖୀ ଅବହେଳିତା ଗାଆଁ ଝିଅଙ୍କୁ । ସତେ କ'ଣ ଏଥିରେ ତା ଭୋଉର ଆତ୍ମା ଶାନ୍ତି ପାଇବ ?

ଆଉ ତା ନାନୀର ଅପୂର୍ଣ୍ଣ ଇଚ୍ଛା ?

ଲେଡ଼ି ଡାକ୍ତର ଗୀତାଞ୍ଜଳି ମିଶ୍ର ଭାବନା ରାଜ୍ୟରୁ ଫେରି ଆସିଲେ । ବସନ୍ତୁ କହିଦେଇ ପୁଣି ଥରେ ମୁହଁ ଟେକି ଆଗନ୍ତୁକାଙ୍କୁ ଚାହିଁ ରହିଲେ ।

ଆସନ୍ନ ମାତୃତ୍ୱର ସ୍ୱାକ୍ଷର ସମଗ୍ର ଶରୀରରେ । ଝିଅଟି ଅସାଧାରଣ ରୂପସୀ ଥିଲା, କିନ୍ତୁ ଏ ତ ରୂପର ପଦଚିହ୍ନ !

କଳ୍ପନା ନେତ୍ରରେ ହିଁ ଦେଖିହେବାକୁ ହୁଏ ସେହି ଲୁପ୍ତଲାବଣ୍ୟ ଓ ତାର ମାଧୁର୍ଯ୍ୟ ।

ପୁରୁଷର ଲୋଲୁପ କ୍ଷୁଧା କ୍ଷତବିକ୍ଷତ କରିଛି ଅପରୂପ ଦେହ ଲତିକାକୁ ! ଚିପୁଡ଼ି ନିଃଶେଷ କରିଛି ଶରୀରର ଲାବଣ୍ୟକୁ । ପ୍ରଶସ୍ତ କପାଳ ତଳେ ଅଦ୍ଭୁତ ସୁନ୍ଦର ନେତ୍ର ଯୁଗଳ । ଦେଖିଲେ ଆଖି ଲାଖି ରହେ ।

ସୁନ୍ଦର ନାଆଁଟି 'ଉମା' ।

କୁମାରସମ୍ଭବ ମନେ ପଡ଼ିଲା ଡାକ୍ତରାଣୀଙ୍କର ।

ପଚାରିଲେ; "କେତେ ବର୍ଷ ହେଲା ବାହାଘର ?"

ମୁହଁ ପୋତିଲା ଉମା ଲଜ୍ଜାରେ ।

ଆବୁରି ପଡ଼ି ତା ବୋଉ କହିଲେ, 'ମଲା—ଏ ମଙ୍ଗୁଶୁରକୁ ପରା ପାଞ୍ଚ ବର୍ଷ ପଶିବ । ସେ ଭିତରେ ପିଲା ହେଲେଣି । ଯୋଉଡ଼ି ଭାଙ୍ଗି ଗଲାଣି । ଏ ଥରକୁ ମିଶାଇ ପାଞ୍ଚ ଥର ।"

ଲାଜରେ ମାଟିରେ ମିଶିଯିବ ଅବା ଲାଜକୋଳି ଲତା ! ଉମା ମୁହଁ ନାଲି ପଡ଼ିଗଲା ।

ଗୀତା ମିଶ୍ର ଆଦରରେ ପାଖପଟକୁ ଡାକିନେଲେ । ପରୀକ୍ଷା କଲେ ଗୋଟି ଗୋଟି କରି । ରକ୍ତଶୂନ୍ୟ ଦୁର୍ବଳ ମୁଖ । ଯେତେ ଅବା ରୌଦ୍ରକ୍ଳାନ୍ତ ପ୍ରଭାତର ମରଣାହତ ପାଣ୍ଡୁର ରୂପ ।

ଆଖି ଭିଜିଗଲା ।

ଦୀର୍ଘ ନିଃଶ୍ୱାସ ପଡ଼ିଲା ।

ଏହି ଅଭିଜ୍ଞତାକୁ ଭୁଲିବାକୁ ଆପ୍ରାଣ ଚେଷ୍ଟା କରି ମଧ୍ୟ କାହିଁକି ଭୁଲି ପାରୁ ନାହାନ୍ତି ଗୀତା ମିଶ୍ର ?

ସେହି ଉହି ଉହି ତାତିଲା ହାଉଳିଆ ପୁଣି ପିଟି ହୋଇ ଯାଉଛି ହୃଦ ଭିତରେ ।

ଫୋଟକା ଶୁଖିଥିଲା ପରା ?

ପୁଣି ଏ ରକ୍ତ କ୍ଷରଣ କାହିଁକି ?

ପୁଣି ନୂଆ ଫୋଟକା ଉଠୁଛି ଯେ ।

ଡାକ୍ତରାଣୀ ଜୀବନରେ ବହୁ ଝିଅଙ୍କ ବେଦନା ସେ ଅନୁଭବ କଲେଣି ।

ଏମିତି ଉଠୁଥିବ ଫୁଟୁଥିବ, ଯେତେବେଳଯାଏ ନାରୀ ସହି ଆସୁଥିବ ପୁରୁଷର ଅତ୍ୟାଚାର, ପୁରୁଷର ଉପଭୋଗ କଣ୍ଢେଇ ହୋଇ ରହିଥିବ, ବଢୁଥିବ ଏମିତି

ଅନାବଶ୍ୟକ ଅନାକାଂକ୍ଷିତ ସନ୍ତାନର ସ୍ୱର ଦୁର୍ବଳ କଣ୍ଠରେ । ଭିନ୍ନ ପ୍ରତିବାଦରେ ପ୍ରତିବର୍ଷ ନାଶ ହୋଇଥିବ ଭୋଗର ସାମଗ୍ରୀ । କୌଣସି ମୁକ୍ତି ନିଷ୍କୃତି ହୁଏ ନାହିଁ ।

ଏଥିରୁ କ'ଣ ମୁକ୍ତି ନାହିଁ ?

ବିଶ୍ରାମ ନାହିଁ ?

ମୁଠା ମୁଠା ଦୀର୍ଘଶ୍ୱାସର ସମଷ୍ଟି କ'ଣ ଖାଲି ନାରୀ ?

ସେ କ'ଣ ବ୍ୟକ୍ତିସତ୍ତା ନୁହେଁ ?

ଖାଲି ଭୋଗ ସାମଗ୍ରୀ ?

ନା—ନା—ଜାଗ୍ରତ କରିବାକୁ ହେବ ସେହି ସୁପ୍ତ ବ୍ୟକ୍ତିସତ୍ତାକୁ । ଡାକ୍ତରାଣୀଙ୍କ ମୁହଁ ଉତ୍ତେଜନାରେ ଲାଲ ପଡ଼ିଗଲେ । ଅନ୍ୟାୟ ବିରୁଦ୍ଧରେ ସେ ଲଢ଼ିବେ ।

ହଁ, ଏମିତି ଦିନେ ଦିଶୁଥିଲା ନାନୀ ··

ପାରୁ ନାନୀ ··

ତା'ର ବଡ଼ଭଉଣୀ ··

ସେତେବେଳେ ଗୀତାକୁ କେତେ ବର୍ଷ ହୋଇଥିଲା ? ଏଗାର କି ବାର ? କେଜାଣି । କିନ୍ତୁ ବୟସ ତୁଳନାରେ ଅଧିକ ଚିନ୍ତା କରି ପାରୁଥିଲା ଗୀତା । ଚିନ୍ତା କରିବା ପାଇଁ ପରିସ୍ଥିତି ଅନୁକୂଳ ଥିଲା ଅବା···!

ନୁଆଣିଆଁ ସ୍କୁଲଘରର କଣପଟ ଟେଲୁର ଘରେ ଗୋଟି ଗୋଟି ହୋଇ ୧୦ଟି ଏଠି ଘର ଗଢାସରିଛି । ଗୋଟିଏ କଉଡ଼ି ବି ଖସିପଡ଼ୁନି ସେଥିରୁ ।

ପ୍ରତି ବର୍ଷ ଏ ଘର ଗଢ଼ା ହେବହିଁ ହେବ । ଏ ନିୟମର ଆଦୌ ବ୍ୟତିକ୍ରମ ନାହିଁ ।

ରୁଟିନ୍ ବନ୍ଧା ବନ୍ଧ ଜୀବନ । ସାତମାସର ପିଲାକୁ ତଳେ ଗଡ଼େଇ ଦେଇ ତା ବୋଉ ନଳାମୁହଁରେ ବସି ହାଣ୍ଡି ହାଣ୍ଡି ବାନ୍ତି କରିବ । ମୁଢ଼ି ଉପରିପାଣି ମୁନ୍ଦାଏ ପିଇ ଖାଲି ପେଟରେ ଧାନ କୁଟିବ । ପୋଖରୀରୁ ଯୋଡ଼ା ଯୋଡ଼ା ପାଣି ଆଣିବ । ଆଉ ରୋଷେଇ କରିବ ।

ନନା ପାଟି ଫିଟାନ୍ତି ନାହିଁ । ହେଲେ ଥରେ ଲୁଣିଆ କି ଅଲୁଣା ହେଲେ ଥାଳି ଫିଙ୍ଗନ୍ତି, ଗିନା ଫିଙ୍ଗନ୍ତି, ଗୋଇଠାମାରି ଗଡ଼ାଇ ଦିଅନ୍ତି । ବୋଉ ଉପରେ ବାଡ଼ି ପଡ଼ିବା ପରେ ଥରେ, ତୁଣ୍ଡ ଫିଟାଏ ନାହିଁ ।

ପିଲାଙ୍କୁ ବାଦେଲେ ପୂରୁ ନ ପୂରୁଣୁ ବୋଉ ନିଜର ଭଗ୍ନ ଦେହଟାକୁ ଟାଣି ନେଇ ଯାଏ ଟେଲୁର ଘର କବାଟ କିଳିଦିଏ । ଗୋଟାଏ ବିଭତ୍ସ ଗୁପ୍ତ ଚିତ୍କାର, କୁଁ କୁଁ ବ୍ୟାକୁଳ କାନ୍ଦଣା ସମସ୍ତେ ଶୁଣନ୍ତି । ଗୀତା, ନାନୀ, ମୋନାନୀ,

ଅଲନାମୀ, ରମୁଭାଇନା, ମଣ୍ଟୁଭାଇନା, ଆହୁରି ସମସ୍ତେ ! କିନ୍ତୁ ଗୀତାର ସାଥି ହେବ ଏମିତି ଅଜଣା କ୍ରୋଧ ଓ ଗ୍ଲାନିର ଦାହରେ ଜଳି ଜଳି ଉଠେ କାହିଁକି ?

ସେ ବେଶୀ କାମ କରେ ବୋଲି···?

ନା—ତ ! ଅଧିକ କାମ ତ ନାମୀ କରେ । ଗୀତା ଭଲ ପାଠ ପଢ଼େ ବୋଲି କମ୍ କାମ କରେ ସଦାବେଳେ । କାରଣ ସେ ଫାଷ୍ଟ ହୁଏ ।

ତେବେ ??

ସାଙ୍ଗ ଜୀବନଟା ଗୋଟାଏ ମଣିଷ କ୍ରମାଗତ ଘରରେ ଏକ୍ସୁଡ଼ଶାଳରେ କଟାଇଦେଲା ··କ'ଣ ନା ଏଇ ମାଇପି ଜୀବନ । ପିଲା ଜନ୍ମ କରିବା ତାର ଧର୍ମ ।

ସେ ପ୍ରତିବାଦ କଲନାହିଁ ।

ଏ ଜଗତକୁ ଆଖି ମେଲି ଦେଖିଲା ନାହିଁ ।

ବାହାର ଦୁନିଆଁକୁ ଚିହ୍ନିଲା ନାହିଁ !

ସତେ ଯେପରି ଗୋଟିଏ ଜାପାନୀ କଣ୍ଢେଇ ! ଟିପି ଦେଲେ କୁଁ କୁଁ ହେ କରେ ! ତାରି ବୋଉ ।

ଏକ ଅସହ୍ୟ ବିଚିତ୍ର ଯନ୍ତ୍ରଣାରେ ନୀଳ ପଡ଼ିଯାଏ ଗୀତାର ଗୋରା କେନ୍ ତକ ମୁହଁଟା । ଲଜ୍ଜାରେ, ଘୃଣାରେ, କରୁଣାରେ ଆତ୍ମଗ୍ଲାନିରେ ଶିହରି ଉଠେ ଗୀତା···

ଆଶ୍ଚର୍ଯ୍ୟ !

ସେ ଘରେ ସମସ୍ତେ ଶୁଅନ୍ତି । ସେନ୍ତେଇ ମଶିଣାରେ ଆଉ ପାଞ୍ଚଟା ପିଇ ଭଉଣୀଙ୍କ କନ୍ଥାରେ ଶୋଇ ରହି ଘୁମନ୍ତ ସର୍ପିଣୀ ପରି କିନ୍ତୁ ଘୁମୁରୁଥାଏ ଗୀତା···

ଅଥଚ ··

ବାହାରେ କି ଶାନ୍ତ ଓ ଗମ୍ଭୀର ଏଇ ଝିଅଟା । ଯା ନା ଗୀତା !

ତା ନନାଙ୍କର କୁଆଡ଼େ ସେ ଗର୍ବ, କାରଣ ସେ କୁଆଡ଼େ ସବୁବେଳେ ଫାଷ୍ଟ ହୋଇ ବୃତ୍ତି ପାଉଛି, ଟଙ୍କା ଆସୁଛି ।

ହୁଁ ···ସବୁ କ୍ରୋଧ, ଘୃଣା ଦାନା ବାନ୍ଧେ ତାର ପତଳା ବ୍ୟକ୍ତିତ୍ୱ ବୋଲା ଓଠର ନରମ ରେଖାରେ !

ଘୃଣାରେ କୁଞ୍ଚିତ ହୁଏ ସରୁ ସରୁ ଟଣା ଟଣା ଭ୍ରୂଯୁଗଳ ! ପରିସ୍ଥିତି ସଙ୍ଗେ ଆପୋଷ ମିଳାମିଶା କରିପାରେନା ଗୀତା । ବ୍ୟତିକ୍ରମ···ଚିରକାଳ ଗୀତା ବ୍ୟତିକ୍ରମ !

ସାଇପାକ ଲୋକେ କହନ୍ତି ତା ବୋଉ କୁଆଡ଼େ ଅଠେନେଲା ସଙ୍ଗେ ସଙ୍ଗେ ବସିବ ! କେଡ଼େ ଭାଗ୍ୟବତୀ ସେ !

ମାତ୍ର ସେ ସଙ୍ଗୀତ ବସି ପାରିଲେ ନାହିଁ । ଅକଥନୀୟ ଗର୍ଭ ଯନ୍ତ୍ରଣାରେ ଚଉଦଟି ପିଲାର ମାଆ ସୁରଧନ କାଲି କଲବଲ ହୋଇ ଝରକାସୁନ୍ଧାକୁ ଜାବୁଡ଼ି ଧରି ଶେଷରେ ବିଦାୟ ନେଲେ ଏ ଦୁନିଆଁରୁ । ପେଟ ଚିରା ହୋଇ ମଲା ପିଲା ବାହାରିଥିଲା । ହେଲେ ଡାକ୍ତର ଆସି ନ ଥିଲେ । ସେମି ଜାଉଳାଣୀ ପେଟ ଚିରିଲା ।

ତାପରେ ?

ତାପରେ କାଲୁ ନନାଙ୍କ ମୁହଁକୁ ଚାହିଁ ପାରିନାହିଁ ଗୀତା !

ମନେ ହୋଇଛି ଏ ହତ୍ୟା କାହାର ତାରି ପିତା ! ହଁ—ହଁ—ସେଇ ଅପରାଧୀ ପିଶାଚ; ତାରି ପିତା !

ଛି—ଛି—ଛି—

ଏ କି ଜଘନ୍ୟ ଅନ୍ୟାୟ ! ସେ ଭାବିବ ନା କି ସହିବ ନି । କ୍ଷତ ଜଳୁଛି ଦାଉ-ଦାଉ ହୋଇ ।

ଅଭାବ ଅନାଟନର କଥାଁ । ସବୁ ସହ ନେଉଥିଲା ସିଏ ତାରି ବୋଉ ! ସେ ତ ବିଦାୟ ନେଇଛି । ଦାନ୍ତ ଗଲା ପରେ ମଣିଷ ବୁଝେ ତାର ମହତ୍ତ୍ୱ । ବହୁ ସନ୍ତାନର ଜନକଙ୍କର ଅଶାନ୍ତ ଓ କ୍ରୋଧ ବଢ଼ି ଚାଲିଛି । ଆଉ ଅଯତ୍ନପାଳିତ ବିପଥଗାମୀ ଦୁର୍ଦ୍ଦାନ୍ତ ସନ୍ତାନମାନଙ୍କୁ ଦେଖି ଯନ୍ତ୍ରଣା ବଢ଼ିଛି ।

ଆଉ ଗୀତାର ?

ନା—ଗୀତା ଭିତରର ସବୁ କୋମଳ ମଧୁର ସ୍ୱପ୍ନଗୁଡ଼ିକ ଖାଲି ଲୋଭକୋପ ଆବୁରୁଜାବୁରୁ ବୁଢ଼ିଆଣୀ ଜାଲପରି ଛନ୍ଦାଛନ୍ଦ ।

ସେଗୁଡ଼ିକ ଉଜ୍ଜ୍ୱଳ ହୋଇ ଉଠୁଛି ପଡ଼ୁଛନ୍ତି । ଘାଟରେ ଲୁହେଁ, ଖାଲି ଆଖିର ଲୁହରେ ଅନବରତ···

ଆଉ ଏତେବେଳେ ଘରକୁ ଆସିଲା ପାରନାମୀ ।

ଉତ୍ତରାଧିକାରୀ ସୂତ୍ରରେ ବୋଉଠାରୁ ପ୍ରାପ୍ୟ ଅଖଣ୍ଡ ସୌନ୍ଦର୍ଯ୍ୟର ସେ ଅଧିକାରିଣୀ । ପୁଣି ସେହି ପଦାଙ୍କ ଅନୁସରଣ କରି ସେ ପାଞ୍ଚଟି ସନ୍ତାନର ଜନନୀ ହୋଇଛି ଅଦ୍ୟାବଧି । ଆଖି ଫେରାଇ ହୁଏ ନାହିଁ ରୂପରୁ !

(ପଛକଥା ମନେ ପଡ଼ିଲା)

ଠିକ୍ ଏମିତ ରୂପ !

ଏ ଆଖିର ଲୁହ ସେ ଆଖିରେ ପୋଛି ନାମୀର ଯତ୍ନ ନେଉଛି ବାରବର୍ଷର ଗୀତା ।

କାଲୁ ପାରନ ଗୀତା···

ଚକସ୍ରୀ ଅଭାବରେ ନାନା ମଧ୍ଯ ସେହି ଅନେକ ଷଠିଘରର ସଂଖ୍ୟା ବଢ଼ାଇ ଚାଲିଯାଇଛି ଅବେଳାରେ ।

ଆଉ ଏକ ଅବାଞ୍ଛିତ ସନ୍ତାନ ଆସିଛି ପୃଥିବୀ ପୃଷ୍ଠକୁ !

ଲୁହ ହାତୁଡ଼ିରେ ଚୁର ହୋଇ ଯାଉଥିବା ନିଜ ମନର ମୁଠା ମୁଠା ଇଚ୍ଛା, ଆଶା, ସରାଗ ଓ ବଡ଼ ହେବାର ସ୍ୱପ୍ନକୁ ପୁଣି ସଂକଳ୍ପର ମାଟିମେଞ୍ଚା ଦେଇ ଚକଟି ମୂର୍ତ୍ତି ରୂପେ ଗଢ଼ିବାର କଳ୍ପନା କରିଛି ଗୀତା !

ଗଢ଼ିଛି ମନୋହର ମୂର୍ତ୍ତି, ଜଗଦ୍ଧାତ୍ରୀର ମୂର୍ତ୍ତି !

ସଙ୍କଳ୍ପର ମୂର୍ତ୍ତି ।

ସେଦିନ କିନ୍ତୁ ନାନା ଚମକି ପଡ଼ିଥିଲେ । ଚଷମାକାଚ ଉପରକୁ ଟେକି ଚାହିଁଲେ । କିଏ କହୁଛି ? ଗୀତା !

ଗୀତା କଣ କହୁଛି ତାଙ୍କୁ ? ଯାହା ଉଣ୍ଡ ଦିନେ ସେ ଶୁଣିନାହାନ୍ତି । ଏ କଣ ସେହି ଗୀତା ?

ଦାରିଦ୍ର୍ୟର ନିଦାରୁଣ କଷାଘାତରେ ଆହୁରି ଶୀର୍ଣ୍ଣ ହୋଇଛନ୍ତି ପିତା ଘରେ ଦାନା ଦାନା ଭୁକ । ଶିକ୍ଷକ ପିତା ତାର କୁଟୁମ୍ବ ପୋଷିବେ । ଅନ୍ୟ ଉପାୟ କାହିଁ ? କୃତକର୍ମର ପ୍ରାୟଶ୍ଚିତ କରୁଛନ୍ତି ପରା ! "ବହୁକୁଟୁମ୍ବୀ ମହାପାପୀ ।" କେଡ଼େ ସତ ଏକଥା !

ଗୀତାର ଗମ୍ଭୀର ମୁଖରେ ଅସମ୍ଭବ ଆତ୍ମବିଶ୍ୱାସ ! ପରିପୂର୍ଣ୍ଣ ଦୃଢ଼ତାର ସୁସ୍ପଷ୍ଟ ସ୍ୱାକ୍ଷର । ଗୀତା ବାଟ ବାଛି ନେଇଛି । ସେ ବ୍ୟତିକ୍ରମ ।

ନାରାୟଣବାବୁ ବୁଝିପାରିଲେ ଏଇ ବୁଦ୍ଧିମତୀ ଅଭିମାନୀ ଝିଅର ଅନ୍ତରକୁ !

କାହିଁ ? ରାଗରେ ଫାଟି ପଡ଼ିଲେ ନାହିଁ ତ ?

ସ୍ୱଭାବର ବହିର୍ଭୂତ ଆଚରଣ କଲେ ତାର ପିତା । ଗୀତାର ମଥାରେ ହାତ ରଖି ଆଶୀର୍ବାଦ କଲେ । ଝର ଝର ଝର ପଡ଼ୁଥିଲା ନେତ୍ରରୁ ତାଙ୍କର ଅବିରଳ ଲୁହଧାର ।

ସହିପାରିବ ଗୀତା ସେ ଦୃଶ୍ୟ ଦେଖି !

ନାଇଁ—ନାଇଁ—ନାଇଁ—

ପରିତ୍ୟକ୍ତ ଘରଟାରେ ମୁହଁମାଡ଼ି ଶୋଇ ଜମାଟବନ୍ଧା କୋହକୁ ବୁହାଇ ଦେଲା ଗୀତା ।

ନିଜକୁ ଘୃଣା ହେଲା ।

ମଣିଷକୁ ସ୍ୱଳ୍ପବୁଦ୍ଧି ନେଇ ଅବିଗ୍ଭର କରିଛି ସେ, ତାର ପରମପୂଜ୍ୟ ପିତାଙ୍କୁ କ୍ଷମା ଲୋଡ଼ା ତାର । ପିତାଙ୍କ ପାଦକୁ ପ୍ରଣାମ କରି ଧାଇଁ ଆସି ସେଇ ଅସଂଖ୍ୟ

ଏଠିଘର ଥିବା ଘରଟାରେ ଶୋଇପଡ଼ି ସେ ଢାଳି ଦେଇଥିଲି ସେ ଦିନର ସବୁ ଅଭିମାନ, ସବୁ ଗ୍ଲାନି, ସବୁ ଘୃଣା ।

ବନ୍ଧୁଯାଉ, ନିଃଶେଷିତ ହୋଇଯାଉ ସବୁ ଅଶ୍ରୁ ଝରଣାରେ···

ସେ ପ୍ରାୟଶ୍ଚିତ କରିବ ।

ତାପରେ···

ତାପରେ ଅଖଣ୍ଡ ସାଧନାର ଅଧ୍ୟାୟ···

ତପସ୍ୟା···

କ୍ରମାଗତ ଯାତ୍ରା ।

ହୋଇପଡ଼ିଛି କଣ୍ଟକିତ ସେ ପଥ ।

ଲେଡ଼ି ଡାକ୍ତର ଗୀତା ମିଶ୍ରର ନିଷ୍ଠୁର ଅତୀତଟାକୁ କେହି ହୁଏତ ଏବେ ଦେଖିପାରୁ ନ ଥିବେ କିନ୍ତୁ ସେଇଟା ସେ ତା ନରମ ଛାତି ଭିତରେ ବସାବାନ୍ଧି ରହିଛି । ସେ ନିଷ୍ଠୁର ଚଢ଼ିଆ ବସା ବୁଣୁଛି ତାର ଛାତି ଭିତରେ । ବାରବାର କାନ୍ଥ କଣ୍ଡ ମଧ୍ୟ ଦେଇ ସେ ଶୁଣି ପାରୁଛି ତାର ବୋଉର ସେ ବିଭତ୍ସ ଯନ୍ତ୍ରଣା ବିକୃତ କଣ୍ଠସ୍ୱର ।

ଆଉ ସେମିତି କେତେ ବେଦନାବିଧୁରା ନରମ ହସ ହସ ମୁହଁ ଝଲସି ଉଠୁଛି···ତାର ପାରନାମି ଘର ।

ସେ ଯୁଗ ନିଶ୍ଚିହ୍ନ ହୋଇନାହିଁ । ସେ ଯୁଗର ଧ୍ୱଂସାବଶେଷ ବିକ୍ଷୁର ହୋଇ ପଡ଼ିଛି ଏଣେ ତେଣେ, ଗ୍ରାମପାଖରେ । କେଉଁ ପଲ୍ଲୀ ଉପାନ୍ତରେ ଏବେ ବି ଛପିଛି ସେ ଯନ୍ତ୍ରଣାଦାୟକ ଯୁଗ ।

ତେବେ ?

ଗୀତା ମିଶ୍ରର ସେ ତପସ୍ୟା ଶେଷ ହେବ କେମିତି ??

ପାରନାମିର ଶେଷ ଝିଅ ସୁଧାକୁ ସେ ଡାକ୍ତରୀ ପଢ଼ାଉଛି । ଆଜି ଯଦି ସେ ଏମିତି କେତେ ନିରପରାଧିନୀ ଝିଅମାନଙ୍କୁ ବଞ୍ଚାଇ ଦେଇପାରେ ! ସୁସ୍ଥ ଜୀବନର ଆଲୋକ ଦେଖାଇ ଦେଇପାରେ—ତେବେ ତାର ବୋଉର ଆତ୍ମା କଣ ଶାନ୍ତି ପାଇବନି ?

ଜନ୍ମନିୟନ୍ତ୍ରଣ ଟ୍ରଷ୍ଟରେ ସେ ଯେ ଅଖଣ୍ଡ ଆନନ୍ଦ ପାଉଛି କେବଳ ଏଇ ଭରସାରେ, ଏକଥା ଗୀତା ଛଡ଼ା ବେଶୀ କିଏ ବା ଜାଣେ ?

ଅନାବଶ୍ୟକ ସନ୍ତାନମାନଙ୍କୁ ଦୁନିଆଁକୁ ଆଣି ସବୁରି ଜୀବନ ଦୁର୍ବିସହ କରିବାର ଅପରାଧରୁ ସେମାନେ କ୍ଷାନ୍ତ ହୁଅନ୍ତୁ । ଜୀବନକୁ ସୁଖୀ କରନ୍ତୁ । ମଣିଷ ପରି ବଞ୍ଚନ୍ତୁ । ଅର୍ଥନୈତିକ ମାନଦଣ୍ଡ ବଢ଼ାନ୍ତୁ ।

ସହସ୍ର ଆତ୍ମାକୁ ସୁଖୀ କରିବାର ଅଖଣ୍ଡ ପ୍ରୟାସ ନେଇ ଆହୁରି ତପସ୍ୟା କରିବାକୁ ହେବ ଗୀତାକୁ ଓ ଗୀତାପରି ଆହୁରି ଅନେକଙ୍କୁ । ଯେଉଁ ସୁସ୍ଥ ସୁନ୍ଦର ନାରୀ ଜୀବନର ସ୍ୱପ୍ନ ସେ ଦେଖିଛି, ସେହି ସ୍ୱପ୍ନ ସଫଳ ନ ହେବାଯାଏ ତାକୁ ଯେ ଚାଲିବାକୁ ହେବ ଆହୁରି ଅନେକ ବାଟ । ଚାଲିବାକୁ ପଡ଼ିବ ତାକୁ ! ଶ୍ରେଷ୍ଠ ପ୍ରଦୀପଟିଏ ଧରି ସେ ଆଲୋକିତ କରୁଥିବ ଚଲାପଥ ଯଥାଶକ୍ତି···

ଗୀତା ଦୀର୍ଘନିଶ୍ୱାସ ପକାଇଲା ।

ତୁମେ ଅପେକ୍ଷା କରି ପାରିବ ସଜିତ୍ ??

ସେ ତପସ୍ୟାର ଶେଷ ପର୍ଯ୍ୟନ୍ତ ପାରିବ ତୁମେ ଧୈର୍ଯ୍ୟ ଧରି ? ଏ ଦେଶର ନିରମାଖୀ ଉପେକ୍ଷିତା ନାରୀର ମୁକ୍ତି ନ ହେଲେ ଗୀତାର ମୁକ୍ତି ହେବ କିପରି ?



## ● ବିପ୍ରଲମ୍ଭ ଶୃଙ୍ଗାର

ରାତ୍ରିଟା ବଡ଼ ମାରାତ୍ମକ, ବଡ଼ ଭୟଙ୍କର—

ଏ ରାତ୍ରିଟା ଯଦି ନ ଥାନ୍ତା ?

ତେବେ ?

ତେବେ କ'ଣ ହୋଇଥାନ୍ତା ?

ତେବେ ସହଦେବ କ'ଣ ଶାନ୍ତି ପାଇଥାନ୍ତା ?

ସହଦେବ ନିକଟରେ ଅତୀତର ରୋମନ୍ଥନ କ'ଣ ସତକୁ ସତ ଏତେ ଦୁର୍ବିସହ ?

ଏତେ ବେଦନାଦାୟକ ?

ଅକୃତଜ୍ଞ ସହଦେବ—

ଛି—ଏ କ'ଣ ଭାବୁଛି ସେ !

ଏ ରାତି ରମଣୀୟ । ସେ ଯେ ଏଇ ରାତିରେ ଦୁଇ ହାତରେ ମୁଠା ପଦ୍ମାବତୀଙ୍କୁ ଜାବୁଡ଼ି ଧରି ପାରୁଛି !

ସେ ତ ଛାତିଭିତର ଆଉଟରେ ଶୁଣି ପାରୁଛି ସେହି ଛୋଟିଆ ନରମ ପକ୍ଷୀର ମଧୁର କାକଳୀ !

ସେହି ତାଳବଣଭରା ଛୋଟିଆ ଗାଆଁର ନୁଆଁଣିଆ ବରଡା ଛାଉଣି ଚୁଲଘର । ଠିକ ସେତେବେଳେ ଘର ବତାରୁ ଉଠୁଥାଏ ଧୂଆଁ । ଲିପାପୋଛା ଅଗଣାରେ ଖଜୁରି ପଟି । ରାଣୀଫୁଲ ଦଶ ଜହ୍ନ ବଢ଼େଇ ହୋଇ ପଡ଼ିଛି ।

ବୁଢ଼ୀ ଜଣେ କହିଲେ, "ଟିକିଏ ମୁଣ୍ଡପୋଡ଼ ଭିତରକୁ ପଶ ବାପା·· ମୁଣ୍ଡ ବାଜିବ ।"

ମୁଣ୍ଡ କିନ୍ତୁ ସତରେ ବାଜି ଯାଇଥାନ୍ତା ! ଛୋଟ ମଣିଷଟିଏ ତ ନୁହେଁ ସହଦେବ । ପାଞ୍ଚଫୁଟ ଦଶଇଞ୍ଚର ଲମ୍ବା ଚଉଡ଼ା ମଣିଷ !

ଜଉକାଢ଼ି ପଣତ କାନିରେ ମୁହଁ ଲୁଚେଇ ଶୁଣେଇ କହୁଥିଲେ ପଡ଼ିଶା ଘରର ନୂଆବୋଉ, "ଏ ପଦ···ଆହେ ସାକ୍ଷାତ କନ୍ଦର୍ପ ପୁରୁଷ ହେ ! ଦେଖ ମ ଦେଖ ମୁଣ୍ଡ ବାଜିବ···ପାଞ୍ଚହାତିଆ ମରଦ ଯେ !"

ସେହି ଚୁଲଘର ଭିତରେ ପୁଲଙ୍ଗ ତେଲର ବଡ ଦୀପଟି ମିଂଜି ମିଂଜି ହୋଇ ଜଳୁଥିଲା । ଦୀପରୁଖା ଚୋଡ଼ଟା ଅଳତ ରଙ୍ଗିଆ ଢୋଲ ଢେଉ ହୋଇ-

ଥିଲି କାନ୍ଥକୁ । ପଚ୍ଚା ଖଟଟିଏ ପଡ଼ୋଶୀଘରୁ ଅଣା ହୋଇଥିଲା ! ନୁଆଁଣିଆ ଚାଳଘରେ ବିଚ୍ଛିନ୍ନ ହୋଇ ଝରି ଝରି ପଡ଼ୁଥିଲା ଜ୍ୟୋଛନା ।

କାକର ଭିଜା ରାତି !

ବେଲ ଥାଉଁ ଥାଉଁ ଅଳ୍ପ ଶିରଧାରେ ବାଢ଼ି ଦେଇଥିଲେ ଶାଶୂ ନଡ଼ିଆ ଗୁଡ଼ଲର ସରୁ ଚକୁଳି, ନଡ଼ିଆ ଦୁଧରେ ଦୁଆଁ ଗୁଡ଼ଲ କ୍ଷିର, ଶ୍ରେଷ୍ଠ ମହୁସାଲ ମାଛର ଲେମ୍ବୁ ରସଦିଆ ହଳଦୀ ପାଣି, ଆଉ ଭଣ୍ଡା ଚଙ୍ଗୁଡ଼ି ମହୁର—ନଡ଼ିଆ ଚଡ଼ୀ । ନଡ଼ିଆ ତାଳ-ଘେରା ଗାଁରେ ନଡ଼ିଆର ଅଭାବ ନାହିଁ ।

ବେଶ୍ ଭଲ ଭାବରେ ମନେ ପକେଇ ପାରୁଛି ତ ସହଦେବ ।
ନାହିଁ, ଏତେ ବର୍ଷ ହେଲାଣି ସ୍ମୃତିଶକ୍ତି ତ ବିକୃତ ହୋଇନାହିଁ !
ଆଶ୍ଚର୍ଯ୍ୟ...

ହଁ, ସୁନାପରି ଚକ ଚକ ଥାଳରେ ବେଶ୍ ପରିପାଟୀ ସହକାରେ ଠାଆପିଢ଼ା କରି ବଢ଼ା ହୋଇଥିଲା । କାଚଗିନାରେ ପାଣି, ସେ ଗିନା ପୁଣି କୁଆଡ଼େ ପ୍ରାଇଜ୍ ପାଇଥିଲା ସ୍କୁଲରୁ ପଦ୍ମାବତୀ ! ଫାଷ୍ଟ ପ୍ରାଇଜ୍ । ପାର୍ବତୀ ଦେଖେଇ ହୋଇ ଆଗଭର କରି କହି ପକାଇଥିଲା । ସେ ତା'ର ନାନୀ ପଦ୍ମାବତୀର କଥା ! ଏତେ ସୁଆଦ ଦେଇବ କ'ଣ ସହଦେବ ଅଉ କେବେ ଚାଖି ନ ଥିଲା ? କେଜାଣି...ନା—ଚାଖିବାର ଅବସର ନ ଥିଲା ।

ଆବାଲ୍ୟରୁ ମାତୃହରା ସହଦେବ । ସହର ଭିତରେ ଅହରହ ସଂଗ୍ରାମ କରି ଗଢ଼ି ନେଇଛି ଏଇ ବଳିଷ୍ଠ ଦେହ । ବରା, ଗୁଲୁଗୁଲା ଯାହାର ଜଳଖିଆ, ଏଇ ମଧୁର ସୁସ୍ୱାଦୁ ପରଷା ପାଇ କ'ଣ ହଜିଲା ବୋଉ, ଥିଲା ଦିନର ସ୍ମୃତିର କଣ୍ଟା ଛୁଞ୍ଚରେ ତାର ଫୋଡ଼ି ହୋଇ ନ ଥିଲା ??

ମନେ ପଡ଼ୁଥିଲା, ଦୂର ଅତୀତରେ ବୋଉ ପରଷା ! ବେଶ୍ ମଧୁର ଆମୋଦ ଅନୁଭବ କରୁଥିଲା ସେ ଦିନ ସହଦେବ । ତମ୍ବା ଗିଲସ ସୁନା ପରି ଝଟକୁଥିଲା । ପାଣି ନୁହେଁ; ଗଙ୍ଗାଜଳ ! ଗରିବ ଘରେ ଜୋଇଁ ଚର୍ଚ୍ଚା... ସେ ଯୁଗରେ ଭାରତ ସ୍ୱାଧୀନ ହେବା ଆଗର କାହାଣୀ !

ସେଦିନ କ'ଣ ସେ ପହିଲି ଦେଖିଥିଲା ପଦ୍ମାବତୀକୁ ??
ସେ ଦିନଟା ତେବେ ଏତେ ସ୍ମରଣୀୟ କାହିଁକି ??

ସେଇ ଦିନଟାକୁ ଦି ହାତରେ ଜାବୁଡ଼ି ଧରି ପରମ ଆବେଗରେ ବୁକୁତଳେ ଚାପି ରଖିବାର ଏ ଆପ୍ରାଣ ପ୍ରଚେଷ୍ଟା କାହିଁକି କରେ ସହଦେବ ? ସହଦେବର ନିର୍ବୋଧ ପଥର ପ୍ରାଣ ସେହି ଦିନକୁ ସୁମରି ଏମିତି ଅହରହ କାନ୍ଦି ଉଠୁଛି କାହିଁକି ?

ସେ ଦିନ କ'ଣ ଏହି ନବଷ୍ଟମୂର୍ତ୍ତି ମନ୍ଦିରର ପ୍ରଥମ ଶିଳାନ୍ୟାସ ହୋଇଥିଲା ସେହି କଥଞ୍ଚ ନଡ଼ିଆ ଡାଳକଆବଣ ଘେରା ସାନଘରେ !

ଆଶ୍ଚର୍ଯ୍ୟ ! କାହୁଁ ଆସିଥିଲା ଆକାଶଫଟା ବରଷା ମାଡ଼ ! ଅଗ୍ନିକ ଏଇ ବରଷା ଭିଜା ରାତି···

ବାହାରେ ନଡ଼ିଆ ଗଛର ସୁସୁ ଗର୍ଜନ···

ନଡ଼ିଆ ବରଡ଼ାର ଦୁମ୍ ଦୁମ୍ ଆବାଜ···ଖସି ପଡ଼ୁଥିଲା ତଳେ ! ଘନଘନ ବିଜୁଳିର ଚମକ ··

ଅନବରତ ଖସ୍ ଖସ୍ ହୋଇ ଚାଳରୁ ଖସି ଆସୁଥିବା ଦରଖଣ୍ଡିଆ କାଠିକୁଟା ···ନଡ଼ିଆ ଗୋଟାଳର ଶବଦ !

ଖୁଡ୍ ଖାଡ୍ କରି ଉଡ଼ିଯାଉଥିବା ନାଁ ଜଣା ପକ୍ଷୀର ଆର୍ତ୍ତନାଦ···ବିଚିତ୍ର ପରିବେଶ । ଗ୍ରେଣ୍ଟିଆ ଝରକା ଫାଟ କଣା ଦେଇ ଛିଟିକି ପଡ଼ୁଥିବା ଟାର ପର ପାଣିଛିଟିକା···ସେଇ ଅଭୁଲା ସ୍ମରଣୀୟ ରାତି ! ସବୁ କ'ଣ ଏକାନ୍ତ ସ୍ୱପ୍ନିଳ ନୁହେଁ ?

ଆଉ ତା ସାଥିରେ ଅବଗୁଣ୍ଠନ ବତୀ ଚତ୍ରୟୋଦଶୀ ଚନ୍ଦ୍ର ପରି ତେର ବରଷ ବୟସର ପଦ୍ମାବତୀ, ତାର ହଳଦିଆ ମୁହଁ ।

ସେ ମୁହଁକୁ ସେ ଧୀରେ ତୋଳି ଧରିଥିଲା !

ଆଖି ବନ୍ଦ କରି ତାର କୋମଳ ହାତର ପରଶ ଅନୁଭବ କରିଥିଲା ତାର ପାଦ ଯୁଗଳରେ ।

ସେ ସ୍ୱାମୀ···

ସେ ପ୍ରଭୁ···

ପତି ପରମ ଗୁରୁ···ଅଇନା ଯାହାର ହାତ ବାକ୍ସରେ ଆସିଛି । ସେ ପଛଲେ ନଇଁ ପଡ଼ି ପାଦ ତଳେ ମଥା ନୋଇଁ ପ୍ରଣିପାତ ହେବ । ଶୀତଳ ଜଳରେ ପଦଯୁଗଳ ସିକ୍ତ କରିଦେବ । ଏ ତ ସେ ଯୁଗର ଚିରାଚରିତ ପଦ୍ଧତି, ଏଥିରେ ବିସ୍ମିତ ହେବାର କଣ ଥିଲା ?

ଏକାନ୍ତ ଭକ୍ତିଭରା ଏଇ କ୍ଷୁଦ୍ର ପ୍ରଣାମ କ'ଣ ଏତେ ଅସହନୀୟ ହେଲା ? ମିଳନର ଛନ୍ଦପାତ କ'ଣ ଏତିକିରେ ବେସୁରା ହୋଇ ଉଠେ ଏ ଆଧୁନିକ ଜ୍ଞାନଗର୍ବୀ ମଣିଷପାଇଁ ?

କାହିଁକି ସହଦେବ ମନରେ ଦେଖାଦେଇଥିଲା ସେଇ ସୁଦୁରପ୍ରସାରୀ ଆଗାମୀ-କାଳର ସ୍ୱପ୍ନ ?

ବୁଢ଼ିଆର କମ୍ୟୁନିଜିମ୍‌ର ମହୁଆ ନିଶା ତାର ଗୃହପଟେ ସୃଷ୍ଟି କରିଛି କାମନାର ବୁଢ଼ିଆଣୀ ଜାଲ । ଦ୍ୱିତୀୟ ମହାସମର ସରିଯାଇଛି । ଇତିହାସରେ ସନ୍ଧିସନ୍ଧ, ଭଙ୍ଗା ଗଢ଼ା ଯୁଗର ଆରମ୍ଭ । ଚିରଚରିତ ସଂସ୍କାରର ଘୃଣ୍ୟ ବେଡ଼ି ତାକୁ ଛିଣ୍ଡାଇବାକୁ ହେବ ।

ସେ ବିପ୍ଳବୀ ।
ବିପ୍ଳବର ବୀଜରୁ ତାର ଜନ୍ମ ।
ସେ ଏକକ ।
ସେ ସ୍ୱତନ୍ତ୍ର ।
ସେ ଆଗାମୀ ସଭ୍ୟତାର ଝଙ୍କାର ।
ତା ମଧ୍ୟରେ ନବୀକରଣର ଶପଥ ।
ପଦ୍ମାକୁ ସେ ଦୀକ୍ଷିତ କରିବ ନୂତନ ଯୁଗର ମନ୍ତ୍ରରେ···

ପତି ଦେବତା ନବୀନ ନୁହେଁ···ନୁହେଁ—ନୁହେଁ—ଦାସତ୍ୱ ଘୃଣ୍ୟ ସେ ବନ୍ଧୁ, ସହଯାତ୍ରୀ ସେ କମ୍ରେଡ୍‌···ସେ ସାଥି !

ହାଃ—ହାଃ—ହାଃ—ହୋଇ ହସିଉଠିଥିଲା ସହଦେବ । ବାହାରେ ଘଡ଼ଘଡ଼ିର ଗର୍ଜନ ସଙ୍ଗେ ସମାନ୍ତରାଳ ଭାବରେ ତାଲ ଦେଇ ଏକ ଉଦ୍ଧତ ଆଧୁନିକତା ହସି ଉଠିଥିଲା ଅବା !

କର୍ମକ୍ଲାନ୍ତ ଦୀର୍ଘ ଆୟତାକ୍ଷିରେ ଖାଲି ମହୁ ନାହିଁ···ସମର୍ପଣ ନାହିଁ । ଆହୁରି ଅଛି ଭୟ ଆଉ ଭକ୍ତି । ତାର ଏକ ମଧୁର ସମ୍ମିଶ୍ରଣ ନବବଧୂ !

ଏ ଆଖି ବାନ୍ଧବୀର ଆଖି ନୁହେଁ ।

ଏ ଆଖିରେ ଲେପି ହୋଇ ରହିଛି ମେଣ୍ଢା ମେଣ୍ଢା ଅନ୍ଧ ସଂସ୍କାର ଆନୁଗତ୍ୟର ପ୍ରତିଫଳନ···ସର୍ବସ୍ୱ ସମର୍ପଣ କରିବାର କାକୁତି ! କିଶୋରୀ ଅଙ୍ଗର ପ୍ରତି ରେଖାରେ ଅସୁମାରି ଲଜ୍ଜା ଓ ଭୟର ନିବିଡ଼ ପ୍ରଲେପ । ମାଟି ମେଣ୍ଢା—କାରିଗର, ଗଢ଼ି ନିଅ ମନଇଚ୍ଛା । ପ୍ରାଣଭରି କିଶୋରୀର ଅକ୍ଷତ ଅଧରକୁ ଥରେ ଚୁମ୍ବନ କରି ନେଲା ସହଦେବ···ଆଃ—ଯାକୁ ମୁଁ ଗଢ଼ିବି—ଏ ମୋର ଶିଳ୍ପସୃଷ୍ଟି ।

ଆଃ··· କି ପରିତୃପ୍ତି !

ଏ ତାର; ଏକାନ୍ତ ଭାବରେ ତାର । ନିଜ ହାତରେ ସେ ଏଇ କଞ୍ଚାମାଟିର ପିତୁଳାକୁ ଭାଙ୍ଗିବ ଆଉ ଗଢ଼ିବ । ମନ ଇଚ୍ଛା ମୂର୍ତ୍ତି କରିବ ।

ଅନ୍ତରରେ ତାର ସ୍ରଷ୍ଟାର ଗର୍ବ···
ଶିଳ୍ପୀର ମୌନତା···

ଚନ୍ଦ୍ରକରର ମନନଶୀଳତା…

କେଉଁଆଡ଼େ ଛପିଗଲ ପ୍ରେମିକର ମୁଗ୍ଧ ମନୋହର ଆତ୍ମସମର୍ପଣ, ଲୁଟି ନେବାର ମୋହ ! ସୁଦକ୍ଷ କାରଗର ପରି ଏ ସମର୍ପଣର ପ୍ରଲେପ ପୋଛି କାହିଁକି ନିଃଶେଷ କରଦେଲ ସହଦେବ । କାହିଁକି ବୁଣିଦେଲ ଆତ୍ମପ୍ରତ୍ୟୟର ବୀଜ ? ଦୁଇ ହାତରେ ସମସ୍ତ ଶକ୍ତି ଦେଇ ପୁଣି ମାଟି ମେଞ୍ଚାକର ପରିଣତ କରିଦେବ ଏ ନରମ ଲହୁଣି ପିଣ୍ଡୁଳାକୁ !

ସେ ସୃଷ୍ଟି ହେବ ନବୀନ ରୂପରେ !

ପ୍ରାଣଚୋରା ହାତର ମଧୁର ସ୍ପର୍ଶ ଦେଇ ତଳେ ତଳେ ବିକଶିତ କରିବ ସେ ନବ କେତକୀର ନବୀନ କଳିକାକୁ !!

ଦିନୁ ଦିନ ମେଲ ଧରିବ ରୂପମାଧୁରୀର ସହସ୍ର ପ ଖୁଡ଼ା…

ତ୍ରୟୋଦଶୀ ପଦ୍ମା ତାର ପତ୍ନୀ !

ପଦ୍ମାର ପରିପୂର୍ଣ୍ଣ ଆତ୍ମସମର୍ପଣ ହିଁ ପ୍ରଥମ ସ୍ୱୀକାରୋକ୍ତି । ସେ ନିଃଶେଷ ହେବାକୁ ଚାହେଁ ! 'ପତିପରମଗୁରୁ' ଆଇନାରେ ମୁହଁ ଦେଖେ ଯେଉଁ ପଦ୍ମା । ସେ ପରମ ଭକ୍ତିରେ ମାନି ନେଇଥିଲ ପ୍ରଥିଟି ମନ୍ତ୍ର ! ଗୁରୁଙ୍କର ଅଲଙ୍ଘନୀୟ ମନ୍ତ୍ର ! ସେ ଛାତ୍ରୀ, ଶିଷ୍ୟା । ଆହା ପ୍ରିୟତମ ହୋଇପାରିଲନି ସହଦେବ । ସେ ହେଲ 'ଗୁରୁ' ।

'ଗୁରୁ' ପଥ ପ୍ରଦର୍ଶକ । ଏଇ ପଥରେ ସେ ଟାଣି ଆଣିଛି ପଦ୍ମାକୁ !

ଯନ୍ତ୍ରଣାରେ ସହଦେବର ଛାତି ଭିତରଟା ଫାଟି ଗଲପରି ଲାଗିଲା ।

ନିଷ୍ଠୁର ହତ୍ୟାକାରୀ ସହଦେବ !

ବାରମ୍ବାର ଝଂକୃତ ହେଲ ସେ ଗୋଟିଏ ଦିନର ପ୍ରେମିକ ଅନ୍ତରର ଅଭୁଲା କଥାଗୁଚ୍ଛର ଜଳତରଙ୍ଗ ।

ମୁଣ୍ଡ ଉପରକୁ ଅଳପ ପଣତ ଟାଣି ବିଛଣାରୁ ଆପଣାର ଫୁଲ ପରି ନରମ ଦେହଟାକୁ ନିବିଡ ବାହୁ ବନ୍ଧନରୁ ମୁକ୍ତ କରି ଧୀରେ ଧୀରେ ଉଠିଆସୁଥିଲ ପଦ୍ମାବତୀ, ସକାଳ ହେବାର ଅନେକ ଆଗରୁ ! ବାପଘରେ ପତି ସହ ରାତି ଯାପନ ଲଜ୍ଜାକର ! ସରଲା ପଦ୍ମାବତୀର ହଳଦିଆ ମୁହଁ ଉପରୁ ଅପସରି ଯାଇଛି ଗତ ରାତିର ଭ୍ରାନ୍ତି ତ୍ରାସ…ଖାଲି ସଜ ସରମର ଟିକି ଟିକି ଢେଉ ଲହଡି ଖେଳୁଛି । କମ୍ର ଲଜ୍ଜାର ଲୋହିତ ଆବରଣ ନୂଆ ରୂପ ଦେଇଛି ପଦ୍ମାକୁ । ଗୋଟାଏ ରାତି ବଦଳାଇ ଦେଇଛି ତନୁଲତାକୁ । ମାନସ ରାଜ୍ୟରେ ପୁରୁଷର ପଦସଞ୍ଚରଣ ।

"ହେଇଟି ତମକୁ ମୋ ରାଣ । ଦିନରେ ମୋ ଆଡ଼କୁ ଚାହିଁବନି ।"

"ଯଦି ଚାହେଁ ?" ସେ ଅଭୁତ ସୁନ୍ଦର ଦେହଟାକୁ ପରମ ଆବେଗରେ ଗୋଟିଏ ହାତରେ ଚାପିଧରି କୌତୁକ ମଧୁର ପ୍ରଶ୍ନ କରିଥିଲ ସହଦେବ ।

"ଛି—ଛି—ମୁଁ ଲାଜରେ ମରିଯିବି । କ'ଣ କହିବେ ସମସ୍ତେ ? ବାପଘର ଯେ ।"

ମେଞ୍ଚା ମେଞ୍ଚା ଲାଜରେ ଲୋହିତ ଆଧାର କି ନିବିଡ଼, ମଧୁର, ସୁନ୍ଦର ଆକର୍ଷଣ !

ପ୍ରାଣଭରି ଆସ୍ୱାଦନ କରିଥିଲା ସହଦେବ ସେ ରକ୍ତିମ ମାଧୁର୍ଯ୍ୟ···

ଆଃ · କେତେ ବର୍ଷ ତଳର କଥା ?

ଗୋଟିଏ ଯୁଗ ନା ତହିଁରୁ ଅଧିକ, ଅନେକ ଅଧିକ—ଅନେକ !

ଏବେ ବି ସେ ସ୍ମୃତି ଜୀବନର ଅପରାହ୍ଣରେ ଉପନୀତ ସହଦେବର ଶରୀରରେ ଅପୂର୍ବ ରୋମାଞ୍ଚ ସୃଷ୍ଟି କରୁଛି । ସହଦେବର କାନ୍ଦିବାକୁ ଇଚ୍ଛା ହେଉଛି । ବଡ଼ ପାଟି କରି ଛୁଆ ଭଳି ଫୁପୁଡ଼ାଇ କାନ୍ଦିବାକୁ ମନ ହେଉଛି ।

"ପଦ୍ମା, ତୁ ଫେରିଆ ।

ରାଣୀ ମୋର ଫେରିଆ ।"

ସେହି ପଦ୍ମାକୁ ଚାହେଁ ମୁଁ, ଯିଏ ସ୍ୱାମୀ ପାଇଁ ତୀବ୍ର ଜ୍ୱାଳା, ଅନାହାରର ଶତ ଯନ୍ତ୍ରଣା ସହିନେଇ ପାରେ । ଯିଏ ଲାଜର ଲୋହିତ ବସ୍ତ୍ର ତଳେ ଛପେଇ ରଖେ ଅଦ୍ଭୁତ ସୁନ୍ଦର ସ୍ନେହାକୁଳ ମରମକୁ !

ଯେ ଭଣ୍ଡାର ଲୁଟ ହୋଇଗଲେ ବି ଆନନ୍ଦରେ ଭାଜିପଡ଼େ । ଏକ ବିକ୍ଷୋଭ, ଏକ ଅନୁତାପର ଦୀର୍ଘଶ୍ୱାସରେ ସେ ଭାଜି ପଡ଼ିଲା । ହଁ ସହଦେବ ହିଁ ଏ ବିୟୋଗାନ୍ତ ନାଟକର ସ୍ରଷ୍ଟା । ସେ ହିଁ ହେବ ଏ ନାଟକର ନୀରବ ଦର୍ଶକ ।

ସ୍ୱାଭାବିକ । ଏକାନ୍ତ ସ୍ୱାଭାବିକ । ବୀଜ ସେ ବପନ କରିଛି ସେହି ଅପୂର୍ବ ଲଗ୍ନରେ । ଶୁଣ ପଦ୍ମା । ପ୍ରଥମଶ୍ରେଣୀ ସାର୍ଟିଫିକେଟ ଆଣି ତୁମକୁ ପାଠ ପଢ଼ିବାକୁ ହେବ । ଏ ଫୁଲର ସଂସାର ନୁହେଁ, ଏ ସଂଗ୍ରାମର କ୍ଷେତ୍ର । ସ୍ୱାମୀର ବଳିଷ୍ଠ ବାହୁ-ବନ୍ଧନରେ ତୁମେ ଭୁଲିପାରିବନି ଦାରିଦ୍ର୍ୟର ନିଦାରୁଣ କଷାଘାତ । ତୁମକୁ ମଣିଷ ପରି ବଞ୍ଚିବାକୁ ହେବ ପଦ୍ମା ! ଏ ଘୃଣ୍ୟ ପଶୁର ଜୀବନ ଆମର କାମ୍ୟ ନୁହେଁ । ଉପରକୁ ଚାହିଁ—ଦୁନିଆକୁ ଦେଖ, ଅର୍ଥନୈତିକ ସ୍ଥିତି ଲୋଡ଼ା ଯେ ! ଆଜି ଯଦି ମୁଁ ଅକସ୍ମାତ ଦୁର୍ଘଟଣାରେ ପ୍ରାଣତ୍ୟାଗ କରେ ତେବେ ଦଶ ବରଷରେ ମୋର ରକ୍ତର ସନ୍ତାନକୁ ଗର୍ଭରେ ଧରି ରାଜପଥକୁ ଓହ୍ଲାଇ ଯିବ ତମେ । ସମ୍ଭାବନାକୁ ଅନୁମାନ କରିପାରୁଛ ପଦ୍ମା ? ତାପରେ···ଏ କ୍ଷଣସ୍ଥାୟୀ ବାହୁବନ୍ଧନର ମୋହ କେତେ ଅଳୀକ ! ଦେଖିପାରୁଛ ସେ ଭୟଙ୍କର ମୂର୍ତ୍ତିର ଛାୟାକୁ ? ନା—ନା—ତୁମକୁ ପାଠ ପଢ଼ିବାକୁ ହେବ । ନିଜ ଗୋଡ଼ରେ ଠିଆହେବାକୁ ହେବ । ପରାଶ୍ରୟୀ ଉଦ୍ଭିଦ ପରି ବଞ୍ଚି ରହିବା ଏ ଯୁଗରେ ଜଘନ୍ୟ ଅପରାଧ ! ଆତ୍ମନିର୍ଭରଶୀଳା ହେବାକୁ ହେବ ।

ଏକାନ୍ତ ଆବେଗ ଆକୁଳ ଥରିଲା ହାତରେ ଓଠକୁ ତାର ଚିପି ଧରିଥିଲା ପଦ୍ମା । "ତୁମକୁ ମୋ ରାଣ, ପାପ କଥା କହିବନି । ମୋର ଯଦି ଧର୍ମବଳ ଥିବ, ଦଧିଙ୍କଠି ମନ ଥିବ, ଦମେଠି ମୋର ସୀତାଙ୍କ ପରି ଭକ୍ତି ଥିବ, ତେବେ ଦଧି ନିଶ୍ଚୟ ମୋ ଗୁହାରି ଶୁଣିବେ । ହାତରେ କାଚ ମୁଠାକ, ମୁଣ୍ଡରେ ସିନ୍ଦୂର ଟୋପାଟା ଥାଇ ମୁଁ ତମର ହାତରୁ ନିଆଁ ମୁଠେ ପାଇବ । ଆଉ ମୋର କିଛି ଲୋଡା ନାହିଁ ! ଏଇ ମାଟିଘର ମୋର ସ୍ୱର୍ଗ, ଅମରାବତୀ ।" ଷୋଡ଼ଶୀ ପଦ୍ମା ମୁହଁରେ ପୁରୁଣା କଥା—ପୁରୁଣା ଶବ୍ଦ ।

ବିଦ୍ରୋହୀର ଉଜ୍ଜ୍ୱଳ ଆଖି ଶାଣିତ ଛୁରିକା ପରି ଝଟକି ଉଠିଥିଲା । ଏ ଭକ୍ତି ଅପାରଗର ଭକ୍ତି । ଦୁର୍ବଳର ଭକ୍ତି । ଛି—ଛି—ଦାରିଦ୍ର୍ୟ, ଘୃଣ୍ୟ ! ପୁରୁଷାକାରରେ ବିଶ୍ୱାସ ରଖି ଆଗକୁ ଆଗେଇବାକୁ ହେବ । ହେଉ ପଛେ କଣ୍ଟକମୟ ସେ ପଥ । ପଥର ପରିସମାପ୍ତି ପରେ ଖୋଲିଯିବ ପ୍ରତିଷ୍ଠାର ସିଂହଦ୍ୱାର ! ନୂତନ ସୂର୍ଯ୍ୟାଲୋକର ଆନନ୍ଦ ଦେଖିବାକୁ ହେବ ଯେ ।

ସେହି ସ୍ୱପ୍ନ ଦେଖୁଛି ସହଦେବ···

ସହଦେବର ଅର୍ଦ୍ଧାଙ୍ଗିନୀର ଚକ୍ଷୁରେ ପ୍ରତିବିମ୍ବିତ ହେଉ ସେହି ଆଗାମିକାଲର ସ୍ୱପ୍ନ···ନବଯୁଗର ସ୍ୱପ୍ନ । ପରମେଶ୍ୱରରେ ବିଶ୍ୱାସ ନାହିଁ ।

ମୂଲ୍ୟବୋଧ ବଦଳିଛି । ଆଉ ସେ ଦାସୀର ଭକ୍ତି ନାରୀ ମୁହଁରେ ଶୋଭା ପାଏନା ।

ସାଧନାର ପୀଠ ଏ ଜଗତ···ସଂଘର୍ଷ ପୀଠ—ସଂଗ୍ରାମ ପୀଠ ! ଲଢ଼ିବାରେ ହିଁ ଆନନ୍ଦ !

ତାପରେ···ତାପରେ···

ତା ପରଦିନ ଘଟଣାଗୁଡାକ କିନ୍ତୁ ସହଦେବକୁ ଚିନ୍ତାଗ୍ରସ୍ତ କରି ଦେଇଥିଲା ।

କର୍ତ୍ତବ୍ୟ ! ତାରି ମହୁଆ ନିଶାରେ ସହଦେବ ଛୁଟିଥିଲା !

ସଂକଳ୍ପ ନିକଟରେ ହୃଦୟବୃତ୍ତିର ସ୍ଥାନ ନାହିଁ !

ନାହିଁ ଉପଦେଶର ସ୍ଥାନ·· ଯିଏ—ପାଠ ହିଁ ସବୁ !

ଏତେ ନିର୍ମମ, ଏତେ କଠିନ କେମିତି ହେଲା ସହଦେବ ?

ସେଦିନ ୧୦ମ ଶ୍ରେଣୀର ଫାଇନାଲ ପରୀକ୍ଷା ଦେବା ପୂର୍ବରୁ ପଦ୍ମାର ସେ କରୁଣ ମିନତି ବେଶ୍ ମନେ ପଡୁଛି । ନିର୍ବାକ୍ ପାଷାଣ ପରି ଠିଆ ହୋଇଥିଲା ସହଦେବ ।

ବସ୍ତିର ଝାଇଲ୍ ଘର । ବର୍ଷାରେ ଘର ଭିତରେ ଚୂଲ୍ ସେଜ, ପଡ଼ାଥାଏ ସବୁକିଛି । ତା'ର ଭିତରେ ପୁଣି ଶୁଣାଯାଏ ମଣିଷ ଶିଶୁର କୁଆଁ କୁଆଁ କାନ୍ଦଣା । ସୃଷ୍ଟିର ସଙ୍କେତ ! ଦେହର କ୍ଷୁଧା ଶତ ପ୍ରତିରୋଧ ସତ୍ତ୍ୱେ ଆତ୍ମପ୍ରକାଶ କରେ ! ଉର୍ବର କ୍ଷେତ୍ରରେ ବୀଜ ବପନ । ଏକାନ୍ତ ଅବହେଳାରେ ପଦ୍ମାର ଶୀର୍ଣ୍ଣକ୍ଲାନ୍ତ ଦେହଟାକୁ ଆଡ଼େଇ ଦେଇଥିଲା ସହଦେବ ' ନା—ହୋଇ ପାରିବନି ! ଯିବାକୁ ହେବ ସହ୍ୟ-ପାରୁନ ପଦ୍ମା ନା ? ଦେଖୁଛୁ—ଏ ଜଘନ୍ୟ ଦାରିଦ୍ର୍ୟର ପୀଡ଼ନ ? ଏ ଶିଶୁ କ'ଣ ଏମିତି ସରସ୍ୱପ ପରି ଆହରଣ କରିବ ବଞ୍ଚିବାର ଉପାଦାନ ? ଆମରି ପରି ଜୀବନ୍ତ ମୃତ୍ୟୁ ଭିତରେ ବଢ଼ି ଉଠିବ ? ପାଇବନି ଜଗତର ଆଲୋକ ? ତୁମକୁ ପଢ଼ିବାକୁ ହେବ । ଆଗାମୀ ଆଲୋକକୁ ସୃଷ୍ଟି ତୁମେ ଗଢ଼ିବ ପଦ୍ମା । ତମ ସ୍ୱାମୀ ତମ ପାଖେ ପାଖେ ଅଛି । ଥକ ପଡ଼ନା । ହାରି ଯାଉଛୁ କି ? ଏ ତ ଯାତ୍ରାର ଅଦ୍ୟୁମାରମ୍ଭ । ତମେ ଲେଡ଼ି ଡାକ୍ତର ହେବ ପଦ୍ମା ।

କିନ୍ତୁ···

ଅବାରିତ ଅଶ୍ରୁ ଧାରାରେ ଶରବିଦ୍ଧା ହରିଣୀ ପରି ଛଟପଟ ହେଉଥିଲା ପଦ୍ମା···

ତା'ର ସ୍ୱପ୍ନର ଫଳକ "ସ୍ମାରକ" ଆଉ ଏ ଧରଣୀରେ ନ ଥିଲା······ ଏକାନ୍ତ ଅବହେଳାରେ ଝରିପଡ଼ିଥିଲା ତା ଜୀବନର ପ୍ରଥମ ପ୍ରଣୟ-କୁସୁମ ।

ସେଦିନ ପରୀକ୍ଷା ହଲ୍‌ରୁ ଖବର ପାଇ ଛୁଟି ଆସିଥିଲା ପଦ୍ମା । ବୁକୁଫାଟି ତା'ର ଯେଉଁ ରକ୍ତ ଝରୁଥିଲା, ସେ ରକ୍ତରେ କାହିଁକି ଧୋଇ ହୋଇ ଗଲାନି ସହଦେବର କାନ୍ତାର୍ବ୍ୟ କ୍ଷୁଧା ?

ଅନନ୍ତ କାମନା···ଅସୁମାରି ଉଚ୍ଚାଶା ?

ଅର୍ଥନୈତିକ ସ୍ଥିତିର ଯାଦୁକାରୀ ସ୍ୱପ୍ନ-ମରୀଚିକା ପଛରେ ଛୁଟୁଥିଲା ସହଦେବ ।

କେତେ ଉନ୍ନିଦ୍ର ରଜନୀ ବିତିଯାଇଛି ପଦ୍ମାର···ବହୁପୃଷ୍ଠା ଓଦା ହୋଇ ଯାଇଛି ଅଜସ୍ର ଲୋତକପାତରେ !···

କୋମଳା ନାରୀମନକୁ ଦଳି ଦଳି କରି ହତ୍ୟା କରିନି କି ସହଦେବ ??

କାହିଁ ଆଗେଇ ଆସିନି ତ ଆଶ୍ୱାସନା ଦେବାକୁ ?

ତେବେ ???

ଆଜି କାହିଁକି ନିର୍ଜନ ରାତିରେ ଆତ୍ମା ତା'ର ଅହରହ କାନ୍ଦୁଛି । ଖୋଜୁଛି ପଦ୍ମାକୁ ।

କାହିଁକି ପ୍ରାଣ ଅନୁକ୍ଷଣ ଲୋଡ଼ୁଛି ସେହି ବସ୍ତିଘର, ସେହି ସିଙ୍ଗିଣିନାକା ସ୍ମାରକ ! କସ୍ତାଶାଢ଼ୀପିନ୍ଧା ଷୋଡଶୀ ପଦ୍ମା ' ତାର ହାତତନ୍ତୋ ଭାତ ଡାଲମା କୋବି ସାଗ ଓ ଶୁଖୁଆ ମୁଣ୍ଡ ଝୋଳ ! କେତେ ସୁଆଦ ଲାଗେ, ସହଦେବର ପୁରୁଷାକାର ତୃପ୍ତି ହୁଏ ସେ ଷ୍ଟଲରେ । ଦି ହାତ ମେଲାଇ ସହଦେବର ଚିତ୍କାର କରିବାକୁ ମନ ହେଲା—

"ଆ—ବାପ, ଧନ ମୋର ! ତୁ ଫେରିଆ । ତୋ ଅନ୍ଧ ବାପ ପାଖକୁ ଫେରିଆ ଧନ ।"

ଦି ହାତ ଦେଇ ସେ ସାଉଁଟି ନେବାକୁ ଚାହିଁଲା ପଦ୍ମାବତୀକୁ ତାର ଶିଶୁର ଜନନୀକୁ···

ନହେଉ ଶିକ୍ଷା ! ଦୂରକୁ ଯାଉ ସଂସ୍କୃତିର ଆଲୋକ । ଚାଲ ଆମେ ସେହି ଆଦିମାନବ ମାନବୀ ହେବା । କୋଳରେ ମୋର ଧନକୁ ତୋଳିଧର ପଦ୍ମା··· ତୋଳିଧର । ଚାଲ ଆମେ ଚାଲିଯିବା ଏ ନକଲି ସଭ୍ୟତାରୁ ବହୁଦୂରକୁ । ଆସ ଆସ ପଦ୍ମା !

ଏ ରାତ୍ରୀ ସରିବନି···ଅସରନ୍ତି ଏବେ ଅସୁମାରି ରାତି । ଅସୁମାରି ଏଇ ସ୍ମୃତିର ଦହିକା ନିଆଁ ଧୁକୁଧୁକୁ ହୋଇ ପିଞ୍ଜରା ତଳେ ଜଳୁଛି । ବାହାରକୁ କେହି ଦେଖି ପାରୁ ନାହାନ୍ତି । ବନ୍ଦ ଘରର କବାଟଟା କିଏ ଖୋଲିବ ?

କେତେ ଦାହ ବୁକୁ ତଳେ ବହନ କରିଛି ସହଦେବ—ସେ ଅଲିଖିତ ଇତିହାସ ଚୁଲି ତଳେ ହଜି ହଜି ଯାଉଛି ପୁଣି ହଜିପାରୁନି ।

ତା ପରେ—ପ୍ରଭୁଙ୍କ କରୁଣା ଊଣା ନୁହେଁ । ପଦ୍ମାର ପୂଜାଫଳ ··ଦେବବ୍ରତ ଆସିଛି ।

ଦେବତାଙ୍କୁ ପୂଜା କରି ସିଏ ଆସିଲା ପଦ୍ମାକୋଳକୁ ସେ "ଦେବବ୍ରତ" । ତା ପାଇଁ ପଦ୍ମା ପଢ଼ା ଛାଡ଼ିବାକୁ ମନସ୍ଥ କରିଥିଲା । ଦୃଢ଼ସଂକଳ୍ପ ସହଦେବର ହେଲେ ସଦ୍ୟଯୁକ୍ତ ମାତୃତ୍ୱର ଉଚ୍ଛୁଳା ସ୍ରୋତରେ ଭାସିଯାଇଥିଲା···

ମାସ ୧୧ ଦିନର ଦେବବ୍ରତ ମୁକ୍ତି ପାଇଲା ଦାରିଦ୍ର୍ୟ କବଳରୁ । ତଦଳି ନିମୋନିଆଁ ରୁ ସମସ୍ତ ଶକ୍ତି ଦେଇ ମଧ୍ୟ ବଞ୍ଚେଇ ପାରିଲାନି ସହଦେବ···ଅଯୋଗ୍ୟ ଅପଦାର୍ଥ ପିତା···ପଇସା ଅଭାବରୁ ଚିକିତ୍ସା ଅଭାବରୁ ସଂସାରରୁ ବିଦାୟ ନେଲା ଦେବବ୍ରତ !

ପଦ୍ମାର ଆଖିରୁ ଆଉ ଲୁହ ଝୁରୁନି । ଝୁରିଛି ପ୍ରତିହିଂସା ! ଏହି ସଂଗ୍ରାମର ମନ୍ତ୍ର ତାର ଶିରା ପ୍ରଶିରାରେ ଛୁଟାଇ ଦେଇଛି ଅନଳ ସ୍ରୋତ, କର୍ମ ପ୍ରେରଣା, ସଂଗ୍ରାମ, ଛୁଟିବାର ଦୁର୍ବହ ମୋହ ।

ଗଭୀର ରାତିରେ ଶେଯରୁ ଉଠି ଚମକି ଦେଖିଛି ସହଦେବ ଲଣ୍ଠନର ମୃଦୁ ଆଲୋକରେ ଅଙ୍କ କଷୁଛି ପଦ୍ମାବତୀ !

ରାତିରେ ସବୁ କାମ ସାରି ଭଲ ଲୁଗା ଖଣ୍ଡିକରେ ସାବୁନ୍ ମାରି ଶୁଖାଇ ଫେରି ଆସେ ପଦ୍ମା । ପ୍ରିୟତମର ମଧୁର ସାନ୍ନିଧ୍ୟ ଲଭପାଇଁ ନୁହେଁ । କିରାସିନି ପଟାର ବହି ଥାକ ନିକଟକୁ ଆସେ । ଦୁଇ ହାତରେ ଗଡ଼ିପଡ଼ୁଥିବା ଲୁହଧାରକୁ ଗୋଟିଏ ହାତରେ ପୋଛି ଦେଇ ଆର ହାତରେ ବହିର ପୃଷ୍ଠା ଓଲଟାଏ ପଦ୍ମା ।

ପଡ଼ୋଶୀ ଘରୁ ରହି ରହି ଶୁଭୁଥାଏ ଶିଶୁର କାନ୍ଦଣା । ନାନାବାୟା ଗୀତ । ବସ୍ତି ଘର ! କମ୍ରେଡ ସହଦେବର ଘର ।

ଦୁଇଟି ମୃତଶିଶୁର ଜନନୀ ପଦ୍ମାର ଏ ଲୁହ କ'ଣ କେଉଁଦିନ ହାତ ବଢ଼ାଇ ପୋଛି ପାରିଚି ସହଦେବ ? ନା—ସହଦେବ ସେ ତା ନୁହେଁ । ସହଦେବ ହସିଛି ପଦ୍ମାର କ୍ରନ୍ଦନରେ ! ହାତଘଣ୍ଟା ବନ୍ଧକ କରି ନାଆଁ ଲେଖାଇ ଦେଇଛି କଲେଜରେ । "ଦେବୁ ମୋର ଔଷଧ ଅଭାବରେ ମରିଛି ପଦ୍ମା । ତମେ ଡାକ୍ତରାଣୀ ହୁଅ । ଅନେକ ଦେବୁକୁ ବଞ୍ଚାଅ !

ମୋହ ?
ଅର୍ଥର ମୋହ ??
ଖ୍ୟାତିର ମୋହ ???

ତ୍ୟାଗ ପରୋପକାର ମୋହ ? ସମାଜ ଗଢ଼ିତୋଳିବାର ମୋହ ? ମିଛ—ମିଛ—ସବୁ ମିଛ—ତେବେ ?

ପଦ୍ମାର ପଲାଶ ନେତ୍ର ତଳେ କ୍ଳାନ୍ତିର ଘନ କଳା ଆବର୍ତ୍ତ । ହଳଦିଆ ରଙ୍ଗ ମୁହଁ ଉପରେ ଈଷତ୍ ବାଦାମି ରଙ୍ଗର ମଳଚିଆ ଛୁଇ ଜମିଉଠେ । ସୁଠାମ ବାହୁମୂଳ କ୍ରମଶଃ ହୋଇଉଠେ ଶୀର୍ଣ୍ଣରୁ ଶୀର୍ଣ୍ଣତର । କାନ୍ତି ପରିବର୍ତ୍ତେ ସମସ୍ତ ଶରୀରରେ ଖାଲି ଫୁଟି ଉଠେ ସାମାହ୍ନିକ କ୍ଳାନ୍ତି ଆଉ ଶ୍ରାନ୍ତି । ଲାବଣ୍ୟ ଅଲକ୍ଷ୍ୟରେ ବିଦାୟ ନିଏ ।

ଏସବୁ କଣ ଦିନେ ଦେଖିଛି ସହଦେବ ? ନିଶା—ଭୟଙ୍କର ସର୍ବଗ୍ରାସୀ ନିଶା !

ରାତି ରାତି ଖାଲି ଉଜାଗର ହୋଇ ବହି ଘୋଷିଛି ପଦ୍ମା । ଆଉ ଥରେ ପ୍ରାଣଭରି ଉପଭୋଗ କରିପାରିନି ଦାମ୍ପତ୍ୟ ଜୀବନର ମଧୁର ସ୍ୱାଦ, ନିବିଡ଼ ଆଶ୍ଳେଷ, ଭୋଗ କରିନି ଜ୍ୟୋତ୍ସ୍ନାବିଧୌତ ରାତି ! ପ୍ରିୟତମର ନିବିଡ଼ ଆଶ୍ଳେଷ ସୁଖରୁ କିଏ ବଞ୍ଚିତା କରିଛି ତାକୁ ?

ସହଦେବ କ'ଣ ନିଜେ ଏ ବିୟୋଗାନ୍ତ ନାଟକର ଦ୍ରଷ୍ଟା ନୁହେଁ ???

ନିଜ ହାତରେ ନିଜର ତଣ୍ଟି ଚିପି ସହଦେବର ନିଜକୁ ହତ୍ୟା କରିବାକୁ ଇଚ୍ଛା ହେଲ ! ଆତତାୟୀ ସହଦେବ କାହାକୁ ଦୋଷ ଦେବ ?

ନିଜକୁ—କେବଳ ନିଜକୁ ?

× × ×

ମେଡ଼ିକାଲ୍‌ରେ ନାମ ଲେଖାଇଛି ପଦ୍ମାବତୀ !

ବର୍ଷ ବର୍ଷ ହୋଇ ବଢ଼ିଯାଇଛି ଧୂଅଁଳି କର୍ମମୁଖର ବର୍ଷ । ପଦ୍ମାବତୀ ଢଳ ଢଳ ହୋଇ ମରିଯାଇଛି । ଡିଗ୍ରୀ ଫଟ ଉଠାଇ ଫେରି ଆସିଛି ଯେଉଁ ଲେଡ଼ି ଡାକ୍ତରଣୀ ପଦ୍ମାବତୀ ଦାସ M. B. B. S., ସେ ବାନ୍ଧବୀ । ହଁ ପଦ୍ମାବତୀ, କମ୍ରେଡ୍ ପଦ୍ମାବତୀ···ସାଥୀ ପଦ୍ମାବତୀ !

ମରିଯାଇଛି ପ୍ରିୟା ପଦ୍ମାବତୀ···

ତାର ସନ୍ତାନର ମାଆ ପଦ୍ମାବତୀ···

ତା ଜଣୋଷ୍ଣ ବଧୂ ହଳଦୀ ଗୁରୁ ଗୁରୁ ପଦ୍ମାବତୀ···ଏ ଭିନ୍ନ ମଣିଷ ।

ଶିହରି ଉଠିଛି ସହଦେବ । ତଥାପି ପ୍ରାଣ ଖୋଲି ହସିବାର ଛଳନା କରିଛି ସେ ! ଆଧୁନିକ ଯୁଗର ରୀତି ଅନୁସରଣ କରି କରିଛି ତାକୁ ଅଭିନନ୍ଦନ···ଆଣିଛି ଫୁଲତୋଡ଼ା—ରଜନୀଗନ୍ଧା । ଗ୍ରହଣ କରିଛି ବନ୍ଧୁମାନଙ୍କର ପ୍ରଶଂସା ପ୍ରଶସ୍ତି, ଶୁଭେଚ୍ଛା, ଅଭିନନ୍ଦନ ସେ କୁଆଡ଼େ ମନ୍ଦିର ଗଢିଛି ! ସେ ଧରମା । ଯେ ମନ୍ଦିରର ମୁଣ୍ଡି ମାଉସାର ଶିଖର ଦେଖିରୁ ଡେଇଁପଡ଼ିଥିଲ ଅତଳ ସାଗରକୁ ! ଭଲ କରିଥିଲ । ସହଦେବ ଯଦି ଡେଇଁ ପାରିଥାନ୍ତା !

ଧରମା ବୁଦ୍ଧିମାନ···

ଧରମା ମହାନ୍···

ଆଜି ଯଦି ସହଦେବ ସେଇମିତି ସୁଯୋଗ୍ୟ ଶିଳ୍ପୀପରି ଡେଇଁ ପଡ଼ି ପାରନ୍ତା ବିସ୍ମୃତିର ଅତଳ ଗର୍ଭକୁ···

ତେବେ·· ତେବେ···???

ତଥାପିତ ଆସିଛି ନିବେଦିତା ! ଆଉ ନିବେଦିତାର ଗ୍ଭରିପଟେ ନାହିଁ ଅଭାବର ଦୁଃସହ ଜ୍ୱାଳା । ତା ପାଇଁ ମୁକ୍ତ କନ୍‌ଭେଣ୍ଟ ସ୍କୁଲର ଦରଜା ! ଫୁଫା ଜାମା—କଣ ନାହିଁ ?

କିନ୍ତୁ···

ମୁକ୍ତ କି ମାତୃ ଅନ୍ତର ? ପାଇଛି କି ସେ ମାଆ କୋଳ ?

ଛି—ଛି—ଏତେ ଛୋଟ କଥା ଭାବୁଛି ସହଦେବ ! ସେ କଣ ସତରେ ପାଗଳ ହୋଇଯାଇଛି । ନା—ପୁରୁଷର ଅହମିକା ଆଘାତ ପାଇଛି । ପୂଜାଙ୍କ-

ପରୀକ୍ଷା ଅଣ୍ଡା ସ୍ୱାଗଦିଆ ମାଂସଝୋଲ ଏକୁଟିଆ ବସି ଖାଉଥିଲେ ବେଳେ ଆତ୍ମା କ'ଣ ତାର କାନ୍ଦ ଉଠୁନ ସେଇ ନୁଆଁଶିଆଁ ଗୁଳଘରର ମାଛ ହଳଦୀପାଣି ଝୋଲ ପାଇଁ ??? ସେ କଣ ଅନବରତ ଖୋଜୁନ ତାର ମୁନା ପ୍ରିୟାକୁ, ପଦ୍ମା ହାତରନ୍ଧା ପାଇଁ କି ଲୋଭ ସହଦେବର !

ପଙ୍କରୁ ଜାତ ଯେଉଁ ପଦ୍ମ ତାକୁ ସାଉଁଟି ଧରିବାକୁ ସହଦେବର ଯେ ଆକାଂକ୍ଷାର ଅନ୍ତ ନାହିଁ ' ସେଇ ସୁଗଠିତ ହାତ ଦୁଇଟା ଆଉ ଚୁଡ଼ିମୁଠାର ଅବିରତ ଝଣଝଣ ଶବ୍ଦ ଶୁଭୁଛି । ତାରି ମଧ୍ୟ ଦେଇ ଯେଉଁ ସଫା ଗେଂଜି ଖଣ୍ଡିକ, ସେ ରୁଣୁଝୁଣୁ ଶବ୍ଦତରଙ୍ଗ ମଧ୍ୟରୁ ଜାତ ଯେଉଁ ବଡ଼ ବାଇଗଣ ସବୁପାଇଁ ଲୋଭ ସହଦେବର । ଏଣ୍ଡୁଗ୍ରି ପିଠା, ସେ ହାତସଫା କରା ଖଣ୍ଡିକ ବୁଛୁଣା ଗୁଦର ଉପରେ ଚୁଡ଼ାମୁଠାର ନଥର ସ୍ପର୍ଶ ! ଆଉ ଏବେ ଏଣ୍ଡୁରି କରେନ ପଦ୍ମା, ଆସେ ଇଡ଼ଲି ଦୋକାନରୁ—ସମସ୍ତ ନାହିଁ ଏ ବଳାସ ପାଇଁ ।

ଆଃ···ସହଦେବ ଆଖି ବୁଜିଲା ।

ଏବେ ସେ ହାତର ଘଣ୍ଟା ଟିକ୍ ଟିକ୍ ବାଜେ । ବାରମ୍ବାର କାନପାଖେ କହେ, ଚେତାଇ ଦିଏ ସମସ୍ତ ହେଲାଣି । ବେଳ ନାହିଁ, ଅଯଥା ସମସ୍ତ ନଷ୍ଟ କରିବାକୁ ! ଡାକ୍ତରଖାନା ଯିବାକୁ ହେବ ଯେ । Conference ପାଇଁ Paper ଲେଖିବ, ମିଟିଂ ଯିବ, କେତେ କାମ ।

ସେ ହାତରେ ଆଉ ଚୁଡ଼ି ନାହିଁ କି ଚୁଡ଼ି ମଧ୍ୟ ବାଜେନି ! ନାହିଁ । ସେ ହାତ ଶିଥିଳ,—ସ୍ପନ୍ଦନ ନାହିଁ । ମୋହ ନାହିଁ । ସେ ହାତ ମଧୁର ସ୍ପର୍ଶ ବୁଣି ଦିଏ ନାହିଁ ସହଦେବର ସବ ଶରୀରରେ !

ସେ ହାତ ଛୁରୀ ଧରି ନିର୍ମମ ପାଷାଣୀ ପରି କେତେ କ୍ଷତକୁ ଆହୁରି ବିକ୍ଷତ କରେ । କ୍ଷତର ଉପଶମ ନିମନ୍ତେ ଅବଶ୍ୟ ।

ସେ ଅସ୍ତ୍ର ଧରେ···ମାନିବାକୁ ହେବ ସହଦେବକୁ ! କଥାର ଛୁରୀ ଚଳାଏ ! ଏ ଅନ୍ୟାୟ ସହଦେବର !

ସହଦେବର କ୍ଷତରେ କିନ୍ତୁ କୌଣସି ଅଏଣ୍ଟମେଣ୍ଟ କ'ଣ କେବେ କାମ ଦେଉନ ??

ଏ ଜ୍ୱାଳାରୁ କ'ଣ ମୁକ୍ତି ନାହିଁ ??

ନାହିଁ, ମୁକ୍ତିର ପଥ ନାହିଁ ?

ସହଦେବ ଦୃଷ୍ଟି ପ୍ରସାରିତ କଲା ଅଳିଦୂରସ୍ଥିତ ଡନ୍‌ଲପ୍ ଗଦିରେ ଯାହାର କ୍ଳାନ୍ତ ଦେହ ଢଳି ପଡ଼ିଛି, ସେ କିଏ ?

ତାକୁ କଣ କେବେ ଚିହ୍ନିଛି ସହଦେବ ?

ଲଣ୍ଠନଟା ଥିଲେ ସେ ହୁଏତ ନଇଁପଡ଼ି ତାର ମୁହଁ ପାଖରେ ଆଲୁଅଟା ଦେଖାଇ ଟିକେ ନିରେଖି ଚାହିଁଥାନ୍ତା । ତାର ପଦ୍ମା ତ ?

ସେ କାଲି ପରି, ପଦ୍ମାର ହଳଦିଆ ଗ୍ରୁଇଟା କ'ଣ ଲଣ୍ଠନ ଆଲୁଅରେ ଝଟକି ଦିଶନ୍ତାନି ତାଙ୍କୁ । ସେହି ସପ୍ତଦଶୀ ପଦ୍ମା—ଛି—ଛି—ସହଦେବ । ତୁମେ ମିଥ୍ୟାବାଦୀ । ବିପ୍ଳବୀ ନା ସେହି ଆଦି ଯୁଗର ସ୍ୱାମୀ !

ବିଜୁଳି ଆଲୁଅ ଭିତରେ ସେ ପାଇବ କୁଆଡ଼ୁ ପଦ୍ମାକୁ ?

ସେ ତ ପୁଲଙ୍ଗ ଦୀପ ତଳେ ଲିଭି ଯାଇଛି ।

କ'ଣ ପାଇଛି ସହଦେବ ? ପାଇଛି କି ?

କିନ୍ତୁ ଲୋକେ କହନ୍ତି, ସହକର୍ମୀମାନେ କହନ୍ତି, ସହଦେବ ଭାରି ଭାଗ୍ୟବନ୍ତ । ସମସ୍ତେ ସହଦେବଙ୍କୁ ଈର୍ଷା କରନ୍ତି । ଈର୍ଷାର କେନ୍ଦ୍ରବିନ୍ଦୁ—ପଦ୍ମାବତୀ !

କିନ୍ତୁ କିଏ କଣ ଜାଣେ କେତେ ବଡ଼ ସମ୍ପଦ ହରାଇ ସହଦେବ ଆଜି ଶକ୍ତ ? ପଦ୍ମା ଯେ ମୃତା ! କେତେ ବଡ଼ ଜଘନ୍ୟ ହତ୍ୟା କରି ସହଦେବ ଆଜି ହତ୍ୟାକାରୀ; କିଏ ଜାଣେ ?

ତ୍ରିଶ ବର୍ଷରେ ସେ ଆତ୍ମା ଖୋଜିବୁଲେ ମୃତା ପଦ୍ମାବତୀକୁ । ସେ ଆଖି ନିର୍ଜନରେ ଢାଳେ ଅବଳେ ଅଶ୍ରୁ । ପତ୍ନୀର ସହାସ୍ୟତାରେ ଅବସରରେ ଚଷମା ବ୍ୟବହାର କରେ ସେ ·

ଅନ୍ତରୁ ମୁକ୍ତି ପାଇଁ ଏ ଏକ ନିଚ୍ଛକ ଅଭିନୟ ନୁହେଁ କି ? ଆତ୍ମପ୍ରତାରଣା !

'କାମନାର ବିନାଶରେ ଦୁଃଖର ବିନାଶ ।' ଏ ସିଦ୍ଧାନ୍ତ କରିଥିଲେ ରାଜପୁତ୍ର ଗୌତମ ! ଚିରନ୍ତନ ସତ୍ୟ ପୁରୁଣା ହୁଏ ନାହିଁ ।

ତେବେ ସହଦେବର ମୁକ୍ତି କାହିଁ ???

ଲେଡ଼ି ଡାକ୍ତର ପଦ୍ମାବତୀ ଦାସ ଆଲୁଅ ଜାଳିଲେ, ଶେଯରୁ ଉଠିଲେ, ଏ କ'ଣ, ତୁମେ ଶୋଇନ ଯେ ଏତେବେଳଯାଏଁ ।

"ମୁଣ୍ଡ ବ୍ୟଥା କରୁଛି ।" ସହଜ ସଂକ୍ଷିପ୍ତ ଉତ୍ତର ।

"ଓହୋ···ଏଇ ପାଣିଅଛି ଟେବୁଲରେ । ଟ୍ୟାବ୍‌ଲେଟ୍‌ଟା ଖାଇଦିଅ । ଭଲ ଲାଗିବ ମୁଣ୍ଡ ।"

ଆଜ୍ଞାଧୀନ ଗ୍ରୁଳଟି ପରି ଉଠିଯାଇ ସହଦେବ ଔଷଧ ଖାଇ ଆଲୁଅ ଲିଭାଇ ଦେଇ ବିଛଣାକୁ ଗଲେ ।

ଆଲୁଅ ଲିଭିଯାଇଛି । ଅନ୍ଧକାର ଭୟଙ୍କର ନୁହେଁ । ଅନ୍ଧକାର ଅତି ପ୍ରିୟ । ଅନ୍ଧକାର ମଧ୍ୟରେ ମନୁଷ୍ୟ ନିର୍ବିଘ୍ନରେ ଖୋଲି ଦେଇପାରେ ନିଜର ମନକୁ ! ଡୁବା ପହଁରି ଦେଇପାରେ ! ଲେଡ଼ି ଡାକ୍ତର ଔଷଧ ଦେଇ ଭଲ କରି ପାରିବେନି

ଏ ଯନ୍ତ୍ରଣା ସହଦେବ ଜାଣେ ! ପଦ୍ମାର ଶୀତଳ ହାତର ଚୁଡ଼ିମୁଠାର ମଧୁର ଆବେଗବୋଳା ନରମ ସ୍ପର୍ଶ ଲଘାଇ ଦେଇ ପାରିଥାନ୍ତା ହୁଏତ ଏହି ଦୁର୍ବିସହ ଦହନ···କିନ୍ତୁ ସହଦେବ କହି ପାରେନା କିଛି । ଫୁଲଙ୍କ ଧାପର ନରମ ଆଲୁଅ ହୁଏତ ଉପଶମ କରି ପାରିଥାନ୍ତା ! ଗୋଡ଼ହା ଟିକିଏ ଚିପିଦେଲେ ହୁଏତ ଭଲ ଲାଗନ୍ତା । ପଦ୍ମାର ହତ୍ୟାକାରୀ କଣ୍ଠରୁ ଏ ଚକ୍କାର ଖାଲି ଯେ ଅନ୍ଧକାରରେ ପ୍ରତିଧ୍ୱନିତ ହେବ···ନା—କହିପାରିବାକୁ ଚେଷ୍ଟା କରି ବିଫଳ ହୁଏ ସହଦେବ । ମେଞ୍ଚା ମେଞ୍ଚା ଅନ୍ଧକାରରେ ପଦ୍ମା ମିଶିଯାଇଛି । ଦୁଇ ହାତରେ ବ୍ୟାକୁଳ ଭାବରେ ଅନ୍ଧକାରକୁ ଜାବୁଡ଼ି ଧରିଛି ସହଦେବ । ସେ ପଦ୍ମାକୁ ଖୋଜେ, ସେ ବିପ୍ଳବୀ ନୁହେଁ···ସେ ବିପ୍ଳବୀ ପୋଷାକଧାରୀ ଆଦିକାଳର ଅହଂକାରୀ ସ୍ୱାମୀ ।

ବିପ୍ଳବୀର ମୁଖା ତଳେ ସେହି ଅହଂଧାବ ପରିପୂର୍ଣ୍ଣ ପୁରୁଷ···ସ୍ୱାମୀ · ପ୍ରଭୁ । ବନ୍ଧୁ ନୁହେ···ସାଥୀ ନୁହେଁ···ଖାଲି ଅଭିନୟ । ସାଥି ହେବାର ଅଭିନୟ କରେ ।



## ● ନିଯ୍ୟତି

ପବିତ୍ର ବିବାହବେଦୀରେ ଅଗ୍ନି ସାକ୍ଷୀ ରଖି ଯାହାକୁ ଜନ୍ମଜନ୍ମାନ୍ତରରେ ସାଥି ରୂପେ ବରଣ କରେ ହିନ୍ଦୁ ନାରୀ; ଯଦି ସେହି ଚରମ ଆତ୍ମୀୟ ମଧ୍ୟରେ ପରମ ଶ୍ରଦ୍ଧାସ୍ପଦଙ୍କୁ ସେ ଦେଖି ନ ପାରେ ??

ତେବେ ?

ନିଜକୁ ଘୃଣା ଲାଗୁଥିବା ସବୁ ଗୁଣଗୁଡ଼ାକ ଯଦି ସେହି ମଣିଷ ଭିତରେ ଦେଖେ ?

ତେବେ କ'ଣ ହେବ ?

ଏ ପ୍ରଶ୍ନର ଉତ୍ତର ଶାସ୍ତ୍ର କଣ ଦେଇଛି ?

ନିଜକୁ ବାରମ୍ବାର ଏହି ପ୍ରଶ୍ନ କରେ ତନୁଜା । କିନ୍ତୁ ଏହି ସବୁ ଗୁଣ ବା ସ୍ୱଭାବଗୁଡ଼ାକ ସେ ଭଲ ପ୍ରଶ୍ନ କରିବାକୁ ଲେ କାହିଁକି ?

ପୁଣି ପିଲାଟି ଦିନରୁ ?

ମାଇକିନିଆ ଟିଅର ଇଏ କି ଆଣ୍ଠୁ ପଣମ !

ଝିଅଙ୍କ ସ୍ୱାସ୍ଥ୍ୟ ପଥର ତଳେ ! ମାଡ ଖାଇବ, ଗାଳି ଖାଇବ, ସବୁ ସହି ପଡ଼ିରହିବ, ଏ ଶିକ୍ଷା କ'ଣ ବୋଉ ପିଲାଟି ଦିନରୁ ତାକୁ ଦେଇ ନଥିଲା ?

ତନୁଜାର ମନେ ପଡ଼େ ଭାଉଜଙ୍କ ଭାଇ ଆସି ଖାଲି ସରନାମାକୁ ଖୋସାମତ କରନ୍ତି । ଖଣ୍ଡି ସିଟଲେଗେ ତନୁଜାକୁ ।

ଆରେ ପୁରୁଷ ପିଲା ହୋଇ ଏ କି ଢଙ୍ଗ ମ !

ଛି—ଛି—ଛି—

ଘୃଣାରେ ନାକ ଟେକେ ସେ । ନାରୀ ଯେ ଉମା ଅଂଶରେ ଜାତ । ଦେବାଦିଦେବଙ୍କୁ ଧରିବାପାଇଁ ଯିନା ସେ ଆମରଣ ସାଧନା କରିବ, ସିଏ ଧରା ନଦେଲେ ତାକୁ ପାଇବାପାଇଁ ଅଖଣ୍ଡ ତପସ୍ୟା କରିବାରେ ହିଁ ଆନନ୍ଦ ! ତନୁଜା ତପସ୍ୟା କରିଥାନ୍ତା···

ହିଁ, ନିଜେ ସଳିତା ପରି ଜଳି ଆଲୋକିତ କରିଥାନ୍ତା, ସେହି ଦୁର୍ଲଭ ଜୀବନକୁ······

କିନ୍ତୁ ଆଗରେ ତାର ସ୍ୱାମୀ ହୋଇଥାନ୍ତେ ମହାନ୍······

ଇମ୍ ଙ୍କ ଅଜବ ପରିକଳ୍ପନା···ସେଭଳି ପୁରୁଷୋତ୍ତମ ଭଲି ତନୁଜାଙ୍କୁ ମିଳିବେ କାହିଁକି ?

ନ ମିଳନ୍ତୁ···ସେ ତ କିଛି ନଥିଲା, ବିକଳ ହେଉ ନଥିଲା । ସେ ତ ଅପେକ୍ଷା କରିଥାଆନ୍ତା ଅନନ୍ତକାଳ—ତାର ମନର ମଣିଷ ଆସିବାର ମହାଲଗ୍ନକୁ ଗ୍ରହି ରହିଥାଆନ୍ତା ।

ତା ନିଚିଛ ମନର ଗୋପନ ଦ୍ୱାର ଆପେ ଆପେ ମେଲା ହୋଇ ଯାଇଥାଆନ୍ତା···

ମନର ପ୍ରାନ୍ତ ପକ୍ଷୀର ପହିଲି କାକଳୀ ସେ ଶୁଣିଥାଆନ୍ତା···ସେଇ ପ୍ରଥମ କ୍ଷଣର ପ୍ରତୀକ୍ଷାରେ ସେ ଅନନ୍ତକାଳ ଗ୍ରହି ରହିବାକୁ ପ୍ରସ୍ତୁତ ଥିଲା ଯେ ··

—"ଫୁଟେଇ ମ ଫୁଟେଇ ! ଏଗୁଡ଼ାକ ଢଙ୍ଗ । ରାତି ରାତି ଉଜାଗର ହୋଇ ନଭେଲ୍ ବହି ପଢ଼ାର ଫଳ ସବୁ ।

କାହିଁକି ସେ ସବୁ ଶୁଣୁଛ ମ ? ଖାଲି ଉପରେ । ମନ ପଛେ ସକ୍ ସକ୍ ହୋଇଥିବ କେମିତି ବାହାଘର ହୋଇଯାଆନ୍ତା କି ? ପାଠପଢ଼ାକୁ ଟିକେ ଚେଷ୍ଟା ମିଳନ୍ତା ··ଆମକୁ ସବୁ ଦେଖି ହିଂସାରେ ଜଳି ପୋଡ଼ି ମରୁଥିବେ । ଆଜିକାଲି ସବୁ କଲେଜ ଝିଅ ସେଇଆ ମ···ଛଟକ ।"

ଆତ୍ମଜ୍ଞାନ ସର୍ବଜ୍ଞାନର ସଙ୍ଗୀତାର ପରିମାପକ !

କଲେଜପଢ଼ା ଭାଉଜଙ୍କର ଅନୁଭୂତିରେ ଘରେ ସବୁରି ଆସେ ଗଭୀର ଆସ୍ଥା···ପ୍ରତ୍ୟୟ ! ହିଁ ତନୁକୁ ବାହା କରିବାକୁ ହେବ ।

ତନୁଜା ନିଜକୁ ଶାସନ କରେ । ନା—ନା·—ଏ ତାର ବଡ଼ ଅନ୍ୟାୟ । କିଏ କ'ଣ ହାତ ଗୋଡ଼ ବାନ୍ଧି ତନୁଜାକୁ ବେଦୀରେ ବସେଇ ଦେଲେ ? ସେ ଯଦି ଜିଦ୍ ଧରିଥାନ୍ତା—ହିଁ ··ଜିଦ୍ ନ ଧରିଲେ ଆଉ ଚଳୁଛି·· ତୁଣ୍ଡ ଖୋଲି କେବେ ନନାଙ୍କ ଆଗରେ କଥା କହୁଛି ସେ ? ସେ ସାହସ, ସେ ଆତ୍ମପ୍ରତ୍ୟୟ କାହିଁ ?

ପୁଣି ଆମ ସମାଜରେ · ଝିଅମାନଙ୍କର ସେ ଅଧିକାର ନାହିଁ । ସଂସ୍କାରର ଚେର ବହୁଦୂରକୁ ମାଡିଯାଇଛି ।

ପରିବେଶର ପ୍ରଭାବ, ପରିସ୍ଥିତିର ପ୍ରଭାବ—ଦାୟୀ ! ତନୁଜାର ବ୍ୟକ୍ତିତ୍ୱକୁ ତଣ୍ଟି ଚିପି ହତ୍ୟା କରାଯାଇଛି ପିଲାଟି ଦିନରୁ । ନିରୀହ ଶିଶୁକୁ ବଳାତ୍କାର ଶିକାର କରାଯାଇଛି । ଆଜି ସେଇ ସ୍ମୃତି ମନେପଡ଼ିଲେ ପ୍ରତି ଲୋମମୂଳ ଟାଙ୍କୁରି ଉଠୁଛି । ପ୍ରତିବାଦର ପ୍ରବଳ ପ୍ଳାବନରେ ଦୋହଲି ଉଠୁଛି ମର୍ମମୂଳ । ଅନ୍ୟାୟ ବିରୁଦ୍ଧରେ ଅନ୍ତରରେ ବହୁବାର ପ୍ରତିବାଦ କରିଛି ସେ ! ମାତ୍ର ଅଧର ମଉନ, ମୂକ !

ସ୍ୱାମୀଙ୍କେ ଖାଲି ଆଖିର ବନ୍ଧୁ ବନ୍ଧୁ ଲୋତକ ବହିଯାଉଛି । ଆଉ ବହିଯାଉଛି ଅବିଶ୍ରାନ୍ତ ଭାବରେ···ହେଲେ କେହି ଦେଖି ନାହିଁ । ଘୁରୁଛି ଦେଇ ନାହିଁ ।

ମନ ବିଦ୍ରୋହ କରୁଛି ।

କିନ୍ତୁ ଏତେ ଘୃଣା ସେ ପାଇଲା କେଉଁଠୁ ? କାହିଁକି ଏ ଘୃଣା ? ନିଜ ଭିତରେ ଏହି ଅପର୍ଯ୍ୟାପ୍ତ ଘୃଣାର ଅସହ୍ୟ ଭାରକୁ ପ୍ରେମରେ ରୂପାନ୍ତରିତ କରିବାରେ ସେ କାହିଁକି ସାଧନା କଲାନାହିଁ ? କଲାନି ତପସ୍ୟା ତ ?

ତେବେ—???

ନାଁ ସେ ବିଫଳ ହୋଇଛି ।

ହିଁ···ସେହି ଏକାନ୍ତ କୁତ୍ସିତ ଜଘନ୍ୟ ଲୋକଟା···( ଇମ୍··ଏ କଣ ଭାବୁଛି ସେ···ଛି—ଛି—ଛି । ସେ ପରା ତାର ସ୍ୱାମୀ ! ଇହକାଳ ପରକାଳର ମୁକ୍ତିପଥ ! )

କିନ୍ତୁ ମାଟମନା ନିଶ୍ଚୟ···

( ତନୁଜା, ଚୁପ୍‌କର···ଚୁପ୍‌କର । ପର କାଳରେ ବି ତୋର ଶାନ୍ତି ନାହିଁ । ମୁକ୍ତି ନାହିଁ—ଛି—ଛି—ଛି—ପତିନିନ୍ଦା କରୁଛୁ । ମର୍ ତୁ ମର୍ । )

କିନ୍ତୁ···ତା ନହେଲେ ସେ ତାର ବିଭତ୍ସ ଦାନ୍ତଗୁଡ଼ାକ ( ଛି—ଛି ପୁଣି କହିଲୁ ? ) ମେଲେଇ ଏତେ ଅଶ୍ଳୀଳ କଥାଗୁଡ଼ାକ ବାରମ୍ବାର ଉଚ୍ଚାରଣ କରେ । କାହିଁକି ଶୋଭନୀୟ ହୋଇ ପାରେନା ?

ବଳଦ କୁକୁର ପରି ଲଜ୍ଜା ହଲେଇ କୃତ୍ରିମ ବିନୟ କରି ସେ ସବୁରି ଆଗରେ ଏମିତି ଢଳି ପଡ଼େ, ଲୋଟିପଡ଼େ କାହିଁକି ? କଣ ମେରୁଦଣ୍ଡହୀନ ପ୍ରାଣୀ ?

ସାମାନ୍ୟ ସୌଜନ୍ୟରେ ସେ ଏତେ କୃତ୍ୟ କୃତ୍ୟ ହୋଇ ନିଜକୁ ସବୁରି ପାଦତଳେ ଅଜାଡ଼ି ଦିଏ କାହିଁକି ? ସେ ଅଶୋଭନୀୟ କାର୍ଯ୍ୟଗୁଡ଼ାକ ତନୁଜାକୁ କରିବାକୁ ବାଧ କରାଯାଏ କାହିଁକି ?

କାହିଁକି ?—କାହିଁକି ?

ଏ କାହିଁକିର କଣ କିଛି ଉତ୍ତର ତାକୁ ସମାଜ ଦେଇଛି ??? ନା ଖାଲି ସମାଜର ରକ୍ତଚକ୍ଷୁ ବାରମ୍ବାର ତାକୁ ହୁଙ୍କରି କରାଇ ଦେଇଛି ଏ କାହିଁକି ପଚାରିବାର ଅଧିକାର ତୋର ନାହିଁ—

ନାହିଁ—ନାହିଁ—

ତୁ ଯେ ନାରୀ ! ଓଡ଼ିଆ ଝିଅ···

ଅସହ୍ୟ ବ୍ୟଥାରେ ଆକୁଳ ହୋଇଉଠେ ତନୁଜାର କଣ୍ଠସ୍ୱର ।

କିନ୍ତୁ···କିନ୍ତୁ ତମେ କଣ ଜାଣନା ନିଜ ଭିତରର ଅବ୍ୟକ୍ତ ଯନ୍ତ୍ରଣାକୁ ପ୍ରକାଶ କରିବାର କୌଣସି ଭାଷା ଖୋଜି ପାଏ ନାହିଁ ବୋଲି ଏ ଦେଶର ନାରୀ ତାର ବିବାହିତ ଜୀବନର ପୁଞ୍ଜୀଭୂତ ସମସ୍ତ ଗ୍ଲାନିକୁ ଏଇ ଗୋଟିଏ ମାତ୍ର ଶବ୍ଦ ଦ୍ୱାରା ସେ ବ୍ୟକ୍ତ କରେ।

କାହିଁକି ଏ ଅବତାରର ?

ଏଇ ଗୋଟିଏ ଶବ୍ଦ ଯେ ପୁଞ୍ଜୀଭୂତ ବେଦନାର ସମଷ୍ଟି ତା ତମେ କଣ ଜାଣ ନାହିଁ ? ଜାଣ ନାହିଁ ପୁରୁଷକୃତ ସମାଜର ଦଣ୍ଡଧାରୀମାନେ ?

ସମାଜ ଜାଣେ—, ଜାଣେ—, ଜାଣେ— ।

ସମାଜର ନିରୁଦ୍ଧ ପ୍ରଶ୍ନକୁ ମୁକ୍ତି ଦେବାର ଦୁର୍ଦ୍ଦମନୀୟ ବାସନା ଯେ ଅବିରତ ମନ ଭିତରେ ସଞ୍ଚରି ମରୁଛି । ସେ ଯେ ବ୍ୟକ୍ତ କରିବା ପାଇଁ ପଥ ଲୋଡ଼େ··· ଅହରହ ସଂଗ୍ରାମ କରେ ମାନସ ରାଜ୍ୟରେ ।

ମାତ୍ର ସେ ପଥ କିଏ ଦେଖାଇବ ??

ଆଇନ୍ ??? ଛି—ଛି—ଛି— କି ଅବାନ୍ତର···

ଅବାନ୍ତର । ଅବାନ୍ତର ଆଉ ଏକାନ୍ତ ଅଶୋଭନୀୟ ତୁଣ୍ଡ ଖୋଲି କହିବା । ସଭିଏଁ ଆଗରେ ନିଜର ଦସ୍ତୁନୀୟ ରୂପଟାକୁ ଟେକି ଧରିବାଟା ଆହୁରି ଅସୁନ୍ଦର । ଘୃଣ୍ୟ ଓ ଲଜ୍ଜାକର···

ହିଁ···ଘୃଣ୍ୟ ଆଉ ଏକାନ୍ତ ଲଜ୍ଜାକର ଜୀବନକୁ କାହା ଆଗରେ ଟେକି ଧର ନାହିଁ ତନୁଜା !

ହସିଛି···ଚକ୍ରାନ୍ତ ହସ ।

ବୁକୁରେ ଅଜସ୍ର ଘୃଣାର ଭୁଜଙ୍ଗ ଅବିରତ ଫଣା ଟେକୁଛି । ଆଘାତ କରୁଛି !

ତନୁଜା ଅନ୍ତରର ସବୁଠାରୁ ନରମ କୋମଳ ସ୍ଥାନକୁ କ୍ଷତବିକ୍ଷତ କରୁଛି ବାରବାର । ସେ ରକ୍ତକ୍ଷରଣ ଫୁଟି ଉଠିଛି ଅଧରର ସ୍ତରେ ସ୍ତରେ···ଚକ୍ରାନ୍ତ ହସ ଅଭିନୟ ?

ତେବେ ଏମିତି ନିଚ୍ଛକ ଅଭିନୟ··· ଅଭିନୟ ତ ବେଶ୍ କରି ପାରିଥାନ୍ତା ସିଏ !!

ଜୀବନ, ଶ୍ରେଷ୍ଠ ଏକ ପରସର । କେତେ ବା ଦୂରନ୍ତ···

ତେବେ, ତେବେ ???

କାହିଁକି···କାହିଁକି ସେଦିନ ଉଦ୍ଭଫଣା ସର୍ପିଣୀ ପରି ସେ ଘୋର ଲଘୁ ଅନ୍ଧାରରେ ଗୋଡ଼ କାଢ଼ି ବାହାର ଆସିଲା ନାରୀର ସର୍ବଶ୍ରେଷ୍ଠ ଆଶ୍ରୟ ପୀଠ ସ୍ୱାମୀ ଗୃହରୁ ? କାହାର ବାରଣ ନ ଶୁଣି ?

କାହିଁକି ହେଲା ସ୍ଥାନଚ୍ୟୁତ ?

ସେ କଣ ଜାଣିନି ଏଇ ଚରମ ସତ୍ୟକୁ ?

ସେହି ସ୍ଥାନରୁ ଅପସରି ଗଲେ···

ଖାଲି ମହାଶୂନ୍ୟରେ ଦୋଦୁଲ୍ୟମାନ ଅବସ୍ଥା ପେଣ୍ଡୁଲମ୍ ପରି । ସ୍ଥିତିବିହୀନ ଶୂନ୍ୟ ସନ୍ତରଣ !!

ସ୍ୱାମୀ ଘରେ ଯା'ର ସୁଖ ନାହିଁ, ତା ପାଇଁ ପୃଥିବୀରେ ସୁଖ ନାହିଁ । ଏକଥା ପିଲାଦିନୁ ପଦେ ଶୁଣି ଆସିଛି ସିଏ ବୋଉ ତୁଣ୍ଡରୁ ; ତେବେ ?

ତେବେ ? ତେବେ ?

ଟିକେ ଦେଖ ଭଲ, ଟିକିଏ ନିରୀକ୍ଷଣ କରି ଦେଖ ଏ ପୁରୁଷ ସମାଜ···

ତନୁଜାର ଅନ୍ତରର ନିଭୃତ ଦରଜାଟା କଣ କେହି ଖୋଲି ପାରିବ ନାହିଁ ?

ସାହିତ୍ୟସେବୀ, କବି, ଭାବୁକ, ବୁଦ୍ଧିଜୀବୀ !

ନା—ନା—ନା—ଏ ଦରଜାର ବ୍ୟବସ୍ଥା ହିଁ କେଇ ଦେ ଲେ ତନୁଜା ! ହିଁ କେଇ ଦେ ବସ୍ତୁ ଭିତରେ ଘୋର ଅନ୍ଧକାରରେ ! ତା ହେଲେ ସତ ହେଉ ଖାଲି ଡାକ୍ତରଙ୍କ ମୁଖର ପଦେ କଥା ।

ଏ ପାଗଳାମୀ···

ହଁ ପାଗଳ ହୋଇଯାଇଛନ୍ତି ଶ୍ରୀମତୀ ଦାସ···

ସକ୍ ଚିକିତ୍ସା ଚାଲିବ । ଫଳାଫଳ ? କିଏ କହିପାରିବ ଆଜ୍ଞା ? ଭାଗ୍ୟ !

ହଁ ସେ ବି କହିଲେ ସେହି କଥା । ଶେଷଅସ୍ତ୍ର···ଶେଷ ଆଶ୍ରୟ ଆଜ୍ଞା ନିୟତି ! ନିୟତି !

ବାଃ—ଡାକ୍ତର ବି କହିଲେ ନିୟତି ?

ନିୟତି—

ହଁ ସେଦିନ ଏଇ ଉତ୍ତର ଦେଇଥିଲେ ନନା, ଯେତେବେଳେ ହୃଦୟର ଦୁର୍ବହ ଦୁଃଖର ପ୍ଳାବନରେ ଶାଳୀନତା ହରାଇ ବସିଥିଲା ତନୁଜା ! ନିଜର କ୍ଳାନ୍ତ ଶ୍ରାନ୍ତ ଶରୀରଟାକୁ ଟାଣି ନେଇ ସେଇ ବିରାଟ ପ୍ରାସାଦ ସମ୍ମୁଖରେ ଛିଟିକି ପଡ଼ିଥିଲା ସେ ।··

ହଁ ପ୍ରାସାଦ—ପ୍ରାସାଦ ହିଁ କହିବ ସେ ! କେତେ ଅପରିଚିତ ସେଇ ଚିରପରିଚିତ ଘର । ଯେଉଁଠି ସେ ୧୮ ବର୍ଷ ବଢ଼ି ଆସିଛି··କେତେ ଧୂଆଁଳିଆ, କେତେ ଶୂନ୍ୟ··· ଆମନ୍ତ୍ରଣ କରୁନାହିଁ, କରୁଛି ପ୍ରତ୍ୟାଖ୍ୟାନ ! କାହିଁକି ? ଖାଲି କଣ ଆଖିର ଅବିରଳ ଅଶ୍ରୁରେ ଜାଲୁକା ଲୁଆ ଦିଶୁଛି । ଭାବି ପାରୁନି, ଭାବିପାରୁନି ତନୁଜା !

ଏଇ ଘରେ ସିଏ ସୁଦୀର୍ଘ ବର୍ଷ ଦିନୁ ବଢ଼ି ଆସିଥିଲା ।

ଏଇ ପାଖର ଶ୍ରେଷ୍ଠ ଘରଟି । ଏଇଠି ଥିଲା ତାର ଘୁଏଁଲନ୍ । ଏଇଠି ଥିଲା ତାର ଡବଲା । ଏଇଠି ରଜନୀଗନ୍ଧା ଫୁଲ, ଯେଉଁ ମାଳତୀ ଲତାଟା ଏତେ ଚମତ୍କାର ଭାବରେ ମାଡ଼ିଛି, ସେଇଟା ଡଲୁଜା ନିଜେ ହାତରେ ଲଗେଇଥିଲା··· ନିଜ ହାତରେ ! ଆଉ ପିଜୁଳି ଗଛଟା ସିଏ ତ ପୋତିଥିଲା । ମଧୁମାଳତୀ ? ସବୁ ତ ରହିଲା । କେହି ତ ତାଡ଼ିଦେଲେ ନାହିଁ ? କେହି ତ ଓପାଡ଼ି ଫିଙ୍ଗିଦେଲେ ନାହିଁ··· ?

ଆଉ ଡଲୁଜାକୁ ରଖିପାରିଲେ ନାହିଁ କେହି ।

ଡଲୁଜାକୁ କାହିଁକି ଫିଙ୍ଗିଦେଲେ ସେମାନେ ଘରର ଯାବତୀୟ ଆବର୍ଜନା ପରି ।

ପରିତ୍ୟକ୍ତ ଅଦରକାରୀ ଫରିବା ଷ୍ଟେପାପରି ଟୁଣ୍ଡୁଣିରେ ଯାଉଛି ସ୍ୱପ୍ନାକାଙ୍ଗର ଡଷ୍ଟବିନ୍‌ରେ ସେମାନେ ଫିଙ୍ଗିଦେଲେ ?

ଆହା ଫିଙ୍ଗି ଦେଇ ପାରିଲେ ?

ହାତ ତାଙ୍କର ଲେ ?

ଥରିଲା ନା ନିନାଙ୍କ ହାତ ?

ସିଏ ପରା ବେଶୀ ଭଲ ପାଉଥିଲେ ଡଲୁଜାକୁ !

ହଁ—ହଁ—ହଁ—ସେ କହିବ । ସେ ମୁହଁ ଖୋଲି କହିବ ଏଥର । ଏଇ ଡଷ୍ଟବିନ୍ ଛଡ଼ା ଆଉ କିଛି ନୁହେଁ ।

କୁତ୍ସିତ, ବୀଭତ୍ସ, ଅସହ୍ୟ ··

ଅଶ୍ଳୀଳ ଭାଷା, ଅଶୋଭନୀୟତାର ମୂର୍ତ୍ତିମନ୍ତ ପ୍ରତୀକ ତାର ସ୍ୱାମୀ । ଅମଣିଷ ! ଡଷ୍ଟବିନ୍ ତ ! ଆଉ ଡଷ୍ଟବିନ୍‌ର ଅଳିଆ ଯଦି ଅଗ୍ନିକ ବତାସରେ ଉଡ଼ି ଆସି ଘରର ମୋଜାଇକ୍ ଚଟାଣକୁ ଅସୁନ୍ଦର କରିଦିଏ ?

ତେବେ ?

ତେବେ ଶିହରି ଉଠିବେନି କି ଘରକ ???

ଭ୍ରୂକୁଞ୍ଚିତ କରିବେନି କି ସଭ୍ୟ ???

ଝାଡ଼ୁ ଧରି ଆଗେଇ ଆସିବେନି କି ପରିଷ୍କାର କରିବାକୁ ?

ସେ ଅବାଞ୍ଛିତ ଅଳିଆ ଆବର୍ଜନାରୁ ଘରକୁ ରକ୍ଷା କରିବାକୁ ବନ୍ଦ କରିଦେବେନି କି ଝିଡ଼କି କବାଟ ?

ଶୋଭନୀୟ, ସୁନ୍ଦର, ରୁଚିକର ପରିବେଶକୁ ରକ୍ଷା କରିବାକୁ ହେଲେ ଏଇଟା ଏକାନ୍ତ ସ୍ୱାଭାବିକ ନିୟମ !

ତେବେ ଡଲୁଜା ଏମିତି ଚମକି ପଡ଼ିଲା କାହିଁକି ?

ଆଘାତ ପାଇଲା କାହିଁକି ?

ହଁ—ତନୁଜା ଚମକି ପଡ଼ିଲା । ଅଦ୍ଭୁତ ଭାବେ କ୍ଲାନ୍ତ ହୋଇ ପଡ଼ିଥିଲା ସିଏ ସେ ଦିନ ! ଛାତି ଭିତରଟା ଖାଁ ଖାଁ ହୋଇ ହାହାକାର କରି ଉଠିଲା । ଘନ ଘନ ପଡ଼ିଲା ଛାତିର ସବୁତକ ପିଞ୍ଜରା ହାଡ଼...

ବାହାରୁ ଆସୁଥିଲେ ଭାଇ !
ଡ୍ରାଇଭର ଗାଡ଼ି କାଟି ସାରିଛି ।
"ତୁ...ହଠାତ୍ ! କଣ ଏକଲା ?"

କି ଅସମ୍ଭବ ଅବିଶ୍ୱାସର ଭାଷା ! ଭ୍ରୂକୁଞ୍ଚନଟା ଦୃଷ୍ଟିକଟୁ । ସିଏ ଥିଲା ଏ ଘରର ପରମ ଆକାଂକ୍ଷିତା, ସିଏ ଆଜି ଅନାଦରକାଙ୍କ୍ଷୀ !

ହଁ—ଭାଇ ଶୁଣିଛନ୍ତି, ତନୁଜାର ପାରିବାରିକ ଅଶାନ୍ତିର ଧୂଆଁ ଭାସି ଆସିଛି ତାଙ୍କ ପାଖକୁ ।

ତାଙ୍କର ଦୋଷ କଣ ?
"ତମେ ! ତମେ ଏମିତି ହଠାତ୍ ଯେ...ଅବେଳରେ...

ଆଉ କେହି ଆସିନାହାନ୍ତି ?" ଭାଉଜଙ୍କ କଣ୍ଠସ୍ୱରରେ ଉପେକ୍ଷା । ଭାଉଜ ବି ବାହାରୁଥିଲେ । ହାତରେ ଭ୍ୟାନିଟି ବ୍ୟାଗ୍ । ପ୍ରଶ୍ନରେ କେତେ ସନ୍ଦେହ...କେତେ ଅବଜ୍ଞା...

ଦୁଃସହ ବ୍ୟଥାର ଶକ୍ତି କ'ଣ ପ୍ରଚଣ୍ଡ ବତାସ ପରି ନିମିଷକରେ ଉଡ଼େଇ ଦିଏ...ଫିଙ୍ଗି ଦିଏ ???

ନିଜକୁ ଫିଙ୍ଗି ଦେଇଥିଲା ପରମପୂଜନୀୟ ନନାଙ୍କ ପାଦ ତଳେ ତନୁଜା, ନନାଙ୍କର ସେ ଏକମାତ୍ର କନ୍ୟା ନୁହେଁ ମ ! ଆଉ ପାଞ୍ଚୋଟି ଝିଅଙ୍କର ବି ସେ ଜନକ...

ତେବେ ଅଲିଆ ଗଦା କ'ଣ କେବଳ ତନୁଜା ?

ସିଏ ବିଶ୍ୱବିଦ୍ୟାଳୟରେ ଉଚ୍ଚ ସ୍ଥାନ ରଖି ପାସ୍ କରିଥିଲା, ଯାହାର ଭାଓଲିନ୍ ବାଦନରେ ଥିଲା ଚମତ୍କାର ହାତ, ଆଉ ସବୁଠାରୁ ହାସ୍ୟାସ୍ପଦ, ଦମ୍ଭନୀୟ କଥାଟା ଯେ—

ଆହା ଥାଉ ମ...
ସେ ପୁଣି କୁଆଁଡ଼େ ସବୁ ଭଉଣୀମାନଙ୍କ ମଧ୍ୟରେ ଭାରି ସୁନ୍ଦରୀ !!!

କଣ ନ ଥିଲା ? ପିତାଙ୍କର ପ୍ରତିପତ୍ତି, ଅର୍ଥ, ସମ୍ମାନ ଉଚ୍ଚ ସରକାରୀ ଚାକରୀ ?

ତେବେ ? ତେବେ ?

କି ଲଜ୍ଜା ଏ ··

ବିବାହର ଦୀର୍ଘକାଳ ପରେ ସନ୍ତାନର ଜନନୀ ତନୁଜା ପୁଣି ପ୍ରଶ୍ନ କରୁଛି, ଏଇ ପ୍ରଶ୍ନ···ପୁଣି ତାର ନନାଙ୍କୁ, ଯାହାଙ୍କୁ ସେ ଜୀବନରେ ମୁହଁ ଟେକି କେବେ ହେଲେ କଥା କହି ନାହିଁ !

କହିବେନି; କହିବେନି ଲୋକେ ତାକୁ ପାଗଳୀ ବୋଲି ???

କେତେ ବର୍ଷର ଜମାଟ ବନ୍ଧା କୋହ, ସ୍ତୂପୀକୃତ ଯନ୍ତ୍ରଣା ।

ସୁପ୍ତ ଆଗ୍ନେୟଗିରିରୁ କ'ଣ ଅଗ୍ନି କ୍ଷରଣ ହୁଏ ନାହିଁ ?

ଅଗ୍ନେୟ ଭାବେ ବହେ ନାହିଁ କ'ଣ ଉତ୍ତପ୍ତ ତରଳ ଲାଭା ??

ସେ ଲାଭା ସ୍ରୋତ ଦେଖି ସମସ୍ତେ ଚକିତ ହୁଅନ୍ତି···

ଉଦ୍‌ବିଗ୍ନ ହୁଅନ୍ତି ।

ଅଶୁଭ ସଙ୍କେତ !

ହଁ ଉଦ୍‌ବିଗ୍ନ ହେଲେ ନନା···

ଚଷମା ଟିକେ ନାଚେଇ ଦେଖିଲେ···

ତାଙ୍କର ଝିଅ ତନୁଜା !

ନିଜର ଏକାନ୍ତ ଶୀର୍ଣ୍ଣ ଅପରୂପ ଲାବଣ୍ୟଭରା ଶରୀରଟାକୁ ବୃଦ୍ଧ ପିତାଙ୍କ ପଦତଳେ ବିଛେଇ ଦେଇ କେତେ ଉତ୍ତାପ ଦେଇ ସେ ପ୍ରଶ୍ନ କରିଥିଲା— କାହିଁକି ? କାହିଁକି ? କାହିଁକି ମୁଁ ଏମିତି ଅସହାୟ ଭାବରେ ହାରିଗଲି ନନା ?

ମୋର ସନ୍ତାନ ମଧ୍ୟରେ ପୁନର୍ଜନ୍ମ ହେଲି ନାହିଁ କାହିଁକି ?

ମୋର ସନ୍ତାନ ସ୍ନେହରେ କଣ ତ୍ରୁଟି ଥିଲା ? ଆରୁଣୀକୁ ବାନ୍ଧିପାରିଲି ନାହିଁ ନନା—ମୁଁ ହାରିଗଲି ।

ପରାଜୟର ଗ୍ଳାନିରେ କ୍ଷତ ବିକ୍ଷତ କନ୍ୟାକୁ କ'ଣ ଆଜି ନୂଆ କରି ଦେଖିଲେ ପୂଜ୍ୟପାଦ ପିତା ??

ଦେଖି ନାହାନ୍ତି···ଦେଖି ନାହାନ୍ତି ତାର ସାଧନା, ଅକ୍ଳାନ୍ତ ତପସ୍ୟା !

ବହୁବାର ଯାଇଛନ୍ତି ସେ ତନୁଜା ଘରକୁ ।

"ଏଇଟା ପୂଜାଘର, ଆରୁଣୀର ପଢ଼ାଘର; ନନା କୋଠା ଖୋଲି ଆସ ।"

ତପସ୍ୱିନୀ ମୂର୍ତ୍ତି, ତାଙ୍କରି ଝିଅ ତନୁଜା ! ଏତେ କୋମଳ ଏତେ ପବିତ୍ରତା···ତନୁଜା ସତ୍ୟକୁ ମାନି ନେଇଛି । ପ୍ରଭୁଙ୍କୁ ଆଶ୍ରା କରିଛି ।

ପାଦତଳେ ମଥା ଲଗାଇ ପ୍ରଣାମ କଲି ଆରୁଣୀ ପୂଜ୍ୟପାଦ ମାତା-ମହଙ୍କୁ…

ହଁ; ଆରୁଣୀ ତନୁଜାର ସ୍ୱପ୍ନ…

ଆରୁଣୀ ତାର କାମନା । ନିଜ ଭିତରର ସମସ୍ତ ସ୍ୱପ୍ନକୁ ନିଗାଡ଼ି ନିଜର ସମସ୍ତ ଶକ୍ତିକୁ ନିଃଶେଷ କରି ଦେବ ମନ୍ଦିର ଗଢ଼ିବାରେ ଲାଗିଥିଲି ତନୁଜା…

ସେ ମନ୍ଦିରରେ ଆରୁଣୀ…

ତାର ମାନସପୁତ୍ର ହେଉ ଆରୁଣୀ…ତାର ସନ୍ତାନ ଆରୁଣୀ ।

(ଆହା, ଘରେ ପିତାକୁ ସେ ଦିନେ ହେଲେ ଶ୍ରଦ୍ଧା କରିପାରି ନାହିଁ; କି ଦୁଃସହ ଜ୍ୱାଳା ତା'ର)

ତେବେ, ତେବେ ସେହି ସନ୍ତାନର ଶ୍ରଦ୍ଧା କେମିତି ପାଇଥାନ୍ତା ତନୁଜା ??

କିନ୍ତୁ…କାହିଁକି ??

କାହିଁକି ଦରପୋଡ଼ା ସିଗାରେଟ୍‌ର କିଯ୍‌ଦଂଶ, ଅଶ୍ଳୀଳ ସିନେମା ଗୀତରୁ ଦୁଇପଦ…ଆଚରଣରେ କିଶୋରସୁଲଭ ଉଚ୍ଛୃଙ୍ଖଳତା; ଆରୁଣୀ ନାମର ବ୍ୟତିକ୍ରମ…ଗୁରୁନିନ୍ଦା । ଏଗୁଡ଼ାକ ଯେ ଏ ଯୁଗକୁ ଚିହ୍ନିତ କରେ, ଏତେ ସାଧାରଣ କଥାରେ ଏତେ ବେଶୀ ଧକ୍କା ପଡ଼ିଲି କାହିଁକି ତନୁଜା ?

ଉଚ୍ଛୃଙ୍ଖଳ ପିତାର ପ୍ରତିବିମ୍ବ ଦେଖିଲି ସେ କିଶୋର ପୁତ୍ରର ମୁଖମଣ୍ଡଳରେ, ଆଚରଣରେ; ଭୟରେ ଶିହରି ଉଠିଲି ତନୁଜା ।

କ୍ଷମା କରିଥାନ୍ତା ସେ, ସେ ତ ମାଆ…

କିନ୍ତୁ ପାରିଲିନି !

କ୍ଷମା ଶବ୍ଦର ଅପରିଚିତା କାହିଁକି ହୋଇ ଉଠିଲି ତନୁଜା ଯେ ପ୍ରତ୍ୟହ ଗୀତା ପାଠ କରେ ?

ହୃଦୟରେ ସ୍ତୁପୀକୃତ କ୍ରୋଧ, ଅପାରଗତାର ଗ୍ଲାନି, ଆତ୍ମଦହନର ଜ୍ୱାଳା !

ତନୁଜାର କେନ୍ଦ୍ରବିନ୍ଦୁ ଦୋହଲିବାକୁ ଲାଗିଲା । ବ୍ୟର୍ଥ ପ୍ରୟାସ କରିଥିଲି ତନୁଜା । ତାର ଶିକ୍ଷା ସାଧନା ବ୍ୟର୍ଥ…

ଆରୁଣୀର ଆଚରଣରେ ତାର ସ୍ୱରକେନ୍ଦ୍ର ବିଚଳିତ ହେଲା !

ପାରିଲି କି ସହି ସେ ଉତ୍କଟ ଗରଳର ଜ୍ୱାଳା !

ନୀଳବିଷକୁ ପାନ କରିବାର ଶକ୍ତି ସେ ପାଇବ କେଉଁଠୁ ?

ତନୁଜାର ସାଧନାର ଅଭାବ । ସେ ନୀଳକଣ୍ଠ ହୋଇ ପାରିଲି ନାହିଁ । ସେ ହାରିଗଲି । ଗୀତାପାଠର ମୂଲ୍ୟ ରହିଲା ନାହିଁ । ସେ କ୍ରୋଧରେ ଭାଙ୍ଗି ପଡ଼ିଲି ।

ପ୍ରଭୁ ! ତମେ କହ, ତମେ କହ ଆତ୍ମପ୍ରତ୍ୟୟ, ବିଶ୍ୱାସ, ସେ ବସ୍ତୁ କାହିଁ ପାଇବ ?

ସେ ବସ୍ତୁର ପ୍ରାପ୍ତି କ'ଣ ସମ୍ଭବ ?

ଅଶୋଭନୀୟତା ପ୍ରତି କାହିଁକି ଏ ଘୃଣା ??

ଅସହ୍ୟ ଘୃଣା, କୁତ୍ସିତ ଘୃଣା, ବିଭତ୍ସ ସର୍ପ ପରି ଏହି ଘୃଣା ଅନୁକ୍ଷଣ ବିଷାକ୍ତ କରୁଛି ତନୁଜାର ସୁନ୍ଦର ପବିତ୍ର ତନୁକୁ ··

ନଜର ଅଧରରୁ ନିସୃତ ବାକ୍ୟକୁ କଣ ନଜେ ଶୁଣି ବିଶ୍ୱାସ କରି ପାରିଥିଲା ତନୁଜା ?

ଛି—ତନୁଜା ଏତେ ନୀଚ !

ସର୍ପିଣୀ ପରି ଅନ୍ଧକାରରେ ବୁକୁ ଚିରି ସେ ଉଚ୍ଛୁଳ ଝଡ଼ର ପ୍ଲାବନରେ ସେ ଛୁଟି ଆସିଲା । ସେ ଛୁଟିକି ପଡ଼ିଲା ଏଇଠି ··

ହଁ, ଛୁଟିକି ପଡ଼ିଲା ତାର ପୁଜ୍ୟପାଦ ପିତୃଦେବଙ୍କ ପାଦତଳେ !

କିନ୍ତୁ ··

କ'ଣ ଶୁଣିଲା ସେ ?

ସେହି ଉତ୍ତର—ସେହି ଚିରାଚରିତ ପୁରୁଣା ଉତ୍ତର ··ଚନ୍ଦ୍ରଲୋକରେ ମାନବର ପଦକ୍ଷେପଣ ପରେ ମଧ୍ୟ ସେହି ପୁରୁଣା ଉକ୍ତି ।

ମନୁଷ୍ୟର ଅକ୍ଷମତା···

ନିୟତି···ନିୟତି !!!

ଆଃ— ପ୍ରତିକାର କାହିଁ ?

ଭାଗ୍ୟକୁ ମାନି ନେବାକୁ ପଡ଼ିବ !

× × ×

ହାଃ—ହାଃ—ହାଃ—ହାଃ—ହାଃ—ହାଃ— ତମେ ଜାଣିନ, ଚିହ୍ନିନ ତାକୁ ?

ତା ନାଆଁ ପରା ନିୟତି ।

ସେ ସବୁଠି ତ ଅଛି । କଟକରେ ବି ଥିଲା !

ତମେ ପରା କଟକରେ ଥିଲ । ଦେଖିନ ତାକୁ ? ସେ ଛପି ଛପି ସବୁ ଦେଖେ । ସବୁ କରେ । ତାକୁ ଅନ୍ୟଥା କରିବ କିଏ ତାକୁର ?

ମିଛ—ସବୁ ମିଛ ।

ହିଁ—ହିଁ—ହିଁ—ମୁଠା ମୁଠା ହୃଦରେ ଫୋଷ୍ଟି ହେଇ ଯାଇଛି ତାର ପରି ନାଗଫେଣା କଣ୍ଟାପରି ଦେହର ଶିରା ପ୍ରଶିରାରେ···

ଜଳ୍ପର ଦାସ ମୋତେ ଯୋଗିଣୀର ଇତିହାସ ଦେଖାଇଲେ ।

ପ୍ରଶ୍ନ କଲି, "ଏମିତି କେତେ ଦିନ ହେଲା ?"

"ଦେଢ଼ ବର୍ଷରୁ ଅଧିକ ହେଲାଣି । ପ୍ରଥମେ ମୂକ ଥିଲେ । ତାପରେ ମୁଖର ହୋଇଛନ୍ତି ।"

ସ୍ମୃତିର ମନ୍ଦାକିନୀ ପାଟଳ ଶାରଦ ।

ସେହି ବସନ୍ତ ହନ୍ତାଟା ପାରି ହୋଇ ଆମେ ବାହାରକୁ ଆସୁଥିଲୁ । ପଛରୁ ସେଇ ଏକଦା ସଙ୍ଗୀତ ଶିଳ୍ପୀ ତନୁଜା କଣ୍ଠରୁ ଖସି ଆସୁଥିଲା ହସର ଜଳ ତରଙ୍ଗ......

ହସ—ଟିକି ଟିକି ହସର ଢେଉ । ମୁଠା ମୁଠା ହସର ଫେଣ । ହସର ଢେଉ ଗୁଡ଼ାକ ପାଣିଫୋଟକା ପରି ମିଳେଇ ଯାଉଥିଲା ।

ହଠାତ୍ କହି ଉଠିଲେ ଡାକ୍ତର ନୀରବତା ଭଙ୍ଗ କରି...

ଏହାପରେ ସେ ଭାଜି ପଡ଼ିବ କାନ୍ଦଣାରେ । ମର୍ମନ୍ତୁଦ ସେ କାନ୍ଦଣା ଅସହ୍ୟ !

"ଏମିତି ଆଉ କେତେ ଦିନ ପରେ ସୁସ୍ଥ ହେବ ?"

ହସିଲେ ଡାକ୍ତର ! କରୁଣ ହସ । "ଚକାଁସ୍ରୋତ ଗୁଳିଛ । କିଏ କହିବ ? ନିଯ୍ୟତି..."



● ସ୍ୱାପକାନ୍ତ

ବମ୍ବେ ଡାଇଂର ଅଜସ୍ର ଫୁଲଭରା ଚମତ୍କାର ସମୁଦ୍ର ରଙ୍ଗର ଓଡ଼ା ବେଡ୍‌ସିଟ୍‌ଟାକୁ ଦୁଇହାତରେ ଝାଡ଼ି ତାରରେ ଶୁଖାଉଥିଲା ସୁରମା, ବେଶ୍ ପରିପାଟୀ କରି !

ଝୋପା ଝୋପା ଝାଳ ଝରି ପଡ଼ୁଛି । ଅଳିଆ ବାଳ କେଇଟା ଆଖି ଉପରେ ଲହଖି ଖେଳୁଛି ।

ଭାରି ସୁନ୍ଦର ଲାଗେ ଏମିତି କର୍ମତତ୍ପର ସୁରମାର ଲାବଣ୍ୟଭରା ମୁହଁ ! ଅଫିସକୁ ଯିବାକୁ ତର ତର ହେଉ ହେଉ ପ୍ରବୀର ପାହାଚ ତଳକୁ ଅଜାଣତାରେ ଓହ୍ଲେଇ ଆସିଲା ! ସଦ୍ୟ ଇସ୍ତ୍ରୀକରା ସୁଟ୍, ଟାଇ, ଏଥିରେ ବି ସୁରମାର କର୍ମତତ୍ପର ହାତର ସ୍ପର୍ଶ···

ସୁରମା, ପ୍ରବୀରର ଅହଂକାର···

ସୁରମା ପ୍ରବୀରର ଗୌରବ ! ସୁରମା ପ୍ରବୀରର ଜୀବନକୁ ସମ୍ପୂର୍ଣ୍ଣ କରି ପାରିଛି । କେତେ ଚମତ୍କାର···କେତେ ଲୋଭନୀୟ !

ଅଗଣା ମଝିରେ ସର୍ଫ ବାଲ୍‌ଟି ।

"ଆରେ—ଆରେ" ସୁରମା ନଇଁ ପଡ଼ୁଛି ବାଲ୍‌ଟି ପାଖରେ ।

ସର୍ଫ ଫେଣ ଲାଗିଛି ତାର ଗାଲରେ । ଖୁବ୍ ଯତ୍ନରେ ସୁରମା ହାତବୁଣା ସୁରଭିତ ଫୁଲପକା ରୁମାଲରେ ତା ଗାଲରୁ ଫେଣତକ ପୋଛି ଦେଲା ପ୍ରବୀର !

ପ୍ରବୀରର ଆଖିର ତାରାରେ ହଠାତ୍ ଖୁସିର ଝଲକ !

ଓଠରେ ବି ପରିତୃପ୍ତିର ହସ !

ଇସ୍ କି ସଫା ଦିଶୁଛି ଘରଦ୍ୱାରଟା, ଆଉ ସିଏ ଦିଶୁଛି ସିଏ ବି କେଡ଼େ ସଫା ! କେଡ଼େ ପବିତ୍ର ! ଆଉ ଖରାଆସ···ଖରାଆସ ଲୋଭନୀୟ ! କିନ୍ତୁ କେମିତି ଗ୍ରାଜୁଏଟ ହୋଇ Home Science ରେ ଏତେ ଦଖଲ କେମିତି କଲ ସତେ ?"

"କେଜାଣି"···ମିଟିମିଟି ହସିଲା ସୁରମା···

"ଦେବା କି ? ସର୍ଫର ଚମତ୍କାର ବିଜ୍ଞାପନଟାଏ ହେବ । ଭାରି ବଢ଼ିଆ ହେବ । ମିଳିବ କିଛି ପଇସା, କୁହ"···

"ଆଃ, ରହନା ଟିକେ"

ମୁହଁ ଉପରେ ଅଳସ ବାଳକୁ ପରମ ସ୍ନେହରେ ଆଡ଼େଇ ଦେଉ ଦେଉ ଗୁଣୁ ଗୁଣୁ କରି ପ୍ରବୀର କହିଲ, "ସୁରମା ତୁମେ ସତେ କ'ଣ ? ବାସ୍ତବ, ବାସ୍ତବ ସୁନ୍ଦର ମତେ !"

ସ୍ୱାମୀର ଦୃଷ୍ଟି ସ୍ପର୍ଶରେ ବିଚଳିତ ହେଲ ସୁରମା । ଛଦ୍ମ ଗାମ୍ଭୀର୍ଯ୍ୟ ଦେଖାଇ ହଠାତ୍ ପ୍ରବୀରର ଘଡ଼ିବନ୍ଧା ହାତଟାକୁ ଟାଣି ନେଇ ତା ଆଖି ଆଗରେ ଥାଡ଼ି ଦେଲ ।

"ହେଲ, ବାବୁ ହେଲ । ଦେଖିଲ ଟିକେ ଘଣ୍ଟା ! ହୁଁ, ଇଞ୍ଜିନିୟରବାବୁ, ଆଚ୍ଛା ତୁମର ଏ କବିତ୍ୱଟା ଇଞ୍ଜିନିୟର ବିଦ୍ୟା ଭିତରକୁ କେମିତି ଆସି ଆସ୍ଥାନ ଜମାଇଲ ଶୁଣେ ? ମୁଁ ବି ବୁଝି ପାରୁନ ! କ'ଣ ଘଣ୍ଟାକୁ ଦେଖୁଛ ନା ନାହିଁ ? ତେଣେ ପାଗ ବାନ୍ଧୁ ବାନ୍ଧୁ..."

"ଉହୁଁ, ତମକୁ ଦେଖୁଛୁ ଯେ !" ମୁଗ୍ଧ ନୟନରେ କାମନା ଭରିଲ ଛଟା ହସ, ଆବେଗବୋଳା ହସରେ ଉଜ୍ଜ୍ୱଳ ପ୍ରଶାନ୍ତ ମୁଖ ।

ପ୍ରବୀର ଗ୍ଲଲ ଗଲ ..
ପୁଣି ସ୍କୁଟର ଛୁଟିବାର ଶବ୍ଦ ।
ହଁ ପ୍ରବୀର ଗ୍ଲଲଗଲଣି !

ବାଆଁ ହାତରେ ମୁହଁରୁ ଝାଳ ପୋଛିଲ ସୁରମା !
ଝରା କ'ଣ ଏତେ ହେଲଣି ?
କଣ୍ଠା ପର ଫେଡ଼ ହୋଇ ଯାଉଛି କାହିଁକି ଝରାଗୁଡ଼ାକ ?
ସୂର୍ଯ୍ୟକିରଣ କ'ଣ ଖର ପର ?
ଛଟପଟ ହେଲ ସୁରମା ।
ପୁଣି ଉପରକୁ ଗ୍ଲହିଁଲ । କେମିତି ଗୋଟାଏ ଅସ୍ୱସ୍ତି ଘବ...
ସତ୍ ସତ୍ ସତ୍—
ଟିକିପିଟିଟା କଣ୍ଠରେ ଗ୍ଲଲୁଛି ମ !
ସାମ୍ନା କାନ୍ଥ ଘ ଛାତ କୋଣରେ ଏଣ୍ଡୁଅଟାଏ ଉପରକୁ ଉଠୁଛି ।

ସୁରମାର ଲୁହାକର୍ଣ୍ଣ ସରନ ! ଭୟଙ୍କର ଶୁନ୍‌ଶାନ୍, ଚୁପ୍‌ଗ୍ଲପ୍ ଲାଗୁଛି ଗ୍ଲରଆଡ଼ ' ଗ୍ରୀଷ୍ମବେଳର ନିର୍ଜନ ମଧ୍ୟାହ୍ନ !

ଲକ୍ ଲକ୍ ଟଣ୍ଡା ଭୟଗୁଡାକ, ଅତୀତଗୁଡାକ ଏମିତି ନିଗ୍ଲଟିଆ ବେଳେ ମାଡ଼ି ଆସନ୍ତି । ନିସ୍ତବ୍ଧ...ନିସ୍ତବ୍ଧ ! ବାଳକୁଣ୍ଡ୍ ନିସ୍ତବ୍ଧ...

ଗୋଟାଏ ଘନ ଟଣ୍ଡା ଭୟ ସୁରମାକୁ ହଠାତ୍ ମାଡ଼ିବସିଲ ପରି ଲାଗିଲ !

ଅଭୂତ ଶୀତଳ ନିସ୍ତବ୍ଧ ଆବେଶ · ଯନ୍ତ୍ରଣା, ଆନନ୍ଦ, ଭୟମିଶ୍ରିତ ! ବେଡ଼ସିଟ୍‌ଟା ଆଜି ନ ଧୋଇଥିଲେ ଖୁବ୍ ଭଲ ହୋଇଥାନ୍ତା ! ହଁ ଖୁବ୍ ଭଲ ହୋଇଥାନ୍ତା !

ସୁରମା ଚୁପ୍‌ଚାପ ଠିଆ ହୋଇ ଓଦା ଚାଦରଟା ମୋଡ଼ିବାକୁ ଲାଗିଲା । କେହି ନାହିଁ ସେ ଏକା ! ଚା'ଟା କେଟ୍‌ଲରେ ଅଛି । କରିବ ଗରମ ଗ୍ୟାସ୍‌ଟା ଧରେଇ ? ପିଇବ କି ଚାହା ? ଶୁଣିବ ବିବିଧ ଭାରତୀ, ଲଗେଇବ ରେକର୍ଡ଼ ପ୍ଲେୟାର ।

ନା—ଥାଉ !

ପୁଣି ଫୋଡ଼ ହୋଇଗଲା କଣ୍ଟା, ହୃଦୟର ଏକାନ୍ତ ନରମ ଜାଗାରେ । ଆଜି ସକାଳର ଘଟଣା କେମିତି ଭୁଲିବ ସୁରମା ?

" ଆଃ ନିଦରୁ ଉଠୁ ଉଠୁ ହାତ ପାଖରେ ଚାହା···

ସୁମା—ତମ ହାତ ଚା'ଟା ନା ଭାରି ଚମତ୍କାର !

ସୁକେଶ ସେଦିନ ଖାଲି ତାରିଫ କରିଥିଲା ।

ବାହାର ଚାହା ଜମା ଖାଇ ପାରୁନି ଏ ଚାହା ଖାଇଲା ପରେ ଆଉ ! ସତେ ସୁମ ! କି ଚମତ୍କାର ରାନ୍ଧ ତୁମେ ! ସବୁଥିରେ ଭଲ ।

ମୁହଁରୁ ଅନାଗ୍ରା କୁଞ୍ଚୁକୁଞ୍ଚିଆ ବାଳକୁ ଆଡ଼େଇ ଦେଇ କଥା ପିଠିରେ କଥା କହି ହଠାତ୍ ପ୍ରୀତମର ମୁହଁ ବନ୍ଦ କରିଦେଲା ସୁରମା !

ହଉ···ଥାଉ, ଥାଉ ସେତିକି ! ଆଉ କପେ ପିଇବତ ! ହେଲା ଏବେ ଦେବି ! ଏତେ ତେଲ୍‌ଦିଆ କାହିଁକି ଶୁଣେ ?

ଉହୁଁ; ଏଥର ଆଉ ସାମ୍ନାକୁ ନୁହେଁ···ତଳକୁ···ଉହୁଁ ··ଏଇଯେ ହାତ ପାଖରେ ଚାହାମ ' ଦେଖୁଛି ! ହସିଲା ସୁରମା···

ସକାଳର କଥା । ମାତ୍ର ଅଢେଇ ଘଣ୍ଟା ତଳର କଥା !

କିନ୍ତୁ କାହିଁକି ? କାହିଁକି ଏ ଅଭୁତ ସୁନ୍ଦର ଛିକି ଛିକି ପ୍ରଶଂସାର ଲେଭଣିପ୍ତ ଡେଉଁଗୁଡ଼ାକ ଅଭିଷିକ୍ତ କରେ ନାହିଁ ନବବିବାହିତା ସୁରମାର ନିବିଡ଼ ମନକୁ ? ସୁରମା ତ ବିହ୍ୱଳ ହୋଇ ଯାଆନ୍ତା । କିନ୍ତୁ—ଏତେ ନିଶୂନ୍, ଏତେ ଶୂନଶାନ ଏତେ ଫାଙ୍କା ମନେ ହୁଏ କାହିଁକି ଏଇ ଦ୍ୱିପ୍ରହରଟା ?

ସେଇ ଖୁସିରେ ଉପୁଚି ଉଠିଥାନ୍ତା । ସ୍ୱାମୀର ଉଷ୍ମତ୍ୟକ୍ତ ଶଯ୍ୟା ଉପରେ ମୁହଁମାଡ଼ି ଶୋଇ ତକିଆରେ ଆପଣାର ଚିବୁକ ଭରା ଦେଇ ନୀଳ ରାଇଟିଂ ପ୍ୟାଡ଼ ଟାଣିଆଣି ହସଦିସ ଖୁସି ଭରା ମନରେ ଚିଠି ଲେଖନ୍ତା ; ଥାକ ଥାକ ଚିଠି ·· ଅସଜଡ଼ା ରାତିର କାହାଣୀ ନିଗାଡ଼ି ଦିଅନ୍ତା !

ସଙ୍ଗିନୀ ପାଖକୁ ଲେଖନ୍ତା—"ତୁମେ ଲୋ ! ବହୁତ୍ ଭ... ଲାଗୁଛି ଏଇ ଇଂଜିନିୟରର ବାବୁଙ୍କୁ ଲୋ ! ଏମିତି ଥାକଥାକ କଥା କମା ସଂକ୍ରାନ୍ତ ! ଗୁଣୁ ଗୁଣୁ ଗୀତ ଗାଇ ତୃପ୍ତିର ଫୁଲ ଫୁଟନ୍ତା, ବେଳ ଜଣା ପଡନ୍ତା ନାହିଁ ଜମାରୁ... ବହି ଯାଉଥାନ୍ତା ସମୟ, ସୁଖକର ବେଳା !

ସାବୁନ୍‌ରେ ମୁହଁ ଧୋଇ ଗୁଣୁ ଗୁଣୁ ଗୀତ ଗାଇ ଗାଇ ମଧୁର କଥାର ରୋମନ୍ଥନ କରି ହଠାତ୍ ଖୁସିରେ ସେ ଚୁଇଗମ୍ ଖାଉଥାନ୍ତା...

ସାଇତା କଥାର ଚୁଇଗମ୍...ଲୋଭନୀୟ କଥାର ସ୍ୱାଦ ! ଦର୍ପଣରେ ମୁହଁ ଦେଖି ଓଠଣୀକୁ ବାରବାର ସଜାଡ଼ି ନିଜକୁ ଦେଖି ନିଜେ କରି ହସିଥାନ୍ତା!... ଲାଜୁଆ ହସ, ଭରା ହସ, ପୂର୍ଣ୍ଣତାର ହସ...

କିନ୍ତୁ ..

ସୁରମା ଯେ ଏଇସବୁ ଶବ୍ଦର ଆସ୍ୱାଦ ପାଇ ପାରେ ନାହିଁ ।

ଦେବେନ୍‌ବାବୁ ପରି ତୃପ୍ତିପାଣ ନାହିଁ ପ୍ରଶଂସାକୁ—ତାର ସ୍ୱାମୀର କଥାକୁ ।

ଭୟଙ୍କର ଲାଗେ । ଡର ଲାଗେ—ଅପରାଧବୋଧରେ ଥରି ଉଠେ ସେ । କାଉଳୁ ବାଉଳୁ ଲାଗେ...

ମନେହୁଏ ଶବ୍ଦ ଗୁଡ଼ାକ କି ଭୟଙ୍କର, କି ବିଶ୍ୱାସଘାତକ ଅସ୍ତ୍ର ! ଏହି ଶବ୍ଦ ସମ୍ମୋହିତ ମଣିଷକୁ ପଥ ଭ୍ରଷ୍ଟ କରେ ! ଯନ୍ତ୍ରଣା ଦିଏ !

କଥା...ଥାକ ଥାକ ଖଣ୍ଡ ଖଣ୍ଡ ସଜଡ଼ା କଥା...ଶବ୍ଦ ଭଣ୍ଡାରର ବଗ୍ଗୁବଗ୍ଗ କେତେ ଶବ୍ଦର ଅନାବନା ଘଞ୍ଚ ଜଙ୍ଗଲ...

ଆଉ ତା ପରେ ???

ସେ ଜଙ୍ଗଲ ଭିତରୁ ହଠାତ୍ ମଣିଷଖିଆ ବାଘର ଝଲକିଲା ଚକ୍ ଚକ୍ ଆଖି !!

ସେଇ ସର୍ବସ୍ୱ ପୂର୍ଣ୍ଣାହୁତିର ଅଦ୍ଭୁତ ଆମନ୍ତ୍ରଣ...

ଆଉ, ଅସହାୟା ହରିଣୀର ମୁଗ୍ଧ ଆତ୍ମସମର୍ପଣ !

ଭଣ୍ଡାରି ଲୁଟ୍ ହୋଇଗଲା ବାର କି ବିଚିତ୍ର ଆନନ୍ଦ !!

ତାପରେ ?

ନାହିଁ—ନାହିଁ...

ଏଇ ପାଗଳ ସୁନ୍ଦର କଥାଗୁଡ଼ାକୁ ସୁରମାର ଭାରି ଭୟ ଯେ !!

ଏମାନେ ସୁରମାକୁ ବିଚଳିତ କରନ୍ତି, ଆତୁର କରନ୍ତି । ତୃପ୍ତିର ଫୁଆରାରେ ସିକ୍ତ କରି ଦେବେନାହିଁ କେବେ ଏମାନେ । ଏମାନେ କଣ ସର୍ପ ଫେଣ ପରି

ଧୋଇଦେବେନି ସୁରମାର ମନକୁ ? ସଫା ସୁନ୍ଦର ପରି ତା ମଇଳା ମନକୁ ଧୋବ କରି ଦେବନି ଏ ଶବ୍ଦସମୂହ ?

ସର୍ଫ ଫେଣ ଶୁଖିଯାଉଛି···

ସମସ୍ତ ଝଟରେ ଶୁଖିଯାଇଛି । ଖାଲି ମଳଚଆ ନାଲପାଣି !

ସୁନ୍ଦର ସୁନ୍ଦରର ସବୁ ଦାଗକୁ ସବୁ ସ୍ୱାକ୍ଷରକୁ ଛିଦ୍ରରେ ଗୃପିଧରି କେତେ ନଗ୍ନ ବକଲାଙ୍ଗ ଦିଶୁଛି ଏଇ ମଇଳା ସର୍ଫ ପାଣି ।

ଏମିତି କ'ଣ ସବୁ ଧୋଇଦେବନି ଶବ୍ଦାବଳୀ, ଲୋଭନୀୟ ଶବ୍ଦାବଳୀ, ଉଦ୍ଧୃତ—ଭୟାବହ ବିଶ୍ୱାସଘାତକ ଅସ୍ତ୍ର ଏ ଶବ୍ଦ ??

ତା ସାଜିଲ ତାହ୍‌ସିରାକୁ ଚେନା ଚେନା କରି କାଟିଦେବ···?

ତା ଗୃଳକୁ ଓଲଟିଦେବ··· ।

ତଳେ ଖସେଇ ଦେଇ ଗାଈକୁ ଛୁଆଇ ଦେବେ । ପାଦ ତଳର ଗ୍ରେଭ୍‌ବାଲି ଖସି ଖସି ଯିବ ସେ ଶବ୍ଦର ଆଘାତରେ । ସୁରମାକୁ ଭାରି ନଗ୍ଛଟିଆ ଲାଗିଲ !

ପୁରୁଣା ଶବ୍ଦ, ପୁରୁଣା ସ୍ମୃତି, ପୁରୁଣା ପ୍ରଶଂସା ! କାଟି ପକାଉଛି ତରୁଣୀ ସୁରମାର କଞ୍ଚା ମନକୁ ।

ଚତୁର୍ଦ୍ଦିଗରେ ନଖକ୍ଷତର ସ୍ୱାକ୍ଷର !!!

ସୁରମାର ମନେପଡ଼ିଯାଉଛି ପଛ କଥା ସବୁତକ, କଲେଜ ହଷ୍ଟେଲର କଥା । ହଁ ସେଦିନ—ସେଦିନ ସେ ତାରରେ ଏମିତି ଝାଡ଼ି ଶୁଖାଉଥିଲ ବମ୍ବେ ଡାଇଙ୍ଗ୍ ସୁନ୍ଦର ! ଆଉ ପଛରୁ ଲାଗିଲ ଏଇମିତି ଠିକ୍ ଏଇଭଳି ଶବ୍ଦସମୂହର ମୋହମୟ ସ୍ପର୍ଶ ! ପ୍ରଥମ ପ୍ରଶଂସାର ମଧୁର କୋମଳ ଯାଦୁକରୀ ସ୍ପର୍ଶ !

ଏଇମିତି ସର୍ଫ ଲାଗିଥିଲା ତାର ଲାଲ ଛୁପା ଶାଢ଼ୀରେ ! ମୁହଁରେ··· ଗାଲରେ ଠିକ୍ ଏମିତି ପୁଲକିତ ଦୃଷ୍ଟି ସ୍ପର୍ଶ !!

ମଧୁର—ରହସ୍ୟମୟ ଅପରୂପ ! ଅଉ ସେତେବେଳେ ?

ହଁ - ସେତେବେଳେ ତ ରହସ୍ୟର ଆବରଣ ଥିଲ ··ଆକର୍ଷଣ··ମର୍ମନ୍ତୁଦ ଆକର୍ଷଣ ! ଶବ୍ଦ ଥିଲ ଲୋଭନୀୟ ! ଏକାନ୍ତ ମନଭୁଲା ଶବ୍ଦର ଆମନ୍ତ୍ରଣକୁ ଏଡ଼ିବାର ଶକ୍ତି ନ ଥିଲ ସୁରମାର ।

ମାନୁଛି ସେ, ଭାରି ଭଲ ଲାଗେ, ଭଲଲାଗେ ତାଙ୍କର ମେଦଶୂନ୍ୟ ଦୀର୍ଘ ଶରୀର !!!

ଭଲଲାଗେ ତାଙ୍କର ବୁଦ୍ଧିଦୀପ୍ତ କପାଳ ଉପରର ଲୁଖୁରା ବେପାରୁଆ ମୁଠା ମୁଠା ଉଦ୍ଧତ ବାଳଗୁଡ଼ାକ !

ଦୃଢ଼ ବନ୍ଧ ପତଳା ଓଠ, ଆଉ ଓଠରେ ସୀମାରେଖା ! ତଳେ ସୁଦୃଢ଼ ଚିବୁକର ରେଖା, ବ୍ୟକ୍ତିତ୍ୱର ଚିହ୍ନ ସୁସ୍ପଷ୍ଟ ।

ଡାହାଣ ଗାଲରେ ବେଶ୍ ବଡ କଳାଜାଇ !

ପୌରୁଷର ସ୍ୱାକ୍ଷର ବେଶ୍ ଦୀର୍ଘ ଘନ ସୁତୀକ୍ଷ୍ଣ ମୁଣ୍ଡ । ସେ କିନ୍ତୁ କାମନା-ଦୀପ୍ତ ଅଧରକୁ ଛୁପେଇବାକୁ ବୃଥା ପ୍ରୟାସ କରେ । କୁହୁଁଆଁ ଗ୍ରୀ ମନରେ ରଙ୍ଗ ଲଗାଏ ।

ଆଉ ସବୁଠୁ ଆକର୍ଷଣୀୟ, ସ୍ନେହସ୍ୱୟମ୍ଭ ତାଙ୍କର ଉଜ୍ଜ୍ୱଳ କୋର ମର୍ମଭେଦୀ ସୂତୀକ୍ଷ୍ଣ ଆଖିଦୁଇଟା ।

ବୁଦ୍ଧିର ପ୍ରଖରତାରେ, ଶାଣିତ ଛୁରୀକା ପରି ସେ ଆଖି ଜକ୍ ଜକ୍ ହୁଏ ! ଆଉ ସେ ଦୃଷ୍ଟି ସ୍ପର୍ଶରେ ଉକ୍ରାନ୍ତ, କ୍ଷତ ବିକ୍ଷତ ହୁଏ ତରୁଣୀ ମନ !

ତେବେ ଏଥିରେ ଆଶ୍ଚର୍ଯ୍ୟ ହେବାର କ'ଣ ଅଛି । ମନ ଭିତରୁ ଓଟାରି ଆଣେ ଅନିଚ୍ଛାକୃତ ଶ୍ରଦ୍ଧା, ସମ୍ଭ୍ରମ, ଆଉ ଲୋଭ ! ପାଇବାର ଲୋଭ । ସେ ତାର ସଦା ଧାର୍ଯ୍ୟ···ବନ୍ଧୁ ।

ସେ ନମ୍ରବଧ !

ସୁରମା ଦୀର୍ଘଶ୍ୱାସ ପକାଇଲା ।

ହଁ—ସେଦିନ ଝୁନା ଠିକ୍ କହିଥିଲା, "ବୁଝିଲୁ, ତା ଆଖି କ୍ୟାମେରା ଲୋ ! ଫଟ ତୋଳିନିଏ, ସାବଧାନ !"

"ଦୂର···କ୍ୟାମେରା ନା ଛାଇ ।"

"ଶିକାରୀ ଆଖି, ବାପରେ ବାପ୍, ମତେ ଭୟ ଲାଗେ । ବାହା ମାରୁନୁ ତୁ ?"

"ନା ଲୋ—ମତେ ଖାଲି ଡର ଲାଗେ । ନ ହେଉ ସେଥି ପାଠ ପଢ଼ିବି ନା ।" ଅଲକା ଟିପ୍‌ପଣୀ ଦିଏ···

ସୁଚେତା ଅଳ୍ପ ହସି ମୁହଁ ମୋଡ଼େ । "ଉହୁଁ ; ଧର ଉଚିତ, ଉଗ୍ର । କିନ୍ତୁ ମାନୁଛି ରୂପ ଅଛି । ପୌରୁଷ ବି ଅଛି । କିନ୍ତୁ ଏରୂପ କାହାକୁ ବି ଆକର୍ଷଣ କରେନା । ବରଂ ବିକର୍ଷଣ କରେ ସାଧାରଣ ମନକୁ ।"

ସତକଥା ।

କିନ୍ତୁ ସୁରମା ଯେ ଅସାଧାରଣ !

ଅସାଧାରଣ ନିଶ୍ଚୟ, ତା ନ ହେଲେ ଗୋଟାଏ ବୁଦ୍ଧିଦୀପ୍ତ ଜ୍ୱଳନ୍ତ ପୁରୁଷକୁ ଉତ୍ସାହିତ କରିବାକୁ ତାର ଏ ନିର୍ଲଜ୍ଜତା, ଏ ଦୁଃସାହସିକତାକୁ କିଏ ନିନ୍ଦା ନ କରେ !

ଆଶ୍ଚର୍ଯ୍ୟ !!!

ଛି—ଛି—ଛି—

ଅସହ୍ୟ ।

ଆରପଟେ ରେଭେନ୍ସା ନଉ ହଷ୍ଟେଲର ଝରକା ଖୋଲା । ଟେବୁଲ୍ ଲ୍ୟାମ୍ପ୍ର ଅମ୍ଳାନ ଆଲୁଅ ବୋଧେ ଲିଭିବନି; କେଜାଣି···

ଏପଟେ ଲେଡ଼ିଜ୍ ହଷ୍ଟେଲର ତିନି ମହଲା ରୁମ୍‌ରେ ଗୁ' ବସାଏ ସୁରମା···

ରଘୁନାଥ ପରିଚିତ ଥର୍ମୋଫ୍ଲାସ୍କ ଧରି ଡୁରମିନଟ୍ ମଧ୍ୟରେ ଦେଖାଦେବ ଗେଟ୍ ପାଖରେ ସେ !

ହସ, ବନ୍ଧୁପରି, ତାଙ୍କର ହସ ··ପ୍ରଚ୍ଛନ୍ନ ଈର୍ଷା···?

ନା—ସେ କିଛି ଦେଖିପାରେନ···ଜାଣିପାରେନ, ଶୁଣିପାରେନ ।

ବିଚିତ୍ର ଅନୁଭୂତି ।

ପ୍ରେମ ?

ସେ ଅନ୍ଧ ! ସେ ବଧିର ! ସେ ମୂକ !!

ତଥାପି···

ଚିହ୍ନା ପରିଚିତ ସଙ୍କୋଚଟା ସପ୍ରଶ୍ନ ଭଙ୍ଗୀରେ ଆସି ତାକୁ ବିଚଳିତ କରେ । କରେକି ?

ହଁ—ନିରନ୍ତର ମୂଲ୍ୟବୋଧ କରେ । ମନେହୁଏ ଏ ତାର ଅନ୍ୟାୟ କିନ୍ତୁ ସେହି ଶବ୍ଦମାଳା··ଅଦ୍ଭୁତ ଥରେ ଆକର୍ଷଣ, ସୁରମା ପାରେ ନାହିଁ ନିଜକୁ ସଂଯତ କରି ସେ ବିହ୍ୱଳ କରେ ସୁରମାକୁ । ତା ପାଇଁ ସବୁ କରି ସୁରମାର ଆନନ୍ଦ ! ନିର୍ଲ୍ଲଜତାର ଚରମ ସୋପାନରେ ଚଢ଼ିଲେ ମଣିଷ ଏଭଳି କରିପାରେ···

ବମ୍ବେ ଡାଇଙ୍ଗ୍ ବେଡ଼ସିଟ୍‌କୁ ଶୁଖାଉ ଶୁଖାଉ ସୁରମା କାନରେ କ'ଣ ବାଜେନି ଲମ୍ପଟର ସ୍ୱର ?

"ମାନେ—ଏ ସୁନ୍ଦରଟା ବି ନିସ୍ତବ୍ଧର ! ଆଶ୍ଚର୍ଯ୍ୟ ଓ ସେମାନେ ପରି ଶୀଘ୍ର ବାହା ହେଉଛନ୍ତି ।"

"ଆରେ ଆଗ ବାହା ହୁଅନ୍ତୁ । ପଛେ ବରଂ ପଢିଭଲ, ପଢିସେବା ! ଆହା ଲାଜରେ ମୁଣ୍ଡ ଖାଇ ସାରିଛି । ସୁରମା ସତେ କଣ ?

ଛି—ଛି—

ଠିକ୍ କଥା—ଠିକ୍ କଥା—

ହଁ ଲାଜରେ ମୁଣ୍ଡ ଖାଇସାରିଥିଲା ସୁରମା ।

ଗଣେଶ ପୂଜା ମୂର୍ତ୍ତି ଦେଖି ଯାଇଥିଲା ସେ ତାଙ୍କ ହଷ୍ଟେଲକୁ । ନିଜ ରୁମ୍‌କୁ ନେଇଯାଇଥିଲା ତାକୁ ନିସ୍ତବ୍ଧ···ସୁରମା କହିଲା—ବାଃ ତମ ନା ନିସ୍ତବ୍ଧ ! ଅଥଚ ତମ ଘରର ସ୍ଥିତି କିନ୍ତୁ ବିପର୍ଯ୍ୟସ୍ତ ! ଚମତ୍କାର !

ଚମତ୍କାର ସୁନ୍ଦର ବମ୍ବେ ଡାଇଙ୍ଗ ଚଦରଟାରେ ମଧ୍ୟ ପୂର୍ଣ୍ଣ ବିପର୍ଯ୍ୟୟର ସୁସ୍ପଷ୍ଟ ସ୍ୱାକ୍ଷର । ତମେ ସତେ କଣ ?

ଅନେକ କ୍ଷଣ ଧରି ସେଠାରେ ରହିଥିଲା ସୁରମା ସେଦିନ ।

ସେଠି ସେ ସଜାଡ଼ି ଦେଇଥିଲା ପରିପାଟୀରେ ନସ୍ତ୍ରବ୍‌ଧର ଶ୍ରେଷ୍ଠ ଘରଟିକୁ ପରମ ଯତ୍ନରେ ଆଉ ସଫା କରିଦେଇଥିଲା ଚଦର ।

"ମୋ ହାତରେ ପଠେଇ ଦେବ ଚଦର । ମୁଁ ସଫାକରି ଇସ୍ତ୍ରୀ କରି ପଠେଇଦେବି—ହଁ—ହଁ ସବୁଦିନ···"

"ସତେ ନା କ'ଣ ?"

ଆଉ ଚିଠା କି ଦେବନା !! Please ସୁରମା ତମ ହାତ ଗୁ' ଚମତ୍କାର, ସେଇଦିନୁ ସୁରମା କରିଆସୁଛି···

ଏକା କଥା ବାରମ୍ବାର ଆସେ, ପରିଚିତ ବୋବଲୀ ଭିନ୍ନ ରୂପରେ ଦେଖାଦିଏ ।

କିନ୍ତୁ···

ପାତ୍ର ଭିନ୍ନ । ଆଉ ଏମିତି ବମ୍ବେ ଡାଇଙ୍ଗର ବେଡ୍‌ସିଟ୍‌ଟା ତାରରେ ଶୁଖାଇଲାବେଳେ···

ଭସ୍ମ—ଗାଣି ଗାଣି ଅଣ୍ଡା ଭସ୍ମରେ ସୁରମା ଥରିଉଠିଲା ।

ଏମିତି କଥା କହୁଥିଲା ନସ୍ତ୍ରବ୍‌ଧ·· ଏଇ ଶବ୍ଦମାଳା । ଠିକ୍ ଏକା କଥା । କଣ ଫୋର୍ ଦୁହିଁଙ୍କ ଭିତରେ ? ସୁରମା ଫେରିଆସିଲା ଅତୀତରୁ···ଛି ଦ୍ବୀର ତାର ସ୍ୱାମୀ ।

ନିର୍ଜନ କ୍ୱାର୍ଟରରେ କେହି ନାହାନ୍ତି । ଅକାରଣେ ଭୟରେ ସୁରମା ମୁଣ୍ଡ ଉପରକୁ ଓଢ଼ଣୀଟା ଟାଣିନେଲା·· ସେ ନବବିବାହିତା । ଏ ସତ୍ୟକୁ ନୂଆ କରି ଅନୁଭବ କରିବା ପାଇଁ ବୋଧହୁଏ । ନସ୍ତ୍ରବ୍‌ଧର ସ୍ମୃତି ବିପର୍ଯ୍ୟସ୍ତ କରେ ସୁରମାର ସାଜିଲା ମନକୁ ।

ନସ୍ତ୍ରବ୍‌ଧର କୋଟେଙ୍ଗ, ବହିସ୍ତୂପ, ତାର ଆଗମନ, ପ୍ରସ୍ଥାନ, ଶବ୍ଦସମ୍ଭାର, କଥାକୁହା ଢଙ୍ଗୀ ସବୁ ଛିନ୍‌ଭିନ୍ କରିଦିଏ, ବିପର୍ଯ୍ୟସ୍ତ କରିଦିଏ ସୁରମାର ସହଜ ସୁନ୍ଦର ସୁସ୍ଥ ମନକୁ ।।

ଉନ୍ମୁକ୍ତ କରେ କାମନାକୁ !!

ଝଡ଼, ଝଡ଼ ବୁହାଇ ଦିଏ—ଅସଜଡ଼ା, ପ୍ରଳୟଙ୍କର ତାଣ୍ଡବ ଚଳେ ରକ୍ତ କଣିକାରେ ! ସାଜିଲା ମନରେ, ପ୍ରତି ଲୋମକୂପରେ !!

ଆଉ; ଆଉ ଚରିତ୍ରର ସଂସ୍କାର, ଶିଷ୍ଟ ନୀତିକୁ ଭାଙ୍ଗି ଚୂନ ଛିନଛନ କରିଦିଏ ତାର ଦୃଷ୍ଟି ସ୍ପର୍ଶ !

ଜଳଦଗମ୍ଭୀର ଗୁର୍କିଦୀପ୍ତ କଣ୍ଠସ୍ୱର ଯେ ସୁରମାର ରକ୍ତସ୍ରୋତକୁ ଚଞ୍ଚଳ କରେ, ଏକଥା ମର୍ମେ ମର୍ମେ ଅନୁଭବ କରେ ସୁରମା !!

ସ୍ୱୀକାର କରେ ସେ ! ସର୍ବସ୍ୱ ପୂର୍ଣ୍ଣାହୁତିର ସଙ୍କଳ୍ପ ନେଇ ସେ ଛୁଡ଼ା ହୋଇଛୁ ଗୋଟାଏ ଦୁରନ୍ତ ଝଡ଼ ପାଖରେ !!!

ଝଡରେ ଭଣ୍ଡାର ଲୁଟ୍ ହେଲେ ମଧ୍ୟ ସେ ଝଡ଼ର ସ୍ପର୍ଶ ଅଫୁରନ୍ତ ଆନନ୍ଦ ଭୁଣିଦଏ, ତାର ସ୍ୱାକ୍ଷର ସୁରମାର ତନୁ ମନରେ ଦ୍ରୁତଫଳିତ ! ଦ୍ରୁତବର୍ମ୍ମିତ !

ଝଡ଼ର ଆମନ୍ତ୍ରଣ···

ମୃତ୍ୟୁର ଡାକରା ! କିନ୍ତୁ ସ୍ପର୍ଶର ଲୋଭନୀୟ ଆମନ୍ତ୍ରଣରେ ସୁରମା ଯେ ଶିହରିତା, ଏକଥା ଅସ୍ୱୀକାର କରିବାର ଉପାୟ ନାହିଁ···

ସେ ଦିନ କିନ୍ତୁ ନବବିବାହିତା ରେଖା ଠିକ୍ ଜାଣିପାରିଥିଲା !

ସୁରମାର ଶରୀରରେ ଦ୍ରୁତ ରେଖାରେ ପରିତୃପ୍ତିର ଝଲକ ଚିହ୍ନ ! ରେଖା ଆଖିରେ କଳାମେଘର ଗାଢ଼ ଅନ୍ଧାର ଓହ୍ଲାଇ ଆସିଲା ··

ଭୁନକର ଭୁମ୍‌ର ନିଭୃତ କୋଣରେ ସେ ଚିପି ଧରିଥିଲା ସୁରମାର ଦୁଇ ହାତକୁ ! "ମର ପୋଡ଼ାମୁହିଁ, ସୁମି·· ତୁ ଏ କଣ କଲୁ ? ଏ ମରଣକୁ କାହିଁକି ଡାକିଲୁ ସୁମି ?"

ଓଠରେ ପରିତୃପ୍ତିର ହସ ଲହରୀ ଭାଙ୍ଗୁଛି ସୁରମାର !

ତା ହାତରେ ଚିପ ଦେଇ ବେସୁରୁଆ ଗଳାରେ ଗାଇଥିଲା ସୁରମା—

"ମରଣରେ ତୁହୁଁ ମମ ଶ୍ୟାମ ସମ···

"ପାରିବୁ···ପାରିବୁ କୁଳ ଛାଡ଼ି ଶ୍ୟାମ ପାଇଁ" ରେଖା ଆଖି ଜଳୁଥିଲା ଭୟଙ୍କର ଏକ ଆଶଙ୍କାରେ ! ଏକ ଅଶୁଭ ଅଜଣା ସଙ୍କେତର କଳ୍ପନାରେ ! ସୁରମା କିନ୍ତୁ ତକିଆଟାକୁ କୋଳକୁ ଟାଣି ଆଉ ଗୋଟେ ତକିଆରେ ମୁହଁ ଗୁଞ୍ଜି ଶୋଇବାର ଛଳନା କଲା ।

ହଠାତ୍ ଘରେ ପଡ଼ିଲା ଖବର ! ଖବର ଦେଲା ଯେ ରେଖାର ଭାଇ ଆସିଛନ୍ତି । ନିମିଷକରେ ସବୁ ଓଲଟ ପାଲଟ ହୋଇଗଲେ । ରେଖାର ସ୍ୱାମୀ ଅସୁସ୍ଥ ତାକୁ ଯିବାକୁ ହେବ ସଙ୍ଗେ ସଙ୍ଗେ ।

ଆଖିରୁ ଲୁହ ଟାଳ ସେଇ ଯେ ରେଖା ଗଲା ହଷ୍ଟେଲରୁ ଆଉ ଫେରିଲାନି ସେ । ଅବଶ୍ୟ ସ୍ୱାମୀସୋହାଗିନୀ ରେଖାର ଚିଠି ସେ ପାଇଛୁ ଅନେକ···

"କାଇଁ ଲେ, ଆଉ ମୁଁ ସବୁ ଛାଡ଼ି ଯାଇ ପାରିବିନି । ନ ହେଉ ପଢ଼େ ପାଠ" ଇତ୍ୟାଦି, ଇତ୍ୟାଦି···

ପଡ଼ିନି ସୁରମା ଭଲକରି ସେ ଚିଠି ।
ଉତ୍ତର ବି ଦେଇ ନାହିଁ ସୁରମା ଚିଠିର ।
ସେଦିନବେଳରୁ ତ ସୁରମା ବୁଡ଼ିଛି ।

ପୂର୍ବ ଡୁବା ପହଁରା... ବାହାରେ ଦିଶୁନି କିଛି; ଖାଲି ଚକା ଚକା ଭଉଁରୀ... ପାଣି ତଳ ଗାଢ଼ ଅନ୍ଧାର; କଳା କଳା ଗୁଳ । ଆଉ ସେଥିରେ ଆଶାର ଟିକି ଟିକି ରୂପା ମାଛ...ଧଇବ ଧଇବ ଦୋଳି ହାତ ବଢ଼ାଉଛି ସେ । ଅଥଳ ଗଭୀର କଜ୍ଜଳ କଳା ଜଳର ଆମନ୍ତ୍ରଣ ..ମୃତ୍ୟୁର ଡାକରା !! ସନ୍ତରଣ—ଏକ ନିଶା—ମାଦକତା ।

ହଠାତ୍ ବଜ୍ରପାତ ପରି ..., ଚେତନାକୁ ବିଭ୍ରାନ୍ତ କରି ଟେଲିଗ୍ରାମ ପହଞ୍ଚିଲା, ବାପା ମୃତ୍ୟୁଶଯ୍ୟାରେ । ଶୀଘ୍ର ଆସ..

ଛଟପଟ ହେଲା ସୁରମା । ଘରରେ ଗାଈ, ରଘୁନାଥ ଆସିନି ଯେ ! କେମିତି ଖବର ଦେବ ନିପ୍ରବନ୍ଧକୁ ?

ନା ଖବର ପାଇଲା ନାହିଁ ନିପ୍ରବନ୍ଧ । ସେ ସେମିନାରରେ ଯୋଗ ଦେବାକୁ ଦିଲ୍ଲୀ ଯାଇଛି ଗତରାତିରୁ ।

ଚିଠି ଓ ଅଟୋମ୍ୟାଟିକ ଧରି ପରଦିନ ରଘୁନାଥ ଆସିଥିଲା ସୁରମା ପାଖକୁ । ହେଲେ ସୁରମାର ଚିଠି ତାକୁ କେହି ଦେଲେ ନାହିଁ ।

ତାପରେ ??

ପ୍ରତାରଣା ? ଛଳନା ? ମିଥ୍ୟା ଅଭିନୟ ? ..ଗାଁକୁ ଯାଇ ସୁରମା ଚମକି ପଡ଼ିଲା । ସୁରମା ସେଠି ଗର୍ଜିଥିଲା—"ନା—ନା ଏ ଅନ୍ୟାୟ । ମୋ ବିନାନୁମତିରେ ମୋ ବାହାଘର ଅସମ୍ଭବ । ଅସମ୍ଭବ । ହୋଇପାରେନା, ହୋଇପାରେନା ।"

ମିଛ ଟେଲିଗ୍ରାମ୍‌ଟାକୁ ଟିକି ଟିକି କରି ଚିରି ଦୁଇ ହାତରେ ସମସ୍ତ ଶକ୍ତି ଦେଇ ମକୁଥିଲା ସୁରମା ।

ଏ କଥା କଣ ମିଛ ? ସତ ନୁହେଁ ?

ନା ଅଧମାଧାର୍ଦ୍ଧରେ ସତ୍ୟ ।

ଆହୁରି ବି ସତ୍ୟ; ସୁରମାର ବୁକୁଫଟା କାନ୍ଦଣା...ସ୍ୱୀକାରୋକ୍ତି ପିତାଙ୍କ ନିକଟରେ । ବିନମ୍ର ପ୍ରାର୍ଥନା । ନିପ୍ରବନ୍ଧକୁ ଛାଡ଼ି ସେ ବଞ୍ଚି ପାରିବ ନାହିଁ ।

ଆଉ ତାପରେ...ତାପରେ...

ତେବେ ? ତେବେ ? ମଙ୍ଗଳ ବାଜା କ'ଣ ବନ୍ଦ ହୋଇଗଲା ?
ସ୍ତବ୍ଧ ହୋଇଗଲା ସବୁ ଆୟୋଜନ ? ଆଡ଼ମ୍ବର ?

ଅଥଚ...

କିଛୁ ଗୋଟାଏ ଅଘଟଣ ତ ଘଟିଲା ନାହିଁ ।

ଯଦିଓ ସେ ଆସି ପହଞ୍ଚିଥିଲା ଅନାହୂତ ସେହି ବିବାହ ସମାରୋହରେ ସେ ନିସ୍ତବ୍ଧ !

ପ୍ରଶ୍ନ ନାହିଁ, ଆଲୋଡ଼ନ ନାହିଁ ! ସେ ଖାଲିଟିକେ ଦେଖାକରିବାକୁ ଚାହେଁ ସୁଚେମାକୁ, କାମ କରୁଛି । ଶେଷଥର ପାଇଁ ପଦୁଟିଏ କଥା ପଚାରିବାକୁ ଚାହେଁ ସେ ସୁଚେମାକୁ !

କନ୍ୟା ସାଜରେ ସେତେବେଳକୁ ବସି ସାରିଥିଲା ସୁଚେମା !

ସାମ୍ନାରେ ଶ୍ୱଶୁର ଘର ଲୋକ ଠିଆ ହୋଇଛନ୍ତି ! ରାତ ପାହିଲେ ବାହାଘର ହେବ !

ସବୁରି ଆଖିରେ ଘନ କଳା ଛାଇ !

ଆଜକାଲିକା—ଝିଅ...

ଛାପି ଛପିକା ଅଇଲା ଅବା କଳାହାଣ୍ଡିଆ ମେଘ ! ସବୁ ଭାସି ଯିବ । ମାତ୍ର...ବିଚଳିତ ହୋଇ ନ ଥିଲେ ସୁଦକ୍ଷ ନିର୍ଦ୍ଦେଶକ ହୃଷିକେଶ ବାବୁ ! ହସ ହସ ମୁହଁରେ ଡାକ ଦେଲେ—"ଆ ତ ମାଆ ମୁନି, ତୁ ଏ ଭଦ୍ରଲୋକଙ୍କୁ ଚିହ୍ନୁ ମାଆ ?"

ଏ କଥା ବି ନିହାତି ସତ !!

ସେହି ସୁଚେମା ତାର ନରମ ଆଖି ଦୁଇଟାରେ ବିଦ୍ୟୁତର ସବୁ ଚମକ ଫୁଟାଇ କହିଥିଲା..."ନା ଆଁ ତ ! ହଁ...ହଁ କଲେଜରେ ଥରେ ଥରେ ଦେଖିଛି ! କାହିଁକି ? କଣ ହେଲା ବାପା ?"

କିଛି ନାହିଁ ମାଆ—ତୁ ଯାଆ ।" ଝଙ୍କାରି ହସ ହସିଲେ ନିପୁଣ ନିର୍ଦ୍ଦେଶକ ହୃଷିକେଶ ବାବୁ ! ନିଖୁଣ ଅଭିନୟ କରି ପାରିଛି ସୁଚେମା । ଚମତ୍କାର ସୁଚେମା ପ୍ରଶଂସାର ପାତ୍ରୀ, ତାଙ୍କରି ଝିଅଟି !

ପ୍ରବୀର ପିତାଙ୍କର କଣ୍ଠ ବେଶ୍ ଶୁଣା ଯାଉଛି ତଳ ଘରୁ—"ମିଥ୍ୟାବାଦୀ ଲୋକଟାକୁ ପୋଲିସ୍‌ରେ ଧରେଇ ଦିଅନ୍ତୁ ନା ! ବଦମାଶ୍ !"

କାହିଁ—ପ୍ରତିବାଦ ତ କରି ନ ଥିଲା ସୁଚେମା !

କିନ୍ତୁ ନିସ୍ତବ୍ଧ ??

ହଁ, ଯନ୍ତ୍ରଣା ବିକୃତ କଣ୍ଠରୁ ତାର ଝରିଥିଲା ପଦଏ କଥା—"ବେଶ୍ ଆଉ ସୁଚେମା ?"

ତାର ଘଣ୍ଟ ପରିବର୍ତ୍ତନ ହେଲା !

ଘଣ୍ଟ ପରିବର୍ତ୍ତନ ସଙ୍ଗେ ସାପ କାତି ଛାଡ଼ିଯାଉଛି !

ଫିଙ୍ଗି ଦେଇଛି ପୁରୁଣା ଆବରଣ !

ଏଥର ନୂଆ କରି ଅନୁଭବ ! ଭୂମିକା ବଦଳିଛି ଯେ !

ସାହାନାଇ ସଙ୍ଗେ କଣ୍ଠ ମିଳାଇ ତାକୁ କାନ୍ଦିବାକୁ ହେବ ଯେ !

ହଁ, କାନ୍ଦୁଛି ସୁରମା···ବୁକୁଫଟା ସେ କାନ୍ଦଣା—ଅସରନ୍ତି ଯନ୍ତ୍ରଣାଭରା କାନ୍ଦଣା !!

ଅନୁଶୋଚନାର ଲୁହ !

କିନ୍ତୁ···ଲୋକେ କହୁଛନ୍ତି, ଆହା···ବାପଘର ସ୍ନେହ ତୁଟାଇ ଆଡ଼େଇ ଯାଉଛି ଅଲିଅଳି ଝିଅଟା ଜୀବନ ପାଇଁ···ଏ କ'ଣ କମ୍ ମାୟା ? ଆହା—କେତେ କାନ୍ଦୁଛି ଲୋ ! କେଡ଼େ ଭଲ ଲୋ ଏ ଝିଅ ! ଏ ଯୁଗରେ ଏମିତି କିଏ କାନ୍ଦୁଛି କହିଲୁ ! ଘରେ ଭଲ ଏ ସୁରମା···ସବୁ କାନରେ ବାଜୁଛି ତାର···

ସୁରମା ପ୍ରତାରଣାର ପ୍ରତୀକ ? ପ୍ରତାରଣାର ହୀନ କାଳ ମନ ଭିତରେ ବୋଲି ହୋଇ ଯାଇଛି···ପରନ୍ତୁ ସ୍ୱଚ୍ଛତାରେ ଲାଗି ରହୁଛି ତାର ମଳିତଆ ଦାଗର ସ୍ୱାକ୍ଷର !!!

ଭେଜାଲ ସୁରମା କ'ଣ ଦେଲା ଯେ ପ୍ରବୀରକୁ, ଅଥଚ ପ୍ରବୀର ଏତେ ମୁଗ୍ଧ ।

ତା'ର ଏଇ ମଳଟାକୁ ପ୍ରବୀର କ'ଣ ଏମିତି ସ୍ପର୍ଶରେ ଧୋଇ ଦେଇ ସଫା କରି ଦେଇ ପାରିଛି ??

ଛାଡ଼ିଯାଇଛି ସେ ପ୍ରତାରଣାର ଗାଢ଼ କଳାଦାଗ !

ସୁରମା ଭୟରେ ଶିହରିତ ହେଲା ! ଅଶୁଚରେ କାୟ ରୁଦ୍ଧ ହେଲା ତାର···

ମନକୁ ମନ ବୁଝେଇଛି ସୁରମା ବହୁବାର ।

ସେ ଶିକାରୀ, ସେ କଥାର ଜାଲ ବୁଣି ସୁରମାର କଅଁଳିଆ ମନକୁ ଶିକାର କରିଥିଲା । ସେ ଅଶୁଭ ଅଘଟଣରୁ ତାକୁ ମୁକ୍ତି ଦେଇଛି ପ୍ରବୀର ! ତାର ସ୍ୱାମୀ । ତାର ଶୁଭେଚ୍ଛା । ଇହକାଳ ପରକାଳର ମୁକ୍ତିଦାତା । ସେ ତ ପ୍ରବୀରକୁ ସୁଖୀ କରିଛି । ସେ ପରିପୂର୍ଣ୍ଣ, ତୃପ୍ତ । ଏ କଥା ବି ସତ ।

କିନ୍ତୁ ସୁରମା ???

ହୃଦୟର ଗହ୍ୱରରେ ଲୁଚିଥିବା ଥାକ ଥାକ ସୁନ୍ନବୀଚିତ ଶରର ତୀକ୍ଷ୍ଣ ଅସ୍ତ୍ର-ଗୁଡ଼ାକ ଯେ ତାକୁ ଅନୁକ୍ଷଣ କ୍ଷତବିକ୍ଷତ କରୁଛି କାହିଁକି ?

ସୁରମାର ମୁକ୍ତି କାହିଁ ???

ଯନ୍ତ୍ରଣାରେ ନାଲି ପଡ଼ିଗଲା ସୁରମାର ଗୋରା ତକ ତକ ମୁହଁଟା!···

ହଁ—ଅଭିନୟ, ପୁଣି ଅଭିନୟ କରିବ ସୁରମା !!!

କିନ୍ତୁ ଏ କ'ଣ ଅଭିନୟ ? ସତ୍ୟ କ'ଣ ଟିକେ ନାହିଁ ?? ହୃଦୟର ଏଇ ଲୁଚିତ କଣ୍ଟାକୁ ଟାଣି ବାହାର କରିବାକୁ ସୁରମାର ଏ ପ୍ରାଣପଣ ଚେଷ୍ଟା କରିବା କ'ଣ ଅଭିନୟ ???

ସାପ କାତି ଛଡ଼ାଇଲା ପରି ଅତୀତକୁ ଫିଙ୍ଗି ଆସିଛି ସୁରମା···
ପୁଣି ନୂଆ କାତି କଅ ଲାଉଛି ।
ତଥାପି ଗୁଡି ଭିତରେ କଣ୍ଟା ଫୋଡ଼ ହେଉଛି ଯେ !
ଏବେ ବି ହେଉଛି ପୁରୁଣା କ୍ଷତରୁ ରକ୍ତ କ୍ଷରଣ !
ଏଥିରେ ଫାର୍କ ନାହିଁ । ଜମାରୁ ମିଛ ନାହିଁ······

ଏ ଯନ୍ତ୍ରଣା ତାର ଏକାନ୍ତ ନିଜସ୍ୱ । ନିର୍ଜନ କ୍ୱାର୍ଟରରେ ସ୍ୱାମୀସୋହାଗିନୀ ସର୍ବଗୁଣସମ୍ପନ୍ନା ରୂପସୀ ସୁରମା ଦ୍ୱିପ୍ରହରର ନିଝୁମ ନିସ୍ତବ୍ଧତା ମଧ୍ୟରେ ଖାଲି ଥିଲା ଲୁହ ।

ଶିହରଣ ହେଉଛି···ଶିହରଣ ନାହିଁ ।
ସବୁ ନିସ୍ତବ୍ଧ···ଏକାନ୍ତ ନିସ୍ତବ୍ଧ !



## ● ସ୍ୱାବତ ବାପା

ଅଧ୍ୟାପିକା ବାନ୍ଧବୀଗଣ ଦ୍ରାସ୍ତ ଆସନ୍ତି—
ଫେରି ଗଲାବେଳେ ମୁହଁରୁ ଖସେ ପଦଏ କଥା—ଦୁଃସହ !
ତଥାପି……
କହିବାକୁ ହେବ, ଭଗବାନଙ୍କର ବିଗ୍ରହ ଅଛି !

ବଡ଼ ବଡ଼ ଆଖି ଦୁଇଟାରେ କେମିତି ଗୋଟାଏ ନିର୍ଲିପ୍ତ ଆଗ୍ରହ ଅନବରତ ଲହରୀ ଖେଳୁଥାଏ । ସୁନ୍ଦର ଓଠ ଦିଟାଲ ଅନଚ୍ଛ ଯନ୍ତ୍ରଣା ଥରି ଉଠେ, "ମୁଁ ଆଉ କୁ ଯଦି ଯାଇପାରି ଥାଆନ୍ତି… ‥

ପରିଚିତା ବାନ୍ଧବୀ, ଆତ୍ମୀୟ ସ୍ୱଜନମାନେ ତଥାପି ଆଶ୍ଚର୍ଯ୍ୟ ହୋଇ ଦେଖନ୍ତି……

ବେଶ୍ ଶାନ୍ତ ସ୍ୱରରେ ତ ସେ କହି ପାରୁଛନ୍ତି, "ସୁରମା ! ଯା ତ ମାଆ ରେକ୍ସା ଡାକି, ମେହେନ୍ଦିପୁର ମାଆ ଯିବି ।"

ବେଳେ ବେଳେ ମଝିରେ କହୁଛନ୍ତି, "ସୁରମା ! ଗ୍ୟାସ୍ଟା ବନ୍ଦ କରିଦେ ମାଆ ! ମୁଁ ଗଲେ ବାପୁ ପାଇଁ କିଏ ରାନ୍ଧିବ । ସେ ଡେରିରେ ଆସିବ ।"

ଅଥଚ……

ମେହେନ୍ଦିପୁରର ଲେଖାଯୋଖା ସ୍ୱଭଳ ତଳକୁ ଓହ୍ଲାଇ ରେକ୍ସାରେ ବସି ମନେ ପକାନ୍ତି ପୁଣି କଥା !

ମାସ କେଇଟା ଦିନ ! କିଏ କ'ଣ ଭାବିଥିଲା !
ସେ ଦିନଟା ଥିଲା ବିପର୍ଯ୍ୟୟର ଦିନ ।

ଶୁଭେନ୍ଦୁର ଦୀର୍ଘ ଘନକୃଷ୍ଣ ଶରୀରଟା ଅନେକ ମାଳତୀ ଫୁଲରେ ଭରି ଯାଇଥିଲା । ଆଉ ସେହି ଫୁଲଭରା ଶରୀର ଉପରେ ଲେଟି ପଡ଼ିଥିଲା ଗୋଟାଏ ବିପର୍ଯ୍ୟସ୍ତ ବିବ୍ରତ ଶୋକାଚ୍ଛନ୍ନ ମୂର୍ତ୍ତିମନ୍ତ କାରୁଣ୍ୟ । ଶ୍ୱେତପଥରର ନାରୀମୂର୍ତ୍ତି !

ଚେତନାହୀନା !
ସେ ଆରାଧନା ।
ଶେଷରେ ଶବ ଚାଲିଗଲା । ଚେତା ଫେରି ନଥିଲା ଆରାଧନାର !
ଠିକ୍ ଦୁଇଦିନ ପରେ ଶେଷରେ ଆଖିମେଲି ଚାହିଁଥିଲା ଆରାଧନା ।

ତାପରେ...
ସେହି ଚୁଡଫଟା କାନ୍ଦଣା ଅସରନ୍ତ...
ପଥର ଫାଟି ଝର ଯାଉଥିବା କ୍ରନ୍ଦନଗାମୀ ଝରଣା ଧାରା...
ହୃଦୟନିଗିଡ଼ା ଦୁର୍ବାର କାନ୍ଦଣାର ସୁଅ ଝରଯାଉଥିଲା...

ନିର୍ମମ ଆକ୍ରୋଶରେ ବାରମ୍ବାର ଆପଣାର କପାଳକୁ ପିଟିଦେଇ ସିମେଣ୍ଟ ଚଟାଣକୁ ଦୁଇହାତରେ ସାଉଁଟି ପକାଉଥିଲା ଆରାଧନା ! ସୁବ୍ରତ ଓ ଦୀପକ, ଦୁଇଭାଇଙ୍କର ବାରମ୍ବାର ଅନୁନୟ ସତ୍ତ୍ୱେ ସେ ବୁଝୁ ନଥିଲା ।

ତାପରେ ଆରାଧନା ହେଲା ନଥର !
ସେ ମୂକ—ପଥର—ସମ୍ବିତ୍ହୀନ !

ଶୁଭ୍ର କପାଳରେ ତାର ଲମ୍ବା ଲମ୍ବା ଫୁଲା, କଟାଦାଗ ଯନ୍ତ୍ରଣାର ନୀଳସ୍ୱାକ୍ଷର, ବ୍ୟର୍ଥତାର ପରାଜୟର ସ୍ୱାକ୍ଷର...

ଚକ୍ଷୀର ଛତରେ ଦାଗ କଣ ଖାଲି କପାଳରେ ?
ଆଉ ଚୁଡ ତଳେ ???

ମେହେନ୍ଦିପୁରର ଭାଉଜ ତାଙ୍କ ହାତକୁ ଜାବୁଡ଼ିଧରିଥିବା ହାତରେ ନେଇ ଧରେଇ ଦେଇଥିଲେ ଆଉ ଦୁଇଟା ହାତ ।

ସେ ସୁବ୍ରତର ହାତ ! ଦୀପକର ହାତ । ଅନ୍ତଫାଡ଼ି ଯେଉଁମାନଙ୍କୁ ଆଲୋକକୁ ଆଣିଥିଲା ଆରାଧନା !

କଟା ଚୁଡର ଦୁଇଟା ନିର୍ମମ ସ୍ୱାକ୍ଷର ! ଆଶା, ଅବଲମ୍ବନ ! ଆଶାବାଡ଼ି ଦୁଇ-ଦେହରେ ଭରାଦେଇ ଠିଆହେଲେ ଆରାଧନା !

ଏମିତ ଚାଲିବେ ସେ !
ଅବଶିଷ୍ଟ ଜୀବନ...
ଆଶ୍ଚର୍ଯ୍ୟ... !
ହଁ କାମଟା ବି ତ ବଢ଼େଇ ଦେଇ ପାରିଥିଲେ ବେଶ୍ ଭଲରେ ।

ଲୋକେ କହୁଥିଲେ ଇଶ୍ୱର ଅଛନ୍ତି ଠାକୁରଙ୍କର । ଭାଗ୍ୟବତୀ ସେ । ବୁଢ଼ା ଦୁଇଟା ଯୁଆନ ପୁଅ ତ ପାଇଛୁ । ବଳ ତ ଅଛି । ପୁଣି ଗୃହଲକ୍ଷ୍ମୀ ତ ଅଛି । ସ୍ୱାମୀ ଗଲାଗଲେ ମଧ୍ୟ ପୁଣି ଆଶା ଭରସା ତ ଅଛି !

କିନ୍ତୁ...
ଆରାଧନା ଯେତେବେଳେ ଭାବୁଥିଲେ ସ୍ୱାମୀଙ୍କର ସୁଦୀର୍ଘ ଛଅ ଫୁଟ ଲମ୍ବା ଶରୀରକୁ ଦେଖି ..

ନଜର ଶୀର୍ଣ୍ଣ ଶରୀର ପ୍ରତି ଆକ୍ଷେପ କରି ସ୍ୱାମୀଗରବିଣୀ ଆରାଧନା ଆନନ୍ଦରେ ଗର୍ବରେ କହୁଥିଲେ, "ତୁମେ ସୁବ୍ରତକୁ ମଣିଷ କରିବ । ସେ କାମଟା ତୁମକୁ ଭଲ ଭାବରେ ଜଣା । ମୁଁ ଆଉ କେତେଦିନ ଯେ ! ଏଇତ ମୋର ଦୁର୍ବଳ ଦେହ ।"

କୋଳରେ ଥାଏ ଶିଶୁପୁତ୍ର ସୁବ୍ରତ ! ପ୍ରଚ୍ଛନ୍ନ ଆନନ୍ଦର ଝଲକ ଉକୁଟୁ ଥାଏ ଆରାଧନାର ସୁନ୍ଦର ମୁଖମଣ୍ଡଳରେ । ଯୌବନ ରୂପ ଏବେବି ମଉଳି ନ ଥିଲା ।

ଆରାଧନା ସୁନ୍ଦରୀ ··

ହେଲେ ମଉଳିଗଲା ଚିରଦିନ ପାଇଁ ମହକ । ଆରାଧନା ବିଧବା ହେଲେ ।

ନିଦାରୁଣ ଆଘାତ । ଆରାଧନା ଜୀବନର ବିଚିତ୍ର ଘଟଣାବଳୀର ଦର୍ଶକ ମେହେନ୍ଦିପୁରର ଲେଖାଯୋଖା ପ୍ରଭୁଜ । ତାଙ୍କ ଦୁର୍ଭାଗ୍ୟ । ସେହିକଥା ଯିବ ରେକର୍ଡରେ ଚଢ଼ୁଥିଲେ ସେ !

ବହୁକାଳର ଘଟଣା ତାଙ୍କର ସ୍ପଷ୍ଟ ମନେ ପଡ଼ି ଯାଉଛି···

ସେଦିନ ବି ସେ ବସିଥିଲେ ଆରାଧନା ଘରେ । ଛ ବର୍ଷ ବୟସର ଅଳସଦେହକୁ ଖଟରେ ବିଛେଇ ଦେଇପଡ଼ିଥିଲେ ଆରାଧନା । ରେଡ଼ିଓ ଶୁଣୁଥିଲେ ।

ହସି ହସି କହିଲେ ଆରାଧନା, "ବସ ମ ଭାଉଜ; ଆସ ଚନାବାଦାମ୍ ଖାଅ, ଭାରି ଭୋକ ହେଲାଣି ମୋତେ । ଇଏ ଆସି ନାହାଁନ୍ତି ଏ ଯାଏ । ମାଂସ ପଲେଉ ଏତେ ଯତ୍ନରେ ରାନ୍ଧିଲି କାଲୁ ସବୁ ଅଣ୍ଡା । ମୁଁ କହିଦେଲି ନା ଦପ୍ତୁ ପାଇଁ ବାବା ସୁଟ ଆଣିବାକୁ, ବଜାର ବାଟେ ଆସୁ ଆସୁ ବୋଧେ ଡେରି ହୋଇଥିବ ତାଙ୍କର ! କିଛି ସେ ଖାଇ ନାହାନ୍ତି ।

ବରି ବାଟିବି ପୋଡ଼ପିଠାପାଇଁ । କାଲି ପହିଲି ରଜ ଯେ ! ମନ ଲାଗୁନି ମ ଜମା ! ଖାଇବା ଭୋକ । ପୁଣି କେମିତି କେଜାଣି ପେଟ ଭିତରଟା ପାଣ୍ଠି ହୋଇ ଯାଉଛି । ଭୋକରୁ କି ? ଚନାବାଦାମ ନିଅମ !"

ଆରାଧନାର ମନ ପାଣିପରି ବହିଯାଏ । କଥାରେ ଫୁଟେ ଆନ୍ତରିକତା । ସେତେବେଳେ ଆରାଧନାର ଅନନ୍ୟ ରୂପ । ଖୋଲିବାଳ ଲମ୍ବିଛି ଅଣ୍ଟାଯାଏ । ଡବଲ ବେଡ଼ର ଡନଲପ୍ ଗଦିଉପରେ ପେଟମାଡ଼ି ଶୋଇ ଚନାବାଦାମ ଛଡ଼ାଉ ଥାଏ ସେ । ଖବରକାଗଜ ଉପରେ ବାଦାମ ଚୋପା । ଟେବୁଲ ଉପରେ ଯୁଗ୍ମ ଫଟୋ । ଆରାଧନା ଓ ତାର ସ୍ୱାମୀ ଅମରେନ୍ଦ୍ର !

ଅମରେନ୍ଦ୍ର ସୁପୁରୁଷ !

ସଭିଏଁ କହନ୍ତି, କତି ଆଂଖୋଚ୍ଛୁଟ ଗୋ ! ଚମତ୍କାର ଯୋଡ଼ି ତୁମ ଦୁହିଁଙ୍କର ।

ଫଟୋ ଦିସୁଛି, କଥା କହୁଛି ଅବା !

ଭରା ସଂସାର !

ସୁଖୀ ଆରାଧନା ! କୋଳରେ ପୁଅ !

ଅଥଚ···

କ'ଣ ହେଲା ନମିଷକରେ ?

ବିପର୍ଯ୍ୟୟ !!

ଚରମ ବିପର୍ଯ୍ୟୟ ଘଟିଲା । ଚନାବାଦାମ ଗ୍ରେପା ହାତରେ ଅଛି । ବିଶ୍ୱାସ କରିହୁଏ ନାହିଁ, ତାଙ୍କର ଆଖି ଆଗରେ ଉଦ୍ଦୁତ୍ତ ଦଆ ଦ ପ୍ରହରଟରେ ସୁବର୍ଣ୍ଣରେଖା ପର ଚିଅଟାର ଗୋଟା ଭବିଷ୍ୟତଟା ଛିନ୍ନ ଭିନ୍ନ ହୋଇ ରକ୍ତ ସାଗରରେ ହୋଇ ସେଇଠି ସେଇ ମୁହୂର୍ତ୍ତରେ କୁଢେଇ ହୋଇ ପଡ଼ିଲା··ସବୁ ସୌଭାଗ୍ୟ ମୁଠାଏ ପାଉଁଶ ଗଦାରେ ପରିଣତ ହୋଇଛି··

ବିଶ୍ୱାସ କରି ପାରିନାହିଁ ଆରାଧନା ! ନିଜ ଆଖିକୁ ମଧ୍ୟ ବିଶ୍ୱାସ କରି ପାରିନାହିଁ ।

ଦୁଇମିନିଟି ପରେ ଗୋଟାଏ ଏକୋନ୍ତ ଆର୍ତ୍ତଚିତ୍କାର କରି ଏଇମିତି ଲେଟି ପଡ଼ିଥିଲା ଚଟାଣ ଉପରେ । ଠିକ୍ ଏଇମିତି ।

ବହୁକାଳ ତଳର ଘଟଣା । ମୁଠାଏ ସଜଫୁଟା କାଞ୍ଚନ ଫୁଲ ଉପରେ ଘୋଡେଇ ହୋଇ ପଡ଼ିଥିଲା କଳା କଳା ଭଅଁର ପରି ସୁଦୀର୍ଘ କେଶଗୁଚ୍ଛ ! ପ୍ରପାକୃତ କଳାତେଜ !

ଅଶୁଭ ସଙ୍କେତ···

ମେହେନ୍ଦ୍ରପୁର ଷ୍ଟେଜ ହେଇଠି ଥିଲେ । ଶୁଣିଥିଲେ ଜିପ୍ ଆକ୍ସିଡେଣ୍ଟ କଥା । ଏସ୍. ଡ଼ି. ଓ. ଙ୍କ ମାଆ ଅର୍ଦ୍ଧମୃତ । ଏସ୍. ଡ଼ି. ଓ: ଆଘାତ ପାଇଛନ୍ତି । ଆଉ ସେକେଣ୍ଡ୍ ଅଫିସର ଅମରେନ୍ଦ୍ର ???

ଅମରେନ୍ଦ୍ର କାହିଁ ???

ଆଃ—ଏ ପ୍ରଶ୍ନର ନିର୍ମମ ଉତ୍ତର···ଅମରେନ୍ଦ୍ର ଶବ !

ସେହି ଚୂର୍ଣ୍ଣ ବିଚୂର୍ଣ୍ଣ ରକ୍ତାକ୍ତ ଦେହଟା ମୂକସାକ୍ଷୀ ଆରାଧନାର ଚରମ ଦୁର୍ଭାଗ୍ୟର ।

ହାତରେ ଜୟନ୍ତନାରାୟଣ ପ୍ୟାକେଟର ବାବା ସୁଟଟା ଲେଟି ପଡ଼ିଥିଲା । ପାଖରେ ପଟେ ନାଲି କୁନି ଯୋତା ! ଆଉ ଲାଲି ରଙ୍ଗର ପିଫିନ୍ ଶାଢ଼ୀର ପ୍ୟାକେଟ୍ ରକ୍ତରେ ଧୋଇ ହୋଇ ଯାଇଥିଲା । ସେ ଦୃଶ୍ୟ ଦେଖି କିଏ ଦେହ ଧରିବ ?

ବାଷ୍ଟରୁଙ୍କ କଣ୍ଠରେ ବର୍ଣ୍ଣନା କରିଥିଲେ ଆର୍ମି ଅଫିସର, ପ୍ରତ୍ୟକ୍ଷଦର୍ଶୀ ସିଏ ।

ପାଖ ଝୁଲରେ ଚିତ୍କାର କରି କାନ୍ଦୁଥିଲା ବରଷେ ନ ପୂରିଥିବା ପୁଅ ଦୀପକ୍ । ତାକୁ ଉନାଦନ କାଳ ସାଇତି ରଖିଥିଲେ ଏଇ ମେହେନ୍ଦିପୁର ଭାଉଜ !

ଆଉ ଆରାଧନା ??

ତାପରେ···

ତାପରେ "ଆଉ ବାବା ଆଉ । ହେ ପ୍ରଭୁ ଶତ୍ରୁକୁ ଏ କଷ୍ଟ ନ ଦିଅ ।" ମେହେନ୍ଦିପୁର ଭାଉଜ ଲୁହ ପୋଛୁଛନ୍ତି । ଅତୀତକୁ ମନେପକାଇ ଚେଉକ୍ସ ରେ ଚଢ଼ନ୍ତି ସେ ! ଗୋଟି ଗୋଟି ହୋଇ ପଛ କଥା ମନେ ପଡ଼ିଯାଏ ।

ମନେପଡ଼େ ସେଦିନ କଥା···ବିଧବା ବେଶରେ ଆରାଧନା !

ଦୁର୍ଘଟଣାଜନିତ ମୃତ୍ୟୁ, ସୁନ୍ଦର ତରୁଣ ସ୍ୱାମୀଙ୍କର !

ଦିନର ପ୍ରାକ୍ କାଳରେ ସେଦିନର ପାଗଳିନୀ ଆଲୁଳାୟିତା ଆରାଧନାର ସେ ବିଚିତ୍ର ରୂପର ପୁନଃ ପ୍ରକାଶ ଅତ୍ୟନ୍ତ ଦୁଃସହ । ମଝିରେ ଦିନ କେଇଟା ଥିଲା ଗୋନ୍ !

ଅମରେନ୍ଦ୍ରର ଦୁର୍ଘଟଣାଜନିତ ମୃତ୍ୟୁ ପରେ ନିଜର ଅନିନ୍ଦ୍ୟ ସୁନ୍ଦର ଶରୀରଟାକୁ ସାଉଁଟାଇ ପୁଣି ଠିଆହୋଇ ପାରିବେ ଆରାଧନା !

କିଏ ଭାବିଥିଲା ଏ କଥା ସେଦିନ ··

ସେଇ ବହୁବର୍ଷ ତଳର ଘଟଣା···

ପୁରୁଣା ଘାଆରୁ ରକ୍ତ କ୍ଷରଣେ !

ମୁହଁଟିର ଭୋ ଛନ କଲେ ମେହେନ୍ଦିପୁର ଭାଉଜ !

ଆମ ମାନଙ୍କରେ ସଯତ୍ନରକ୍ଷିତ ଅବ୍ୟବହୃତ କୁମାର ସମ୍ଭବ, ମେଘଦୂତକୁ ପୁଣି ଆଦରରେ ଆଣି ଜାବୁଡ଼ି ଧରିପାରିବ କାନ୍ତ ଶୂନ୍ୟ ପ୍ରଦୀପେ, କିଏ ଯାଣି ମଣିଥିଲା ଏ କଥା ? ମଣିଷ ସବୁ କରିପାରେ । ବଞ୍ଚିବା ପାଇଁ ପୁଣି ଠିଆହୁଏ ।

ସାତ ସାତ ଅନିଦ୍ରା ହୋଇ ପାଠ ଭିତରେ ନିଜକୁ ହଜେଇ ଦେଇପାରିବ ଏ କଥା କିଏ ଧରିଥିଲା ?

ମେହେନ୍ଦିପୁରର ଭାଉଜ ସବୁ ଦେଖିଛନ୍ତି । ଆରାଧନାର ସୁଖ ବି ଦେଖିଛନ୍ତି··· ଯନ୍ତ୍ରଣା ବି ଦେଖିଛନ୍ତି···

ଜୀବନସଂଗ୍ରାମ ବି ଦେଖିଛନ୍ତି···

ଗୋଡ଼ ଝିମି ଝିମି ଯାଉଥିବାର ଦୃଶ୍ୟ ବି ଦେଖିଛନ୍ତି ।

ଏଇ ସାନ ଦୀପକ୍ ମାଆର କୋଳ ଦେଖିନାହିଁ ।

ରାତିର ଅନ୍ଧକାରରେ ମୁହଁରେ ବୋତଲ ଧରାଇ ଆଇ ହେମାଙ୍ଗିନୀ ଛୋଟ ଝିଅଟିକୁ ଶୁଆଇ ପକାନ୍ତି ପାଖ କୋଠରୀରେ ।

ଆଖି ଲୁହ ପୋଛି ପାଖ ଲୋକଙ୍କୁ ତୁନି ତୁନି କହନ୍ତି, "ଡାକନି ଲୋ ତାକୁ ! ଥିଉ ଲୋ ଆଉ ପାଗଳୀ ଝିଅଟା ମୋର ! ଗୋଟାଏ ନିଶା ଲାଗିଛି ତାକୁ ପାଠପଢ଼ା ନିଶା ! ପ୍ରଭୁ ତ କାଚ ସିନ୍ଦୂର ଛଡ଼େଇ ନେଲେ । ଯାବୁଡ଼ି ଧରୁଛି ଯେଉଁ ପାଠକୁ ସେଇ ପାଠ ତାକୁ ବଞ୍ଚାଇ ଦେଉ । ମାଆ ମୋର ବଞ୍ଚି ଯାଉ ।"

ଆରାଧନା ମୁହଁରେ ଦୃଢ଼ପ୍ରତ୍ୟୟର ଚିହ୍ନ । ତାକୁ ବଞ୍ଚିବାକୁ ହେବ । ଝିଅକୁ ବଞ୍ଚାଇବାକୁ ପଡ଼ିବ !

ସତକୁ ସତ ବଞ୍ଚିଲେ ଆରାଧନା । ପ୍ରଥମ ଶ୍ରେଣୀରେ M: A: ପାସ୍ କରି ଠିଆ ହୋଇ ପାରିଲା । ପୁଣି ନୂଆରୂପ ଧରି ଠିଆ ହୋଇ ପାରିଲା ।

ଏଇ ମଣିଷ ସବୁ ସହେ, ସବୁ କରିପାରେ, କେତେ ଭଳି ନୂଆରୂପ ଧରିପାରେ । ସବୁ ଆଖିରେ ଦେଖିଛନ୍ତି ମେହେନ୍ଦ୍ରପୁର ଗାଉଁଲି...

କିନ୍ତୁ ଅଧ୍ୟାପିକା ଆରାଧନାର ନୂଆରୂପ ଦେଖି ସେ ଚମକି ପଡ଼ି ନଥିଲେ ' ନିଁ, ନୂଆ କଳେବର ଧରିଛି । ନୂଆ ମଣିଷ ହୋଇଛି ଆରାଧନା ! ଗୋଟିଏ ଶରୀରରେ କେତେ ରୂପ !

ଯାଆ ଶୁଖିଯାଇଛି !

ଆଉ ସେଇଥିପାଇଁ କିଏ କେତେ କଥା କହିଯାଉଛନ୍ତି । ହେଲେ ମେହେନ୍ଦ୍ରପୁର ଗାଉଁଲି ଭାବନ୍ତି ଅଧେ ସତ ଓ ଅଧେ ମିଛ କି ସବୁଯାକ ମିଛ ହୋଇଥିବ କେଜାଣି !

କିନ୍ତୁ ..

ପ୍ରଥମ ସ୍ୱାମୀର ମୃତ୍ୟୁର ଚାରିବର୍ଷ ପରେ ଯେତେବେଳେ ଶୁଭେନ୍ଦୁ ଦାଶ ସହିତ ଆରାଧନାର ଅକସ୍ମାତ ନିରାଡ଼ମ୍ବର ଭାବରେ ବିଭାଘର ହୁଏ, ସେତେବେଳେ ଆଉ କିଏ କଣ କହିଲେ ମଧ୍ୟ ଶୁଭାକାଂକ୍ଷିଣୀମାନେ ନିଃଶ୍ୱାସ ମାରିଥିଲେ !

ଆଉ ଆଖିରୁ ଲୁହ ଢାଳି ନିଃଶ୍ୱାସ ମାରିଥିଲେ ମେହେନ୍ଦ୍ରପୁର ଗାଉଁଲି... ସିଏ ଆରାଧନାକୁ ଭଲ ପାଆନ୍ତି...

ସୁନ୍ଦର ରୂପ ଅଭିଶାପ । ଭଲ ହେଲା । ଲୋକେ ସଜମାଛିରେ ପୋକ ପକାନ୍ତି । ଲୋକନିନ୍ଦା ମରଣରୁ ବଳି । ଦାଣ୍ଡ ମୁଣ୍ଡକୁ ଯାଇ ଗୁଞ୍ଜରଣ କରିଦ । କିଏ କେତେ କଥା କହିବେ । ଆମ ଏ ସମାଜରେ ରୂପସୀ ସ୍ତ୍ରୀ ପୁରୁଷର ବିନା ସହାୟତାରେ ଚଳିପାରିବନି ! ଗୋଟାଏ ଭଲ ପାଇବାକୁ ଜାବୁଡ଼ିଧରି ଆରାଧନା ହୁଏତ ପଛ ଯନ୍ତ୍ରଣାକୁ ଭୁଲିଯାଇ ପାରିବ ।

କେଜାଣି କାହିଁକି ମେହେନ୍ଦ୍ରପୁର ଭଉଜ ଘରୁଥିଲେ ଶୁଭେନ୍ଦୁଦାଣ ଆରାଧନାକୁ ଆଶ୍ରୟ ଦେଲ । କରପଦ ଆଶ୍ରୟ···ଏମିତ ଗୋଟିଏ ଘଟଣା ଯଦି ଘଟି ନଥାନ୍ତା ଆରାଧନା ଜୀବନରେ, ତେବେ ହୁଏତ ତା ଅଧ୍ୟାପିକା ଜୀବନଟା ମଧ୍ୟ ଆହୁରି ଦୁଃଖଦାୟକ ହୋଇଥାନ୍ତା···

କିନ୍ତୁ···

ପୁଣି କିନ୍ତୁ କାହିଁକି ?

ପୁଣି ପ୍ରଶ୍ନ ଅଛି ଯେ, ନିର୍ମମ ପ୍ରଶ୍ନବାଚୀ···

ସେ "ଦୀପକ" ।

ଆରାଧନାର ପ୍ରଥମ ପକ୍ଷର ସନ୍ତାନ···

ତା'ର କଣ ହେବ ?

ସବୁରି ମନରେ ଏହି ପ୍ରଶ୍ନ, ଦୀପୁର କ'ଣ ହେବ ?

ଦୀପୁ ପାଇବ "ସାବତ ବାପା" !

ସାବତ ବାପା—ସାବତ ବାପା—ସାବତ ବାପା···

କେତେ ଅସହ୍ୟ ଏ କଥାଟା । ଏ କଥାଟା କାନକୁ ଯେ ଏକଦମ୍ ନୂଆ ଶୁଣାଯାଉଛି !

ଏ କଥା କାନରେ ଏକଦମ୍ ଖଟ୍ କିନା ଫୋଡ଼ା ହୋଇ ଯାଉଛି ।

ଆମ ସମାଜରେ "ସାବତ ବାପା !!"

୨୬ ବର୍ଷର ରୂପସୀ ଅଧ୍ୟାପିକା ଆରାଧନା ! ତାକୁ ଆପଣାର କରିବାରେ କାହାର ଆପତ୍ତି ବାହାଦୁରୀ ନାହିଁ ଏକଥା ସମସ୍ତେ ସ୍ୱୀକାର କରିବେ···

ଯାହାକୁ ଚାହିଁଲେ ଆଖି ଫେରେଇ ହୁଏନା, ଯାହାକୁ ଧରିବାକୁ ବାର ବାର ବହୁ କୁଣ୍ଠିତ ହାତ କୋଟି ଆଗ୍ରହରେ ଆଗେଇ ଆସିଛି, ଯେ ବହୁ ପୁରୁଷର ସ୍ୱପ୍ନ, ସେହି ଆରାଧନାକୁ ପତ୍ନୀ ରୂପେ ବରଣ କରିବାରେ ବାହାଦୁରୀ କ'ଣ ? ପତ୍ନୀ ରୂପେ ବରଣ କରିବା ଯେ ପରମ ସୌଭାଗ୍ୟ···

ଏ କ୍ଷେତ୍ରରେ କୃତ୍ତିକାପ୍ତ ଶୁଭେନ୍ଦୁର ସୌଭାଗ୍ୟକୁ ସମସ୍ତେ ଯେ ଈର୍ଷା କରିବେ ସନ୍ଦେହ ନାହିଁ ।

କିନ୍ତୁ···

ଶୁଭେନ୍ଦୁ ପ୍ରତି ପ୍ରଚ୍ଛନ୍ନ ଈର୍ଷାରେ ଜର୍ଜରିତ ଆରାଧନାର ପାଣିପ୍ରାର୍ଥୀମାନେ ମଧ୍ୟ ଏହି ଉତ୍କଟ ପ୍ରଶ୍ନବାଚୀକୁ ଚାହିଁ ହସି ଯାଉଛନ୍ତି ।

ଦୀପକର କ'ଣ ହେବ ?

ଏହି ଦୀପକ ବ୍ୟବଧାନ ସୃଷ୍ଟି କରିଛି । ପ୍ରତିବନ୍ଧକ ଦୀପକର ସ୍ଥିତି !

'ଦୀପକ୍'—ଯାହାର ଉତ୍ତର ଦେଇ ନ ପାରି ସ୍ୱତନ୍ତ୍ର ହୋଇ ଆଗ୍ରହୀ ହାତ ବଢ଼ାଉ ବଢ଼ାଉ ସେମାନେ ଆଡ଼େଇ ହୋଇଯାଇଛନ୍ତି । ଅଥଚ ସେହିମାନେ; ଆରାଧନାର ପାଣିପ୍ରାର୍ଥୀମାନେ ଆଶ୍ଚର୍ଯ୍ୟ ହେଲେ, ଶିହରିତ ହେଲେ । କୁତ୍ସା ରଟନା କଲେ ଆଉ ତା ପରର ଘଟଣା ଦେଖିବା ପାଇଁ ଉତ୍କଣ୍ଠାର ସହ ଚାହିଁରହିଲେ ।

କ'ଣ ହେବ ଦୀପକର ???

ଅଥଚ ଆନନ୍ଦରେ ଉତ୍ଫୁଲ୍ଲ ହୋଇ ଦେଖିଲେ ହିତାକାଂକ୍ଷୀମାନେ ଆରାଧନାର ନୂଆ ଜୀବନକୁ ।

ଦେଖିଲେ ମେହେନ୍ଦିପୁର ଭଉଜ ଆଖିରେ ଲୁହ, ଓଠରେ ହସ । ଭଲ ଲାଗିଲା ତାଙ୍କୁ ଦେଖି ରେକ୍ସାରେ ଶୁଭେନ୍ଦୁ କୋଳରେ ବସିଛି ଦୀପକ୍ ।

ଆରାଧନାର ଆଉ ଏକ ରୂପ......

ଲାଲ ଶାଢ଼ୀ ଆଉ ମଥାର ଦାଉ ଦାଉ ସିନ୍ଦୁରରେ ଆପଣାର କେତୋଟି ବର୍ଷ ବେଶ୍ ଖୁସିରେ ହଜେଇ ଦେଇ ପାରିଛି ତ ସେ !

ଜୀବନଶ୍ଳେଟ୍‌ରୁ ଭୁଲ ଅଙ୍କ ପରି ଲିଭେଇ ଦେଇପାରିଛି ତ ବିଗତ ଦିନର ସ୍ମୃତିକୁ !

ହଜେଇ ଦେଇଛି ? ସତରେ ? ପୂରାପୁରି ?

କେ—ଜା—ଣି

ତେବେ ଆଖିକଣରେ ସେ ଦାଗ ?

ଗୁଡ଼ିର କଟାଦାଗ ?

ଯଦି ହଜେଇ ଦେଇ ପାରିଛି, ତେବେ ଏ ପାର୍ଥକ୍ୟ ବୁଝିବାକୁ ପଡ଼ିଲା କାହିଁକି ଦୀପକ୍‌କୁ ???

କାରଣ ସେ ଦୀପକ ମିଶ୍ର । ଦୀପକ୍ ଦାଶ ନୁହେଁ......

କିନ୍ତୁ କାହିଁକି ??

ଦୀପକ୍‌କୁ କ'ଣ ପୋଷ୍ୟପୁତ୍ର କରିପାରି ନଥାନ୍ତା ଉଦାରମନା ଶୁଭେନ୍ଦୁ ଦାଶ; ଯିଏ ଏତେ ଆପଣାର କରିପାରିଥିଲା ଅନ୍ୟର ସନ୍ତାନକୁ ?"

କିନ୍ତୁ ଆଶ୍ଚର୍ଯ୍ୟ !!!

ନା— ନା—ଦୀପକ ଦାଶ ନୁହେଁ ସେ ଦୀପକ ମିଶ୍ର । ପିତା ସ୍ୱର୍ଗତଃ "ଅମରେନ୍ଦ୍ର ମିଶ୍ର" ଗମ୍ଭୀର ଗଳାରେ ବ୍ୟକ୍ତ କରିଥିଲେ ଶୁଭେନ୍ଦୁ ଦାଶ ପ୍ରଧାନ-ଶିକ୍ଷକଙ୍କ ଆଗରେ । ସେଦିନ ନୂଆହୋଇ ସ୍କୁଲରେ ଦୀପକର ନାମ ଲେଖା ହେଉଥିଲା......

ନା—ମତାମତ ଲୋଡ଼ନାହାନ୍ତି ଶୁଭେନ୍ଦୁ !

ଉପରେ ପଢ଼ି କହୁନାହାନ୍ତି କିଛି······

ତେବେ ଶୁଭେନ୍ଦୁ କ'ଣ ଆରାଧନାର ମନ କଥା ଜାଣିପାରିଥିଲେ ?

ଆରାଧନା କ'ଣ ଏଇଆ ଚାହିଁଥିଲା······

ଶୁଭେନ୍ଦୁ ମହାନ୍······

ଆରାଧନା ଆଖିରୁ ଲୁହ ଝରୁଛି ।

ପ୍ରଶ୍ନ ତୋଳନ୍ତି ଶୁଭେନ୍ଦୁ କାହିଁକି ଏ ଶୋକ ?

ଉତ୍ଥାପନ କରନ୍ତି ସେ ଅଧ୍ୟାପ୍ପ··· ଶୁଭେନ୍ଦୁ ମନସ୍ତତ୍ତ୍ୱ ଅଧ୍ୟାପକ ।

ଆନନ୍ଦ ନା ହତାଶା, ନା ଭୟ ନା ମଧୁର ରୋମନ୍ଥନ ??

ବାରିହୁଏନା ଏମାନଙ୍କ ରୂପ···

ଏମାନେ ମିଶାମିଶି, ଗୋଲାଗୋଳି । ଚିହ୍ନେଣ କରି ହୁଏ ନାହିଁ କି ପ୍ରତ୍ୟାଖ୍ୟାନ କରି ହୁଏ ନାହିଁ । କେବଳ ସେ ଅନୁଭୂତ । ନାରୀ ଜୀବନ ଯନ୍ତ୍ରଣା-ବହୁଳ ଜୀବନ ! ଏଥିକରେ ଯଦି ପ୍ରଶ୍ନବାଚୀ ସବୁ ଯାଇଥାଆନ୍ତା ???···

କିନ୍ତୁ ପୁଣି ଦ୍ୱିତୀୟ ପ୍ରଶ୍ନ ଉଠେ—ଯେତେବେଳେ ଦୀପକ ତାର ସାନ ଭାଇ ଜନ୍ମ ହୋଇଛି ବୋଲି ଯାଇଯାକ ବଡ଼ ବଡ଼ ଲଡ୍ଡୁ ଧରି ବାଣ୍ଟେ । ଆଉ ଅସ୍ପଷ୍ଟ ପାଟିରେ କଣ ଘରେ ଶୁଏ···

"ତେବେ କଣ ହେବ ?" ପ୍ରଶ୍ନ କରନ୍ତି ଉଦ୍‌ବେଳିତ ଚିତ୍ତରେ ମେହେନ୍ଦିପୁର ରାଜକ ନିଜକୁ; ନିଜ ସ୍ୱାମୀକୁ ।

ଯେତେବେଳେ ହାସପାତାଳରେ ଅନେକ ସ୍ୱତଃଯାଏ ଉଜାଗର ରହି ଆରାଧନାର ଶେଯ ପାଖରେ କ୍ରମାଗତ ବସି ରହିଥିବା ମଣିଷର ମୁହଁଟାକୁ ଦେଖିବାକୁ ଆହୁରି ଅନେକଙ୍କର ଲୋଭ ହୁଏ ।

ସେ ମୁହଁ ଶୁଭେନ୍ଦୁ ଦାଶର ମୁହଁ ।

କ'ଣ ଭାବୁଛି ଶୁଭେନ୍ଦୁ ନାମଧାରୀ ଏହି ଲୋକଟା ?

ଏଥର ଦୀପକ ଭୂମିକା କ'ଣ ହେବ ?

ଆଶଙ୍କାର କଳାଛାଇ ବି ଫୁଟିଉଠେ ବାନ୍ଧବୀମାନଙ୍କ ମୁହଁରେ··· ହିତାକାଂକ୍ଷୀମାନଙ୍କ ମୁହଁରେ !

ଦୀପକୁ ଗେହ୍ଲା କରୁ କରୁ ମେହେନ୍ଦିପୁର ରାଜକଙ୍କ ମୁହଁରୁ ବି ଅଜାଣତାରେ ଖସିପଡ଼େ—"ବିଚରାରେ"···

ପ୍ରତିଦ୍ୱନ୍ଦୀମାନେ ଶୁଭେନ୍ଦୁକୁ ନିରୀକ୍ଷଣ କରନ୍ତି······

"ଶୁଭେନ୍ଦୁ ବଦଳିବନି ତ ! ଯେତେହେଲେ ସାବତ ବାପା ସେ !"

ସେମାନେ ଆଶ୍ଚର୍ଯ୍ୟ ହୋଇ ଦେଖନ୍ତି ଦୀପୁ ଗ୍ରେଟ୍ ସୁବ୍ରତକୁ ବସେଇ ନିଜସ୍ୱ ଦର୍ପରେ ସାଇକେଲ ଚଲାଉଛି । ସେଇ କଥା ବୁଝି ତା ଗାଲରେ ଚୁମା ଦେଉଛି ।

କଲେଜରୁ ଫେରି ଆରାଧନା ଓ ଶୁଭେନ୍ଦୁ ଏ ଲୋଭନୀୟ ଦୃଶ୍ୟ ଦେଖନ୍ତି । ତୃପ୍ତିର ଆଭା ପ୍ରତିଫଳିତ ହୁଏ ସେମାନଙ୍କ ମୁଖରେ । ସେମାନେ ଦୃଷ୍ଟି ବିନିମୟ କରନ୍ତି ପରିତୃପ୍ତିର ଝଲକ !

ପଡ଼ୋଶୀମାନେ ଜାଣନ୍ତି, ବୁଝନ୍ତି, ମାନନ୍ତି !

ନା—ସିଏ ପର ନୁହେଁ ଦୀପକ ।

ଦୀପକର ସାବତ ବାପା ଅଲଗା । ସେ ମନୀଷ ।

ବୁଦ୍ଧିମାନ ଦୀପକର ଅକ୍ଳାନ୍ତ ଶ୍ରମରେ ମୋଟାବୁଦ୍ଧିଆ ସୁବ୍ରତ ପ୍ରଥମ ଶ୍ରେଣୀ ପାଇଲେ ଦୀପକକୁ ଆଗ୍ରହରେ ଟାଣି ନେବ ଯେ ଶୁଭେନ୍ଦୁ, ଆଉ ଏଥିରେ ଆରାଧନାର ଆଖିରେ ଜମିଥିବା ଲୁହ ଯେ ଏକା ସାଙ୍ଗରେ ଝର ଝର ହୋଇ ଝରିପଡ଼ିବ । ଏଥିରେ ଆଶ୍ଚର୍ଯ୍ୟ ହେବାର କଣ ଅଛି ???

ଏ ଲୁହ ଖୋଲ ଆନନ୍ଦର, ଏକଥା ଆରାଧନାର ପରିତୃପ୍ତ ବଦନଟାକୁ ଦେଖି କିଏ ବା ନ କହିବ କାହିଁକି ? ବିଶ୍ୱାସ ନ କରିବାର କ'ଣ ବା କାରଣ ଥାଇପାରେ ?

ହଁ—ଏହିଭଳି ଗୋଟିଏ ଚମତ୍କାର ସଂସାରର ସ୍ୱପ୍ନ ଦେଖି ଗର୍ଭବତୀ ଆରାଧନା ଯଦି କଳ୍ପନା କରିଥାଏ ଯେ ସେ ଶାନ୍ତିରେ ଶୁଭେନ୍ଦୁ ହାତରେ ଦୁଇଟି ସନ୍ତାନକୁ ଛାଡ଼ିଦେଇ ଚାଲିଯିବ ପରିପୂର୍ଣ୍ଣ ଚିତ୍ତରେ ତେବେ ???

ନା !

କିନ୍ତୁ ଯାଇପାରିଲା ନାହିଁ ଆରାଧନା ।

ଅଥଚ ଚାଲିଗଲେ ସୁସ୍ଥ ସବଳ ଶୁଭେନ୍ଦୁ ଦାଶ ।

ଏ ଦୃଶ୍ୟ ବି ଦେଖିଲେ ମେହେନ୍ଦିପୁର ଗାଁର ଲୋକ ।

ନଜର ପାଉନି ଦିନଗୁଡ଼ାକ ପୁଣି ଅନ୍ଧକାର ଭିତରେ ହଜେଇଦେଇ ପୁଣି ଆରାଧନା ଉପସ୍ଥିତ ହେଲା । ଏକାବେଳେ ନିର୍ଘଣ୍ଟ ଭୋଜନ, ହବିଷାନ୍ନ ! ବିଧବାର ବେଶ ।

ଏଇ କେତୋଟି ଦିନ ଦୀପକ ଆରାଧନାକୁ ନୂଆ କରି ଦେଖୁଛି । ପ୍ରଶ୍ନ ପଚାରି ପାରୁନି । ଗ୍ରହଣ ବି କରିପାରୁ ନାହିଁ !

ଦୀପକ ପିଲା ନୁହେଁ, ସେ ଅଜ୍ଞ ନୁହେଁ, ସେ ଜାଣେ ଯଦିଓ ସେ ଶୁଭେନ୍ଦୁ ଦାଶର ଅର୍ଦ୍ଧେକ ସମ୍ପତ୍ତିର ଅଧିକାରୀ; ସେ ଶୁଭେନ୍ଦୁର ଆତ୍ମୀୟ ନୁହେଁ ।

ପ୍ରଗତଶୀଳ ଯୁବକ ଦୀପକ୍ ମାଆଁର ଦ୍ୱିତୀୟ ବିବାହକୁ ସ୍ୱାଭାବିକ ଦୃଷ୍ଟିରେ ଗ୍ରହଣ କରିଛି ।

ଯେତେବେଳେ ନିଜ ନାଆଁ ପଛରେ ମିଶ୍ର ବୋଲି ଲେଖିଛି ସେତେବେଳେ ବିଚଳିତ ହୋଇଛି ।

ପୂଜାସ୍ପଦଙ୍କର ବିବାହର ସମସ୍ତ ଆୟୋଜନ କରିଛି ଦୀପକ୍...

କିନ୍ତୁ...

ମୁଖାଗ୍ନି ଦେଇଛି ସୁବ୍ରତ, କ୍ରିୟା ଧରିଛି ସୁବ୍ରତ, ଟେଲିଗ୍ରାମ ଆସିଛି ସୁବ୍ରତ ନାଆଁରେ ।

ଶୁଭେନ୍ଦୁର ସନ୍ତାନ, ଆରାଧନାର ସନ୍ତାନ ସୁବ୍ରତ ଦାଶ ।

ଦୀପକ୍ ନୁହେଁ—ଦୀପକ୍ ନୁହେଁ—ଦୀପକ୍ ନୁହେଁ...

ତେବେ ଦୀପକ୍ କିଏ ?? କ'ଣ ତା'ର ଭୂମିକା ??

ହଠାତ୍ ବନ୍ଧୁ ବର୍ଗଙ୍କରେ ଦୀପକ୍ ନୂଆ କରି ଏ ପ୍ରଶ୍ନର ସମ୍ମୁଖୀନ ହୁଏ । ନିଜର ଭୂମିକା ସମ୍ପର୍କରେ ସଚେତନ ହୁଏ । ବିଦ୍ରୂପର କ୍ରୂର ହସ ଫୁଟି ଉଠେ ଦୀପକର ବୁଦ୍ଧିଦୀପ୍ତ ଶାଣିତ ଅଧରରେ...

ହୁଁ—ସୁବ୍ରତ ଜନନୀ ଆରାଧନା, ସୁବ୍ରତ ପିତା ଶୁଭେନ୍ଦୁଙ୍କ ମୃତ୍ୟୁରେ ଆଡ଼ମ୍ବର କରି କଠୋର ବୈଧବ୍ୟ ବ୍ରତ ପାଳନ କରୁଛନ୍ତି । ଚମତ୍କାର ! ଦୀପକ୍ ଅଧର ପ୍ରସାରିତ କରେ ' ଆପଣେ କୋଠରୀ ଭିତରେ ପଦଚାରଣେ କରୁ କରୁ ନିଜର ସ୍ୱଗତୋକ୍ତି ଶୁଣି ଚମକି ପଡ଼େ ଦୀପକ୍ !

ଛି—ଛି—ଏ କଣ କହୁଛି ଦୀପକ୍ ? ଏ ଅନ୍ୟାୟ ।

କିନ୍ତୁ...

ଦୁଇଟା ବିରୁଦ୍ଧ ଶକ୍ତିର ସଂଘର୍ଷ ଦୀପକର ଆତ୍ମସମ୍ମାନକୁ ଛିନ୍ନଭିନ୍ନ କରିଦିଏ । ସେ ଆଶ୍ରୟପାଇଁ ହାତ ବଢ଼ାଏ । ଆଶ୍ରୟ ?

କିନ୍ତୁ ଆଶ୍ଚର୍ଯ୍ୟ !!!

ଶୁଭେନ୍ଦୁର ମୃତ୍ୟୁ ପରେ ଜନନୀ ଆରାଧନାଙ୍କୁ ଯେମିତି ଚିହ୍ନି ବି ଚିହ୍ନିପାରୁନାହିଁ ଦୀପକ ! ସେ ଯେମିତି ଦୀପକ ନିକଟରେ ଏକ ପ୍ରଶ୍ନବାଚୀ, ଏକ ପ୍ରହେଳିକା, ଏକ ଗୋଲକଧନ୍ଦା !

ଡ୍ରଇଂ ରୁମ୍‌ରେ ଏବେ ସୁବ୍ରତ ପିତା ଶୁଭେନ୍ଦୁର ଫୋଟୋରେ ଝୁଲୁଛି କର୍ପୂରମାଳା । ପ୍ରମାଣ କରୁଛି ଶୁଭେନ୍ଦୁ ପତ୍ନୀ ଆରାଧନା । ପ୍ରତ୍ୟହ ପ୍ରତ୍ୟୁଷରେ ଓ ସନ୍ଧ୍ୟାରେ ଜଳୁଛି ଧୂପକାଠି । ଆଉ ପ୍ରଣାମ କରୁଛି ଶୁଭେନ୍ଦୁ ପୁତ୍ର ସୁବ୍ରତ ! ଆଉ ଦୀପକ୍ ବି ପ୍ରଣାମ କରେ ଯେ ତାର ପୂଜାସ୍ପଦଙ୍କୁ, କିନ୍ତୁ ସେ କରେ ପ୍ରଣାମ ତାର

ମାଆର ସ୍ୱାମୀଙ୍କୁ । ତାର ସାବତ ବାପାଙ୍କୁ । ପିତାଙ୍କୁ ନୁହେଁ । କଥାଟା ଯେ ନିର୍ମମ ସତ୍ୟ ।

ଚଉଦ ଦିନ କାଲି ନିତ ଆସୁଛନ୍ତି ମେହେନ୍ଦ୍ରପୁର ଘଉକ । ଦୀପକକୁ ଦେଖି ପୁଣି ସେ ପୁରୁଣା କଣ୍ଟାଟା କାହିଁକି କେଜାଣି ତାଙ୍କ ମନ ଭିତରେ ଫୋଡ଼ି ହୋଇ-ଯାଉଛି ।

ଶୁଭେନ୍ଦୁର ମୁହଁରେ ଏତେ ବେଶୀ ଭାଙ୍ଗ ପଡ଼ୁଛି ଦୀପକ ଯେ ତାହା ଦେଖି ସହି ପାରନ୍ତି ନାହିଁ ମେହେନ୍ଦ୍ରପୁର ଘଉକ ।

କେମିତି ଗୋଟିକୁ ପ୍ରଚ୍ଛନ୍ନ ଭୟରେ କଣ୍ଠନଳୀ ଅଣ୍ଟଉଠେ ଦୀପକର···

ଶୁଭେନ୍ଦି ଯ୍ତା ସଜାଉଛି ମାତ୍ର ଚଉଦ ଦିନ ମଧ୍ୟରେ କି ବିପୁଳ ପରିବର୍ତ୍ତନ ଘଟିଛି ଅନ୍ତଃରାଜ୍ୟରେ ଜାଣି ମଧ୍ୟ ଜାଣିପାରୁ ନାହିଁ ଦୀପକ୍ ।

ନିଜ ଅନ୍ତର୍ନିହିତ କଣ୍ଠସ୍ୱରରେ ମୁଠା ମୁଠା ଘୃଣା ଓ ଈର୍ଷା ଦେଖି ବିବ୍ରତ ହୋଇ ବାଧ୍ୟ ହୋଇ ନିଜକୁ ନିଜେ କହେ ଦୀପକ—ଅକୃତଜ୍ଞ—ନିମକହାରାମ୍—ବେଇମାନ୍—ତୁ ବେଇମାନି ! ଲଜ୍ଜା ନାହିଁ ତୋତେ !

ଦୀପକ ମିଶ୍ର ଜୀବନରେ ଶୁଭେନ୍ଦୁ ଦାଶ କ'ଣ କେବଳ ଗୋଟାଏ ଅପ୍ରିୟ ସମ୍ବୋଧନ ?

ସାବତ ବାପା ?

ଛି—ଛି—ଛି—

ସତ—ପୂରାପୂରି ସତ । ପ୍ରିଶ ବର୍ଷର ଦୀପକ । ବାପାଙ୍କ ବଂଶରେ ସାହାଯ୍ୟ କରିବାକୁ ଜଣେ ବି ନାହାନ୍ତି । ଅଜା ଆଈଙ୍କର ଅପ୍ରତ୍ୟାଶିତ ମୃତ୍ୟୁ, ସହାୟହୀନ, ସମ୍ବଳ-ହୀନ ଦୀପକ ନାମକ ବାଳକ କୁଆଡ଼େ ଥାଆନ୍ତା ଯଦି ଶୁଭେନ୍ଦୁ ନାମକ ଦୟାଳୁ ବ୍ୟକ୍ତି ଆସି ନ ଥାଆନ୍ତା ତା ଜୀବନରେ ???

ହେଉ ପଛେ ସାବତ ବାପାର ଭୂମିକା ନେଇ । ପ୍ରାଚୁର୍ଯ୍ୟ ମଧ୍ୟରେ ରହି ଏହିପରି ମଟରକାର୍ ଧଡ଼ ଦୁଉ ପାରୁଥାନ୍ତା ଦୀପକ ମିଶ୍ର ?

ସୁଶିକ୍ଷାର ସମସ୍ତ ସୁବିଧା ପାଇ ଖଡ଼ଗପୁରରୁ ଏମ୍. ଟେକ୍. କରି ବିଶ୍ୱବିଦ୍ୟାଳୟର ସର୍ବୋଚ୍ଚ ସମ୍ମାନ ନେଇ ଫେରିଆସି ପାରିଥାନ୍ତା କି ଏ ହେଉ ପଛେ ମେଧାବୀ ଛାତ୍ର ଦୀପକ ମିଶ୍ର ?

ତେବେ କହି ପାରିବେ କେବେ ଅନାଦର, ଅବହେଳା ଆଉ ଲାଞ୍ଛନା ପାଇଛି ସାବତ ବାପାଠାରୁ ?

ନା—ନା—ନା—ଅସମ୍ଭବ ।

ପାଇଛୁ ସାମାଜିକ ପ୍ରତିଷ୍ଠା, ସମ୍ମାନ, ଅଧିକାର । ବଞ୍ଚିବାର ସ୍ୱାଦ !

ତେବେ ?

ଘୃଣା, ଅନାଦର, ଅବହେଳା କରିବ ଏହି ମହାନ୍ ବ୍ୟକ୍ତିଙ୍କୁ ?

ନା—ନା—ଅକୃତଜ୍ଞ ନୁହେଁ ଦୀପକ ମିଶ୍ର ··

ଶୁଭେନ୍ଦୁ ଦାଶ ପ୍ରତି ଅତୁଟ ଭକ୍ତି ଏବେ ବି ସଂଚରିତ ତା ହୃଦୟର ଅଣୁ ପରମାଣୁରେ । ସେ ଚିର ନମସ୍ୟ—ପୂଜାସ୍ପଦ···

ହେଲେ ଖାନନଗରରେ ଦାଉ ଦାଉ ହୋଇ ଜଳୁଥିବା ଜୁଇ ଆଲୁଅରେ ପ୍ରଥମ ଥର ପାଇଁ ଏକ ବିରାଟ ବ୍ୟବଧାନ ଅନୁଭବ କଲା ଦୀପକ୍—ସେ ଜୁଇକୁ ଘୃହିଁ ଦାରୁଣ ବ୍ୟଥା ଅଭିମାନରେ ସେ ଘୁଞ୍ଚି ପଡ଼ିଲା···

ଏ ପ୍ରଣାମ ତାର ପିତା ପ୍ରତି ପ୍ରଣାମ ନୁହେଁ, ଏ ପ୍ରଣାମ ତାର ବନ୍ଧୁ ପ୍ରତି ପ୍ରଣାମ । ସୁହୃଦ ପ୍ରତି ପ୍ରଣାମ । ଶୁଭାକାଂକ୍ଷୀ ପ୍ରତି ପ୍ରଣାମ ! ହେ ବନ୍ଧୁ ବିଦାୟ ··

ଏ ଏକ ବିଚିତ୍ର ଯନ୍ତ୍ରଣା, ଭଦ୍ଭାବିହ ଓ ଅବ୍ୟକ୍ତ ଯନ୍ତ୍ରଣା·· ନିଜ ନାମ ପଛେ ମିଶ୍ର ଲେଖି ମଧ୍ୟ ସେ ଏପରି ଯନ୍ତ୍ରଣା କେବେ ଅନୁଭବ କରି ନଥିଲା । ଆଜି ଶୁଭେନ୍ଦୁ ଦାଶର ମୃତ୍ୟୁ ଅପୂର୍ବ ଯନ୍ତ୍ରଣାମିଶ୍ରିତ ଈର୍ଷା ସୃଷ୍ଟି କଲା ତାର ମନରେ···

କିନ୍ତୁ ସେ ପରର କଥା···

ତା ପରର ଗୋଟି ଗୋଟି ବାର ଦିନର ଘଟଣା ଯେ କ ବାରେଟି ଲୁହାକଣ୍ଟା ପୋଡି ଦେଲା ଅସହାୟ ଦୀପକର ଛାତିରେ ! ଦୀପକ ନିଜର ରୂପ ଦେଖି ଚମକି ପଡ଼ିଲା ! ତା ଆଖିରେ ଈର୍ଷା ଅପରିଚ୍ଛନ୍ନ ଈର୍ଷାର ଜ୍ୱଳନ ! ପରମହିତୈଷୀ ଶୁଭେନ୍ଦୁ ପ୍ରତି ଅତୁଟ ଭକ୍ତି···

ଅଥଚ ଆଶ୍ଚର୍ଯ୍ୟ···

ଆରାଧନା ସ୍ୱାମୀ ମୃତ ଶୁଭେନ୍ଦୁ ପ୍ରତି ଅହେତୁକ ପ୍ରଚ୍ଛନ୍ନ ଈର୍ଷା ! ଆଉ ଶୁଭେନ୍ଦୁ ପତ୍ନୀ ଆରାଧନା ପ୍ରତି ଖାଲି ଘୃଣା···ସ୍ତୁପୀକୃତ ଘୃଣା—ବିଷାକ୍ତ କୁତ୍ସିତ ସର୍ପ ପରି !

ଏଁ—ଚମକି ପଡ଼ିଲା ଦୀପକ, ଚବିଶ ବର୍ଷ ତଳେ ହରେଇ ଥିଲେ ଏକ ଜିପ୍ ଆକ୍‌ସିଡ଼େଣ୍ଟରେ ଦୀପକ ତାର ପିତା ଅମରେନ୍ଦ୍ର ମିଶ୍ରଙ୍କୁ ! ମାତା ଆରାଧନା ଆଜି ମୃତ ! ବିଷାଦ ଓ ଯନ୍ତ୍ରଣାର ପ୍ରତୀକ ଆରାଧନା, ସୁବ୍ରତ ମାଆ ଆରାଧନା, ଶୁଭେନ୍ଦୁ ପତ୍ନୀ ବିଧବା ହେଲେ । ଦୀପକର ପିତାଙ୍କ ପ୍ରତି ତାଙ୍କର ସମ୍ମାନ ନାହିଁ ! ବନ୍ଧୁ ଏ ସ୍ନେହ ନାହିଁ । ଦୀପକ ଅର୍ବାଚୀନ, ଅପାଂକ୍ତେୟ ! ପ୍ରଥମ ପ୍ରେମର ସ୍ୱାକ୍ଷର କୁଆଡେ ଅଲଗା ପରି ?···

କେଡେ ଘୋର ମିଥ୍ୟା ଓ ଛଳନାପୂର୍ଣ୍ଣ ଭକ୍ତି ! ନାରୀ ମାୟାବିନୀ !

ବିପର୍ଯ୍ୟସ୍ତ ଘରରେ ନିଜର ସୁନ୍ଦର ବାଳଗୁଡ଼ାକ ଟାଣିବାକୁ ଲାଗିଲା ଦୀପକ୍ ।

ଶୁଭେନ୍ଦୁ ଦାଶର ଦୟାର ଦାନ ପୁଣ୍ୟ ! ନା ଲୋଡ଼ା ନାହିଁ ଏ ଆଶ୍ରୟ । ପ୍ରଥମ ପ୍ରେମ ପ୍ରତି ସମ୍ମାନ ନାହିଁ ଆରାଧନାର, ସେହି ପ୍ରଥମ ପ୍ରେମର ଦାନ ଦୀପକ ଯେ ବର୍ତ୍ତମାନ ଆଶ୍ରିତ । ସେ ଆଡ଼େଇ ଯିବ । ହଁ—ଆଡ଼େଇ ଯିବ । ଦୀପକ୍ ମିଛ... ଦୀପକ ମାୟା । ଦୀପକ ଆରାଧନାର କେହି ନୁହେଁ ।

ଅଗ୍ନିଗୋଳକ ଭଳି ଦାଉ ଦାଉ ଜଳୁଛି ନେତ୍ରଯୁଗଳ । ସୁବ୍ରତ ଭାଇନାର ଏ ରୂପ ଦେଖି ବିଚଳିତ । କିନ୍ତୁ ଅଧିକ ବିଚଳିତ ଓ ଉଦ୍ବେଳିତ ହୋଇଛନ୍ତି ଆରାଧନା । ଅପରାଧିନୀ ପରି ସେ ନୀରବ ରହିଛନ୍ତି ।

ଶୁଭ୍ର ବସ୍ତ୍ରରେ ଆବୃତ ତନୁରେ କଣ ଅଶୁଚିର ଚିହ୍ନ ??

ପ୍ରତାରଣାର କାଳିମା ?

କହିବେ, କହିବେ ଆରାଧନା, ଯନ୍ତ୍ରଣାକୁ ନିଗାଡ଼ି ଦେବେ...

ପଚିଶ ବର୍ଷର ତରୁଣ ପୁତ୍ର ଦୀପକକୁ ମେଲି ଦେଖାଇବେ କୁଢ଼ଫଡ଼ା ହୋଇଥିବା ଦୁର୍ବଳ ହୃଦୟର କଣ୍ଟାଦାଗ !

କରିବେ ସଫେଇ ???

ଛି—ଥାଉ ଥାଉ !

ଦୀପକକୁ ଚିହ୍ନି ପାରନ୍ତି ଆରାଧନା । ଦେଖିପାରନ୍ତି ତାର ଜ୍ୱଳନ । ସେହି ଜ୍ୱଳନର ଦାହରେ ବୁଢ଼ୀ ହୋଇ ଯାଆନ୍ତି, ଭାଙ୍ଗି ପଡ଼ନ୍ତି, ଦୁର୍ବଳ ହୋଇ ଯାଆନ୍ତି.. ଆରାଧନା ନାମକ ନାରୀ । ମେହେନ୍ଦିପୁର ଧଳକ ଆସନ୍ତି ଦେଖନ୍ତି ଆରାଧନା ଭିତରର ଏ ଯନ୍ତ୍ରଣା । ମୁକ୍ତି ନ ପାଇଲେ ସେ ବୋଧହୁଏ ପାଗଳ ହୋଇଯିବେ ।

ଆଉ ଦୀପକ ଭିତରର ଯନ୍ତ୍ରଣା କିଏ କ'ଣ ଦେଖେ ?? କ୍ଷୋଭ, ଅଭିମାନ, ଈର୍ଷା, ସ୍ନେହ, ଅପାରଗତା ମିଶ୍ରିତ ଏକ ଅଦ୍ଭୁତ ଅବ୍ୟକ୍ତ ଯନ୍ତ୍ରଣା ଆହୁରି ହିଂସ୍ର କରେ ଦୀପକକୁ !! ମନର ଈର୍ଷୁକ ବ୍ୟାଘ୍ର ଗର୍ଜି ଉଠେ ପ୍ରବଳ ଆକ୍ରୋଶରେ...

ଓହୋ—ଏ ପ୍ରେମିକର ମୃତ୍ୟୁର ଆଘାତ ! ଧନବାନ୍ ସ୍ୱାମୀର ଅଭାବଜନିତ ଖେଦ । ହୁଁ ହେବ ତ !

ଦୀପକର ଅପାଂକ୍ତେୟ ଅବାଞ୍ଛିତ ପିତା ଅମରେନ୍ଦ୍ର ପାଇଁ ଶ୍ରେଷ୍ଠ ପ୍ରୀତି ଦୀପାଳିଟିଏ ଜଳୁଛି ଆରାଧନା ଅନ୍ତରରେ । ଜୀବନସ୍ରୋତରୁ ଭୁଲ ଅଙ୍କ ପରି ସେ ଲିଭାଇ ଦେଇ ପାରିଛନ୍ତି ସେ ଅଧ୍ୟାୟକୁ ।

ଆକ୍‌ସିଡ଼େଣ୍ଟ ନା···

ସେ ବବାହଟା ତେବେ ଆକ୍‌ସିଡ଼େଣ୍ଟ···ଦୁର୍ଘଟଣା···

ଦୀପକ୍ ମିଶ୍ର ସେ ବୈବାହକ ଦୁର୍ଘଟଣାର ନ୍ରଷ୍ଟକ !

ରାତି ଘନେଇ ଆସେ । ଅନ୍ଧକାର ଜମିଯାଏ ଅଥଚ ଦୀପକ ଫେରେ ନାହିଁ ।

ଆରାଧନା ଚଷମା ଆଖିରେ ବହି ପଢ଼ିବାର ପ୍ରୟାସ କରନ୍ତି । ପାରନ୍ତି ନାହିଁ । ଘଡ଼ିକୁ ଚାହାନ୍ତି, ଦୀପକ ଫେରନି ଯେ ! ଏତେବେଳ ଯାଏ ' ମନ ହୁଏ ପାଖକୁ ଡାକନ୍ତେ । ଯେମିତି ଡାକୁଥିଲେ ପିଲାଦିନେ—"ଦୀପୁ, ଏ ଦୀପୁ !" ସ୍ୱରରେ ତାଙ୍କ ଧରନ୍ତେ । ପାରନ୍ତି ନାହିଁ, କବାଟଟା ବନ୍ଦ ହୋଇଯାଏ । ତାଲି ପଡ଼ିଯାଏ । ଜାଣି ଜାଣି ରାତିଟା ବିତେଇ ଦିଅନ୍ତି ଆରାଧନା । ଓଠ ଦଫାଳ ଥର ଉଠେ । ଆରାଧନା ମୂକ ହୋଇ ଯାଆନ୍ତି । ଗମ୍ଭୀର ହୋଇଯାନ୍ତି ।

ଶେଷରେ ଆସେ ଦୀପକ୍ । ଅର୍ଦ୍ଧରାତିରେ ସେ ମଦ୍ୟପାନ କରି ଫେରେ ! ବକ୍ଷିପ୍ତ ଚିତ୍ତ · ସବୁ ଦେଖି ନ ଦେଖିବାର ଛଳନା କରନ୍ତି ଆରାଧନା । ସତେ କ'ଣ ଯନ୍ତ୍ରଣାର ଉପଶମ ହୁଏ ???

ପ୍ରାପ୍ତାପର ସବୁ ଦେଖି ମଧ୍ୟ ଅପସରି ଯାଆନ୍ତି ଆରାଧନା !

ଦୀପକ୍ ଯନ୍ତ୍ରଣାରେ ଛଟ ପଟ ହୁଏ । ସେ ବରଦାସ୍ତ କରି ପାରିବ ନାହିଁ ଶୁଭେନ୍ଦୁ ପତ୍ନୀର ସ୍ଥିତିକୁ···

ସହ୍ୟ କରି ପାରିବ ନାହିଁ ଶୁଭେନ୍ଦୁ ପୁଅ ସୁବ୍ରତର ସାନ୍ନିଧ, ଉପସ୍ଥିତି ! ପିତୃ ଅପମାନ ସେ ସହ୍ୟ କରି ପାରିବ ନାହିଁ···

କାହିଁ ଅମରେନ୍ଦ୍ର ନାମ ତ କେହି ଉଚ୍ଚାରଣ କରୁନାହାନ୍ତି ! ସମସ୍ତଙ୍କ ମୁହଁରେ ଗୋଟିଏ କଥା—"ଶୁଭେନ୍ଦୁ ଦାଶ ଚମତ୍କାର ଲୋକ ଥିଲେ ।"

ଶୁଭେନ୍ଦୁ ଦାଶର ଦିଅଁ ଦାନକୁ ସେ ସ୍ୱେଚ୍ଛାରେ ତ୍ୟାଗ କରି ଚାଲିଯିବ ଏ ଭୟାବହ ପରିବେଶ ମଧ୍ୟରୁ ।

ସେ ହଜିଯିବ ଚିରଦିନ ପାଇଁ । ବିରାଟ ଏ ଜୀବନ ଯନ୍ତ୍ରଣାଳୀ !

ନିଷ୍ଫଳ ପ୍ରତିମା ପରି ଦିନ ପରେ ଦିନ ଅନାହାରରେ ବିତାଇ ଦିଅନ୍ତି ଆରାଧନା । କିନ୍ତୁ ସାହସ କରି ପ୍ରଶ୍ନ ପଚାରି ପାରନ୍ତି ନାହିଁ ଆପଣାର ଯୋଗ୍ୟ-ପୁଅକୁ । ଅପରାଧବୋଧରେ ଆପେ ଓଠ ବନ୍ଦ ହୋଇଯାଏ । ଖାଲି ଦୁଇ ଆଖିରୁ ଝରେ ଅଭିମାନ ଓ ଅନୁଶୋଚନାଜନିତ ଲୁହ । ବାରମ୍ବାର ଦୀପକର ଦୁଆର ମୁହଁକୁ ଆସି ଫେରିଯାଆନ୍ତି ଆରାଧନା । କହି ପାରନ୍ତିନି ।

ଦୀପକ ପରମ ଉପକାରୀ ବନ୍ଧୁ ଶୁଭେନ୍ଦୁ ଦାଶ ଉଦ୍ଦେଶ୍ୟରେ ପ୍ରଣାମ କରି ଲେଖେ ଶେଷ ଚିଠି ।

ସେ ଆଜି ଚାଲିଯିବ । ଟିକେଟ କରିଛି ଭୋର ଗାଡ଼ିରେ ସେ ଚାଲିଯିବ । ଏ ବନ୍ଦ ଘରର କବାଟ ମଧ୍ୟରେ ତାର ଶ୍ୱାସ ରୁଦ୍ଧ ହୋଇ ଯାଉଛି ଯେ !

ରାତି ଅନେକ ହେଲାଣି ଅଥଚ ଆଲୁଅ ଜଳୁଛି ଆରାଧନା ଘରେ । ଓ ଆଜି ତାଙ୍କର ଏକାଦଶୀ । ଜଳ ସ୍ପର୍ଶ କରିବେନ ଆରାଧନା ! ଆଡ଼ମ୍ବର । କାହିଁ ଅମରେନ୍ଦ୍ର ପାଇଁ ଏକାଦଶୀ କେବେ କରିଛନ୍ତି କି ଆରାଧନା ?

ଅଥଚ ଦୀପକ ଜାଣେନା ଆଜିକୁ ଚାରିଦିନ ହେଲା କିଛି ଖାଇ ନାହାନ୍ତି ଆରାଧନା ।

ସୁବ୍ରତର ଶତ ଅନୁନୟ ଅନୁରୋଧକୁ ଉପେକ୍ଷାକରି ସେ ଘରେ ପଶି ନାହିଁ ଦୀପକ୍ । ପ୍ରୟୋଜନ ନାହିଁ ମଧ୍ୟ !

ଆରାଧନାର ଧନ ଅଛି, କୋଠା ଅଛି, ଚାକର ଅଛି, ଆଉ ସୁବ୍ରତ ଅଛି । ପ୍ରତିଷ୍ଠିତ ମୃତ ସ୍ୱାମୀଙ୍କର ଖ୍ୟାତି ଅଛି । କଣ ନାହିଁ ତାଙ୍କର ?

ଆଉ ଦୀପକର କିଛି ନାହିଁ, କେହି ନାହିଁ ।

ସେ ଏକ ଦୁର୍ଘଟଣାର ସାକ୍ଷର । ସେ ଲଭିଇ ଦେବ ସେ ଅଧ୍ୟାୟ । ଲଭିଯାଉ ସେ ଶେଷ ଚିହ୍ନ—ସେ ଅଶୁଭ ସଂକେତ ଆରାଧନା ଜୀବନରୁ ।

× × ×

ଏଇ ଚିଠିଟି ରଖିଦେଲା ପରେ ତାର ଛୁଟି । ଏଥର ଭାଗ୍ୟ ପରୀକ୍ଷା ।

× × ×

ପାହାନ୍ତିଆ ତନ୍ଦ୍ରାରେ ସ୍ୱପ୍ନ ଦେଖି ହଠାତ୍ ଚମକିଉଠେ ଦୀପକ୍ ! ସୁବ୍ରତର କରୁଣ କାନ୍ଦଣା ବାଜେ କାନରେ—"ଭାଇନା, ଭାଇନା—ମାଆ—ମାଆ ।"

ହଠାତ୍ ଉଠିପଡ଼ି ସ୍ୱପ୍ନରେ ଛୁଟିଲା ପରି ମାଆଙ୍କ ଶୋଇଲା ଘର ଭିତରକୁ ମାଡ଼ିଆସି ଭୂତ ଦେଖି ଚମକି ପଡ଼େ ଦୀପକ୍ !

ଦୂରରୁ ଝରେ ମାଆ—ମାଆ ଗୋ···ମାଆ ମୋର !

ଡାକୁଛି; ଡାକୁଛି କେବେ ଏ ଡାକ ଶୁଭେନ୍ଦୁର ମୁଖୁପରେ ସେ ?

କେତେ ଆକାଂକ୍ଷିତ ଏ ଡାକ । ଏଇ ଡାକ ଶୁଣିବା ପାଇଁ କେତେ ରାତି ଉଜାଗର ରହି ପୃଷ୍ଠା ପରେ ପୃଷ୍ଠା ପଢ଼ି ଚାଲିଛନ୍ତି ଆରାଧନା ! ଆହା ଆଜି କିନ୍ତୁ ଶୁଣି ପାରୁନାହାନ୍ତି । ଆଉ ଶୁଣି ପାରିବେ ନାହିଁ । ମାଆର ଗୋଡରେ ଲୋଟିପଡ଼ି

ଦୁଇହାତରେ ଆରାଧନାର ନିଥର ନିସ୍ତବ୍ଧ ତନୁଲତାକୁ ଦୀପକର ଏକାନ୍ତ, ଏକମାତ୍ର ଆଶ୍ରୟ ସ୍ଥଳକୁ ବାରବାର ସାଉଁଟି ପକାଏ ଦୀପକ ମିଶ୍ର—ମାଆ—ମାଆ ଗୋ—ମାଆ ମୋର !

କିଛି କ'ଣ ଅନୁଭବ କରି ପାରନ୍ତି ନାହିଁ ଆରାଧନା ?

ଅଟକି ଯାଏ ହାତ ବୁଧବାର ଏକମାତ୍ର ଅଳଙ୍କାର ସରୁଚେନ୍ ଭିତରେ !

ଛାତିରେ ଛପିଥିବା ସୁଦୀର୍ଘ ଲକେଟକୁ ଜାବୁଡ଼ି ଧରେ ଦୀପକ୍ !

ଲୁହଧୂଆ ଆଖିରେ ଗୃହେଁ, କାହାର ଏ ଫଟ ??

ଦୀପୁର ? ଦୀପକ୍ ମିଶ୍ରର ? ତାଙ୍କ ପ୍ରଥମ ସନ୍ତାନର ?

ନା—ନା—ନା—

ତେବେ—ତେବେ ଏ କିଏ ?

ନାମ ସ୍ୱାକ୍ଷର ଅମରେନ୍ଦ୍ର ମିଶ୍ର ।

ଏ ଫଟ ଆରାଧନା ସ୍ୱାମୀ ଅମରେନ୍ଦ୍ରର ।

ଅମରେନ୍ଦ୍ର ମିଶ୍ରଙ୍କୁ ଦୀର୍ଘ ୨୦ ବର୍ଷକାଳ ଛାତିରେ ଲୁଚାଇ ରଖି ଆସିଛନ୍ତି ଦୀପକ୍ ଜନନୀ ଆରାଧନା !

ପ୍ରଥମ ପ୍ରେମର ପ୍ରତୀକ···

ଯନ୍ତ୍ରଣାର ପ୍ରତୀକ···

ତେବେ ? ତେବେ ? ତେବେ ?

ବନ୍ଦଘରର କବାଟଟା ଅଗ୍ନିକ ପବନରେ ଫିଟିଗଲା ।

ଅଜସ୍ର ପ୍ରଶ୍ନବାଚୀର ଅଗ୍ନିକ ଧକ୍କାରେ ପାଗଳ ହୋଇ ଆପଣାର ଚଟି ଓ ମ ଆର ହାତଲେଖା ଚଟି ଖୋଜିବାକୁ ଯାଇ ଦୀପକ୍ ବିପର୍ଯ୍ୟସ୍ତ କରି ପକାଏ ଶେଯକୁ, ତକିଆକୁ ଏବଂ ବିଛଣା ଗୃଦରକୁ···

ଖସିପଡେ ସୁନ୍ଦର ଫ୍ରେମ ଫଟ; ଦୀପକର ଅବିକଳ ପ୍ରତିଛବି ତାର ବାପାଙ୍କର ତରୁଣ ବୟସର ଫଟ···

ଆକ୍‌ସିଡେଣ୍ଟର ରକ୍ତାକ୍ତ ଦାଗ ଛାତିରେ ବହନ କରି ଅନୁକ୍ଷଣ ଜଳୁଥିଲା ଆରାଧନା···ଛାତି ତଳର କଳା ଦାଗ କିଏ ଦେଖିଲା···

ଅଥଚ···

ହଠାତ୍ ଡାକ୍ତରଙ୍କ ସ୍ୱର କାନରେ ବାଜିଲା, "ଦୁର୍ବଳତାଜନିତ ହାର୍ଟଫେଲ୍ ଶୁଭେନ୍ଦୁ ବାବୁଙ୍କ ମୃତ୍ୟୁରେ ଭାଙ୍ଗି ପଡ଼ିଥିଲେ ଆରାଧନା ଦେବୀ ।"

ଦୀପକ୍ ମିଶ୍ର ଏକାନ୍ତ ବ୍ୟାକୁଳ ଭାବରେ ସୁବ୍ରତ ଦାଶର ନିର୍ମମ ଅନ୍ଧାରୀ କୋଠରୀକୁ କୋଳରେ ଚାପିଧରି ଚିତ୍କାର କରି କାନ୍ଦି ଉଠିଲା···



## ● ମୃଗତୃଷ୍ଣା

ଚଣ୍ଡୀ ମନ୍ଦିର, ଏଇଠି ଉଜାଡ଼ି ଦିଏ ଜ୍ଞାନଗର୍ବୀ ମଣିଷ ଆପଣାର ସବୁ ଅଭିମାନ । ନିରୋଳାରେ ସବୁ ଅଭିଯୋଗ, ହାହାକାର ଆସି ସ୍ତୂପାକାରରେ ଜମାହୁଏ ଚରଣର ଦ୍ରୁତ ଦ୍ରୁତରେ ଦ୍ରୁତରେ···

ଟିକିଏ ଶାନ୍ତି —

ଅସହାୟ ମଣିଷ ବଞ୍ଚିବା ପାଇଁ ପାଥେୟ, ଚଳପଥର—

ସାନ୍ତ୍ୱନାର ପୀଠସ୍ଥଳୀ···

ମାଆଙ୍କର କରୁଣା···

ବିନ୍ଦୁ ବିନ୍ଦୁ ଅବିଶ୍ୱାସ ସିଞ୍ଚିଦିଏ ଭକ୍ତର ଅନ୍ତଃକରଣରେ !

ସେଦିନ ଅସମ୍ଭବ ଭିଡ଼, ଗୁରୁବାର ଅମାବାସ୍ୟା ଯେ ! ଅପୂର୍ବ ବେଶରେ ସୁସଜ୍ଜିତା "ମାଆ"ଙ୍କୁ ଦେଖିବା ପାଇଁ ଆଗ୍ରହର ସୀମା ନାହିଁ । ହଠାତ୍ ଦ୍ୱାର-ଦେଶକୁ ଆଟେଇଯାଇ ଥମକି ଠିଆ ହେଲି । ଏହି ମନ୍ଦିରରେ ମଧ୍ୟ ନାରୀଙ୍କୁ ଅଗ୍ରାଧିକାର ଦିଆଯାଇଛି ।

ଆମପାଇଁ ମୁକ୍ତ ଦ୍ୱାରଟା କିନ୍ତୁ ଭିତରୁ ବନ୍ଦ ହୋଇଛି !

ଦ୍ୱାର ମୁହଁରେ ଠିଆ ହୋଇଛନ୍ତି ଆହୁରି ଅନେକ ସ୍ତ୍ରୀଲୋକ । ପଥଚଲା ବାଧୁଥିଲା ପରା ! ଦୁଆର ମୁହଁରେ ବସିପଡ଼ିଲି ··

ଜଣେ ବର୍ଷିଅସୀ ମହିଳା ହସି ହସି କହିଲେ, "ପୂଜା ହେଉଛି, ଡେରହେବ ବସି ପଡ଼ନ୍ତୁ ମ !"

ଅନେକେ ବସିଲେ । ସେ କିନ୍ତୁ କାନ୍ଥକୁ ଆଉଜି ଠିଆ ହୋଇଥିଲି । ଶ୍ୟାମଳ ମୁଖରେ ଏକ ମଧୁର ଲଜ୍ଜାର ପ୍ରଲେପ । କାଞ୍ଚି ଭରାମ ଶାଢ଼ୀର ପଣତ ସେ ବାରମ୍ବାର ମୁଣ୍ଡ ଉପରକୁ ଟାଣି ନେଉଥାଏ । ମଧୁର ଅନବଦ୍ୟ ମୁଖଶ୍ରୀ ଆଉ ନେତ୍ର ଯୁଗଳ ଅନୁକ୍ଷଣ ଆମନ୍ତ୍ରଣ କରେ । କେଜାଣି କାହିଁକି ମୋର ସେହିପରି ମନେ ହେଲା । ହୁଏତ ଭ୍ରମ ହୋଇପାରେ । ଗୋଡ଼ର କାଣି ଆଙ୍ଗୁଠିରେ ସେ ଭୂଇଁରେ ଗାର ପକଉଥାଏ । ବେଳେ ବେଳେ ଆଖି ଟେକି ବାହାରକୁ ଚାହୁଁଥାଏ । ଖୁବ୍ ଭଲ ଲାଗିଲା ମୋତେ ନବ ବିବାହିତାର ଏ ମାଧୁର୍ଯ୍ୟଭରା ମୁଖ ଯାହା ଆଜି ଏ ଯୁଗରେ ଦେଖିବାକୁ କ୍ୱଚିତ୍ ମିଳିଥାଏ । ଏ ବଡ଼ ଦୁର୍ଲଭ ବସ୍ତୁ ।

ପଚାରିଲି, "ନୂଆ ବାହା ହୋଇଛନ୍ତି ନା ! ଲାଜୁଆ ହୋଇ ନାହାନ୍ତି ବୋଧହୁଏ ?"

ସେ ଅଲଗ ହସି ମୁହଁ ପୋତିଲା । କହିଲା, "ଛଅମାସ ହେଲା ବାହାଘର ହୋଇଛି । ଆପଣ କେମିତି ଜାଣିଲେ ମ !"

ହସିଲି । ଯାହାକୁ ଅବଶ୍ୟ ଜାଣିବାଟା ଏ ମୂହୂର୍ତ୍ତରେ କଷ୍ଟ । ନିତ ନିତ ବହୁତ ନୂଆ ବାହାଘର ଦେଖୁଛି । ପ୍ରତିଦିନ ଦେଖୁଛି କେତେ ଝିଅଙ୍କର ମୁଣ୍ଡରେ ଝର୍କି କଥା ସିନ୍ଦୂର ଡବାଟା ଗୋଟାପଣେ ଅକାଡ଼ି ହୋଇ ପଡ଼ିଥାଏ । ବେଶଭୂଷାର ପରିପାଟୀ ମୂରେଇ ଦିଏ ନୂଆ ବାହାହୋଇ ଆସିଛନ୍ତି ।

କିନ୍ତୁ...

ନବ ବିବାହିତାର ଏଇ ମଧୁର ଲଜ୍ଜାନମ୍ର ସ୍ନିଗ୍ଧତା ଠିକ ଏମିତି ଲଭି ଲଭି ଯାଉଛି । ସେହି ଅପୂର୍ବ ସମର୍ପଣର ଆକୁଳତାରେ ସ୍ନିଗ୍ଧ ତରୁଣୀଟି ମୋତେ ବେଶୀ ଆକର୍ଷଣ କଲା । ଆହୁରି ଅନେକ ବେଳ ଡେରି । ସିଏ କିନ୍ତୁ ସେମିତି ଠିଆ-ହୋଇଥାଏ...

ଫୁଲପ୍ୟାଣ୍ଟ, ଟେରିକଟନ ସାର୍ଟ, (କେବେ କେବେ ନୂଆ କରି ଯାଇଥିବ ବୋଧେ) ଆସି ତା ପାଖରେ ଠିଆ ହୋଇ କଣ କହିଲା...

ଝିଅଟି କହିଲା, "ମୁଁ ଜାଣିନି ମ ! ତୁମେ ବୁଝ ।"

"ଆରେ ସଇ ସଖି କହୁଛନ୍ତି ଏବେ ଯଲେଇବେ । ଗାଡ଼ି ବେଳ ହୋଇ-ଲେଣି । ମନ୍ଦିର ଖୋଲୁ ଖୋଲୁ ବହୁତ ଡେରି ହେବ । ବାହାରୁ ମୁଣ୍ଡି ଆ ମାରି ପଳାଇବା ଚାଲ !

"ନାହିଁ ମ ! ଦର୍ଶନ ହେବ ବସିଛନ୍ତି" ତାପରେ ଟିକେ ଢୋକ ଢୋକ କହିଲା, "ମନାକର ମ, ଆଜି କଣ ସେ ଘରରେ ଯିବେ ?"

"ତାଙ୍କୁ ଡାକ ଦେଉଛି ତୁମେ କୁହ ।"

ଝିଅଟିର ମୁହଁ ଶୁଖିଲେ ମତେ ଯେପରି ପଦ୍ମ ଝାଉଁଳି ଗଲା । ଟେରିକଟ୍ ପ୍ୟାଣ୍ଟ ଓ ଟେରିନ୍ ହାଇଓ୍ୱାନ ପରିହିତ ସୁଶ୍ରୀ ଯୁବକ ଜଣକେ ଯେ ତାର ସ୍ୱାମୀ ତା ତାଙ୍କର କଥା କହିବା ଭଙ୍ଗୀରୁ ଜଣା ପଡ଼ୁଥିଲା...

"କଣ ସିବାନ ? ମୋର ସ୍ୱତନ୍ତ୍ରରେ ସିବା ଯେ କହାଛ ଦରକାର ! (ଘଡ଼ି ଦେଖିଲେ ସେ ) ମୋର ବସ୍ ବେଳ ହୋଇଲେଣି । ଚାଲ—ଚାଲ"...

ଝିଅଟି ଟିକିଏ କୁଣ୍ଠାବୋଧ କରି ଧୀରେ ଧୀରେ କହିଲା, "ସ୍ୱତନ୍ତ୍ରରେ କ'ଣ ଯିବ ମ ! ଥଣ୍ଡା ଲାଗିବ ନି ? ଆଉ ସକାଳେ ଗଲେ କଣ ଚଳିବନି ?"

ଆଖିପତାରେ ଅଶ୍ରୁମାଖି ଆଗ୍ରହ, ଆଶା, ବାନ୍ଧିଛି ଜମାଟ ଅବା !

ତଇତ ମାସର ଉଷୁମ ରାତି । ନିଜ କଥାର ଅଯୌକ୍ତିକତାରେ ନିଜେ ଲଜ୍ଜିତା ହେଲା ବୋଧେ ସେ ! ଦୁଇ ହାତରେ ଲୁଗା କାନିରେ ମୁହଁ ଲୁଚାଇଲା ଲଜ୍ଜାରେ...

ଏଣେ ତରୁଣ ଜଣକେ ସତେ ଯେପରି ଅଧୈର୍ଯ୍ୟ ହୋଇ ପଡ଼ୁଥିଲେ, "ଦେଖିବା···ସେ କଥା ତମେ ସ୍ୱଳନା ଆଗ ସରିକୁ !"

ସେ ଅନିଚ୍ଛା ସତ୍ତ୍ୱେ ଅନେକ ସମୟ ପର୍ଯ୍ୟନ୍ତ ପାହାଚରେ ମଥା ଲଗାଇ ଭକ୍ତିପୂତଃ ପ୍ରଣାମ କଲା । ସ୍ୱାମୀ ତାକୁ ସିନ୍ଦୁର ଆଣି ଦେଲେ । ମୋ ଆଡ଼କୁ ଚାହିଁ ଅଳପ ହସି ଓଢ଼ଣୀ ଟାଣି ସେ ବିଦାୟ ନେଲା ।

କାହିଁକି କେଜାଣି ମନଟା ମୋର ତୃପ୍ତିରେ ଭରିଗଲା । ଏହି ଶ୍ୟାମାଙ୍ଗୀ ଲାବଣ୍ୟମୟୀ ଝିଅଟିର କମ୍ର ଲାଜ ଟିକକ କେତେ ମଧୁର ସତେ  ଏଇ ଲାଜ ଟିକକରେ ସେ ବାନ୍ଧିପାରିବ ତା ପ୍ରିୟତମକୁ ସବୁଦିନ ପାଇଁ···ଏମାନେ ସୁଖୀ ହୁଅନ୍ତୁ !

ମନ୍ଦିର ଦ୍ୱାର ଉନ୍ମୁକ୍ତ । ଜଗଦମ୍ବାଙ୍କର ଅପୂର୍ବ ନେତ୍ରର ହୃଦୟହାରିଣୀ ଦୃଷ୍ଟି ଶକ୍ତିରେ ଅଭିଭୂତ ହେଲେ ଭକ୍ତବୃନ୍ଦ । ମହାମାୟାଙ୍କର ଧ୍ୟାନ ମଧ୍ୟରେ କାହିଁ ଛପିଗଲା ସେହି ହଠାତ୍ ଦେଖା ଶ୍ୟାମାଙ୍ଗୀ ଝିଅଟିର ଚିନ୍ତା । ମନର ନିବୁଜ କବାଟ ଫିଟି ଝରି ପଡ଼ିଲା ଜୀବନର ସକଳ ବ୍ୟଥା ଗୋଟି ଗୋଟି ହୋଇ ସେହି ବନ୍ଦିତା··· ପରମ ଆରାଧ୍ୟା ଜଗତ ଜନନୀଙ୍କ ପଦତଳେ·

× × ×

ବିପୁଳ ଏ ଜୀବନ

ବିଚିତ୍ର ଏ ଦୁନିଆର ଜଟିଳ କୁଟିଳ ଗୋପନ ଗଳିପଥ···କେତେବେଳେ ସେ କେଉଁ ଅବସ୍ଥାରେ ମଣିଷ ମଣିଷକୁ ଆବିଷ୍କାର କରେ ତା କିଏ କହି ପାରିବ ? ସେ ଦିନ ମଧ୍ୟ ସେମିତି ହଠାତ୍ ଆଖିରେ ପଡ଼ିଥିଲା ଆଉ ଏକ ଦୃଶ୍ୟ ! କିନ୍ତୁ ସେହି ଝିଅ ! ଆଶ୍ଚର୍ଯ୍ୟ ! ପରିସ୍ଥିତି ଓ ପରିବେଶ ସଂପୂର୍ଣ୍ଣ ଭିନ୍ନ ଯେ !

ବାହାଘର ପରେ ଝିଅମାନେ ନୂଆକରି କଲେଜ ଆସିଲେ ପ୍ରାୟ ସେହି ଫୁଲଗଛଗୁଡ଼ାକର ଧାରକୁ ଲାଗି ଚାଲି ଚାଲି କଲେଜ ଭିତରକୁ ପଶନ୍ତି । କାହିଁକି କେଜାଣି ? ଆଉ ଠିକ୍ ସେହି ନାମ-ହୀନ ଝଙ୍କାଳିଆ ବାଇଗଣିଆ ଫୁଲଗଛ ପାଖରେ ସେମାନଙ୍କୁ ସ୍ୱାଗତ କରନ୍ତି ତାଙ୍କର ବାନ୍ଧବୀଗଣ । ସେ ଏକ ଅଭିନବ ଦୃଶ୍ୟ । ସେଇଠୁ ସେମାନେ ବାର୍ଙ୍କି ଯାଆନ୍ତି କୁଦିଭିତରକୁ । ସେଇଟା ରୋମାଣ୍ଟିକ୍ କର୍ଣ୍ଣର ! ନାଁଆଟା ବି ସେମାନେ ଦେଇଛନ୍ତି ! ଚମତ୍କାର ପରିବେଶ ! ନିଦ୍ଧଳା କଲେଜ ଅଗଣା !

ଆଶ୍ଚର୍ଯ୍ୟ···

ସେହି ଦୃଶ୍ୟର ପୁଣି ପୁନରାଭିନୟ ହେଲା !!! ହେଲା ସ୍ୱାଭାବିକ ! କିନ୍ତୁ ·· ଏ କିଏ ???

କିନ୍ତୁ ଠିକ୍ ସେହି ଗଛତଳେ ମୁଁ ତାକୁ ଦେଖିଲି ନାହିଁ । ଦେଖିଲି ଉପାନ୍ତର ଏକାନ୍ତ ଶୀର୍ଣ୍ଣ ବୃକ୍ଷ ମୂଳେ ।

ସେ ଦିନ ମଧ୍ୟ ଗୁରୁବାର ହୋଇଥିଲା । ଶସ୍ତା ଟାଙ୍ଗାଇଲ ଶାଢ଼ୀ ଖଣ୍ଡିଏ ସେ ପିନ୍ଧିଥିଲା । ପାଣ୍ଡୁର ବର୍ଣ୍ଣ ଶାଢ଼ୀ । ସେଦିନ ବି କପାଳରେ ସିନ୍ଦୂର ବିନ୍ଦୁ ଥିଲା ଯଦିଓ, ସେତେ ଉଜ୍ଜ୍ୱଳ ଦିଶୁ ନ ଥିଲା ।

ଅସ୍ୱାଭାବିକ ଭାବରେ ଗ୍ରେଷ୍ଟ ସୀମନ୍ତର ସିନ୍ଦୂରଗାରକୁ ସମ୍ପୂର୍ଣ୍ଣ ଭାବରେ ବିଲୁପ୍ତ କରିବାର ପ୍ରଚେଷ୍ଟା ହୋଇଥିଲା ବୋଧହୁଏ ! ମୋର କାହିଁକି ସେମିତି ମନେହେଲା । ଆଉ ନ ଥିଲା ଓଢ଼ଣା ଟାଣିବାର ପ୍ରଚେଷ୍ଟା ଆଭରଣର ଏକାନ୍ତ ସ୍ୱଳ୍ପତା ଦେଉଥିଲା ପରିବର୍ତ୍ତିନର ଇଂଚିତ ସୂଚନା ! ଅତ୍ୟନ୍ତ ଶାନ୍ତ କ୍ଲାନ୍ତ ଦେଖାଯାଉଥିଲା ସେ ! ହାତରେ ଥିଲା ବହି ଆଉ ନୋଟ ଖାତା । ସେହି ପୂର୍ବ ପରିଚିତ ଶ୍ରାନ୍ତ କ୍ଲାନ୍ତ ମୁଖଶ୍ରୀକୁ ମୁଁ ଠିକ୍ ଚିହ୍ନି ପାରିଥିଲି । କିନ୍ତୁ...

ହେଲେ ମନେହେଲା ରୌଦ୍ରଜ୍ୱଳ ପ୍ରଭାତର ମରଣାହତ ପାଣ୍ଡୁର ଉପମାଟା କାହିଁକି କେଜାଣି ମନେ ପଡ଼ିଲେ ।

ସେଦିନ ତାକୁ ସାଥିରେ ଧରି ଚାଲିଗଲି ମୁଁ ସେହି କୁଞ୍ଜ ତଳକୁ, ସେହି ରୋମାଣ୍ଟିକ୍ କର୍ଣ୍ଣରକୁ । ନବ ବିବାହିତାମାନଙ୍କର ବିଶ୍ରାମସ୍ଥଳୀ ।

କିନ୍ତୁ...

ଏଇଠି ସେ ଫିଟାଇ ନ ଥିଲା ରୋମାଣ୍ଟିକ୍ ରୂପେଲି ଧାଡ଼ିରେ ବୁଣା ମଧୁର ଅନୁଭୂତିର ପବିତ୍ର ଲୋଭନୀୟ କଥାପେଡ଼ି ।

ସୌରଭରେ ତରଙ୍ଗାୟିତ ଉଚ୍ଛ୍ୱସିତ ଆବେଗ ଉଚ୍ଛଳା କାହାଣୀର ସ୍ରୋତ ତ ବହିଯାଇ ଥାନ୍ତା । ସେ କିଏ ଯେ ତାର ବିଡ଼ମ୍ବିତ ଜୀବନର କରୁଣ କାହାଣୀ ସେ କିନ୍ତୁ ମେଲି ଧରିଥିଲା ମୋ ପାଖରେ !

ମାତ୍ର କେତୋଟି ବର୍ଷର ଅନୁଭୂତି !

ପ୍ରତିଟି ରାତ୍ରି ବ୍ୟଥାରେ ବିଧୁର ପ୍ରତିଟି ଦିବସ ବେଦନାରେ ଦୁର୍ବିସହ ! ଅନ୍ତରକୁ ନିଗାଡ଼ି ସେ ବୁହାଇ ଦେଇଛୁ ଅଶ୍ରୁର ଝରଣା । ମରୁଭୂମି ପରି ଶୁଷ୍କ ଅନ୍ତର କ'ଣ ତାଙ୍କର ସବୁ ଶୋଷି ନେଇପାରିଲା ? ଟିକିଏ ବି ତାଙ୍କ ନାହିଁ ? ଆବେଗ ନାହିଁ ? ନାହିଁ ସମ୍ବେଦନା ?

ହଁ ସେହିଦିନ ବର୍ଷଣର ପୂର୍ବାଭାସ ' ତା'ର ସୂଚନା ମିଳିଥିଲା ଅବା ସେହି ଚଣ୍ଡୀମନ୍ଦିର ।

ଏକାନ୍ତ ସରଳା କମଳିନୀ କ'ଣ ଜାଣିଥିଲା ଆଉ ଏକ ଦୁର୍ବାର ଆକର୍ଷଣ ପ୍ରାଧ୍ୟକରକୁ ଟାଣି ନେଉଥିଲା ତାର କର୍ମସ୍ଥଳକୁ ! ଶତ ଅନୁରୋଧ ସତ୍ତ୍ୱେ ସେ ଅଟକାଇ ପାରି ନ ଥିଲା ସ୍ୱାମୀଙ୍କୁ, ସେଦିନ ସେହି ଗୋଟାଏ ରାତ ପାଇଁ ନବବିବାହିତା କମଳିନୀ ହାରିଗଲେ ।

ଚଉଁରା ମୂଳେ କେତେ ସନ୍ଧ୍ୟାବତୀ ଜାଳୁଛି, ସେ ସ୍ୱାମୀର ମଙ୍ଗଳ କାମନା କରି, ମନପ୍ରାଣ ଢାଳି ଶାଶୂ ଶ୍ୱଶୁର ନଣନ୍ଦ ଦିଅରଙ୍କ ସେବା କରୁଛି । ତାଙ୍କରି ସେବା ମଧ୍ୟରେ ସେ ସ୍ୱାମୀଙ୍କର ଅନ୍ତରକୁ ଜିଣିପାରିବ ।

ଏ ତାର ସ୍ୱପ୍ନ ।

କର୍ମସ୍ଥଳକୁ ଯିବାର ଅଦମ୍ୟ ଆକାଂକ୍ଷା ବୁକୁତଳେ ଅନବରତ ଲହରୀ ଭାଙ୍ଗୁଛି । ମାତ୍ର ମୁହଁ ଖୋଲି ପ୍ରକାଶ କରିବାର ପ୍ରଗଲ୍‌ଭତା ସହଜ କମଳିନୀର କାହିଁ ?

ଥାଉ—ଥାଉ !

ରବିବାର କ୍ରମାଗତ ଆସିଛି ଆଉ ଯାଇଛି । ମାତ୍ର ପଚିଶ ମାଇଲ ବାଟରୁ ସ୍ୱାମୀ ତାର ଆସିବାର ଅବସର ପାଇନାହାନ୍ତି···କାମ ପ୍ରଚୁର—ଅଧ୍ୟାପକଙ୍କର ପୁଣି ଅବସର ମିଳେନା ! ଆଖି ପୋଛି ହସିଛି କମଳିନୀ ! ନିର୍ଜନରେ ଲୁହ ଝରାଇଛି ବି ସିଏ କିନ୍ତୁ ଅଧରରେ ହସ ଫୁଟାଇଛି ।

ସବୁରି ପ୍ରତି କର୍ତ୍ତବ୍ୟ ଯଥାରୀତି କରିବାକୁ ହେବ ଯେ !

କିନ୍ତୁ ··

ସନ୍ଦେହ ବୋଧେ ଘନୀଭୂତ ହୋଇଥିଲା ତା'ର । ସୂଚନା ମଧ୍ୟ ମିଳିଥିଲା ବୋଧହୁଏ । ନ ହେଲେ ହଠାତ୍ ସେଦିନ ଘରରେ ଜଳି ଜଳି କାହିଁକି ଶ୍ୱଶୁର ଅଫିସରୁ ଆସିଲେ ? କାହାକୁ କିଛି କଥା କହିଲେ ନାହିଁ । ସ୍ନାହା ବି ପିଇଲେ ନାହିଁ । ଶାଶୂଙ୍କୁ କହିଲେ ସଜ ହୁଅ । ବୋହୂକୁ ଆଜି ନେଇ ଛୁଡ଼ିଦେଇ ଆସିବା ତା ପାଖରେ !

ଶାଶୂ ଆଶ୍ଚର୍ଯ୍ୟ ହେଲେ—"ଏ କି କଥା, ଦିନବାର କିଛି ଯେ ଦେଖା-ହୋଇନି ! ପାଞ୍ଜି ଦେଖିଲଣି ?

"ନା·· ଦିନବାର ଦେଖିବନି, ଆଜି ଯିବା ।"

ଦୃଢ ଗମ୍ଭୀର ସ୍ୱର ! ଆଦେଶ ! ଅବଜ୍ଞା କରିହେବ ନାହିଁ । ସତକୁ ସତ ସେହିଦିନ ସଞ୍ଜକୁ କମଳିନୀ ଆସିଲା ସ୍ୱାମୀର କର୍ମସ୍ଥଳକୁ ।

କମଳିନୀର କଳ୍ପଲୋକ, ସ୍ୱପ୍ନର ସ୍ୱର୍ଗଲୋକ !

ଅଥଚ···

କିଛି କହିନାହାନ୍ତି ଶ୍ୱଶୁର । ଆଖି ଦୁଇଟା ଛଳ ଛଳ ହୋଇଥିଲା ତାଙ୍କର ! ମୁଣ୍ଡିଆ ମାରି ଉଠି କମଳିନୀ ଦେଖିଲା ଶାଶୂ ପଣତ କାନିରେ ଲୁହ ପୋଛୁଛନ୍ତି । "ସ୍ୱାମୀ ପୁତ୍ର ଧରି ସୁଖରେ ଘର କର ମାଆ ।"

କିନ୍ତୁ ଆଉ ପଛକୁ ଗୁହିଁନାହାନ୍ତି ଶ୍ୱଶୁର ! ବସ୍‌ରେ ବସିଲେ ସେମାନେ । ଦ୍ୱାରମୁହଁରୁ ଅଶ୍ରୁସିକ୍ତ ନୟନରେ ଗୁହିଁଥିଲା କମଳିନୀ ।

ସେମାନେ ଗୃଲିଗଲେ !

କମଳଜୀଙ୍କୁ ଲାଗିଲା ସତେ ଯେପରି ସେମାନେ ଯିବା ସଙ୍ଗେ ସଙ୍ଗେ ତା ପାଦତଳର ମାଟି ସବୁ ଖସି ଖସି ଯାଉଛି ! ଅବଲମ୍ବନ ହରାଇବାର ଯନ୍ତ୍ରଣାରେ ଆଖି ଫାଟି ଲୁହ ବୋହିଯାଉଛି । ମନେ ହେଉଛି ଖାଲି ଗ୍ରେଷବାଲି ଉପରେ ସେ ଠିଆହୋଇଛି !

କାହିଁକି ? ତୁହି ମଧ୍ୟ ବୁଝି ପାରିଲୁନି ପିଏ !

ଉତ୍ତର ଦେଲି ମୋ କଥା ତୁମକୁ ଭଲ ଲାଗୁନି କାହିଁକି ? ମୋର ଦୋଷ ?

ପ୍ରଶ୍ନକଲ, "ନା...ତମେ କମା ବୁଝି ପାରିବନି । ସେ ବୁଦ୍ଧି, ସେ ଶକ୍ତି ତୁମର କାହିଁ ? ବିଦ୍ୟାର ଅଭାବ, ଜ୍ଞାନର ଅଭାବ, ଚିନ୍ତାର ଅଭାବ । ମାଟି ବେଦି ଉପରେ ନିଆଁ ଜାଳିଦେଲେ ବିବାହ ହୁଏ ନାହିଁ । ମନର ମିଳନରେ ହିଁ ବିବାହ । ମନ୍ତ୍ର ସେଇଠି କାମ କରେ !

ମନର ଯେଉଁଠି ମିଳନ ନାହିଁ, ରୁଚିରେ ସାମ୍ୟ ନାହିଁ ସେଠି ବିବାହ ମିଥ୍ୟା ! କେତେ ଅଶାନ୍ତ ପରିତୃପ୍ତି ଦିଏ ସୁଧା ତା କ'ଣ ତୁମେ କେବେହେଲେ କଳ୍ପନା କରିପାରିବ ? ମନେହୁଏ ଜୀବନର ସବୁ ଫାଙ୍କ ସବୁ ଅଭାବ ସତେ ଯେପରି ତା ଓଠର ଟିକିଏ ଆସ୍ୱାଦନରେ ପରିପୂର୍ଣ୍ଣ ହୋଇଯାଏ । ବାଧାଦେବ ତୁମେ ? ପାରିବ ନାହିଁ । ମୋତେ ଅଶାନ୍ତ ଭିତରେ ଜଳିବାକୁ ଦେଇ ତୁମେ କ'ଣ ପାଇବ ? ଭଲପାଇବା...ଅସମ୍ଭବ । ସେ ଏତେ ସହଜରେ ମିଳେ ନାହିଁ । ବଡ଼ ଦୁର୍ଲ୍ଲଭ ସେ । ସେଥିପାଇଁ ସାଧନା ଲୋଡ଼ା ଲୋଡ଼ା ସହାନୁଭୂତି ? କରୁଣ ? ସନ୍ଦେହ-ଜନକ !" ଦୃଢ଼ ପଦକ୍ଷେପରେ ଆଗେଇ ଗଲେ ତାର ତରୁଣ ଅଧ୍ୟାପକ ସ୍ୱାମୀ... ପ୍ରଥମ ଦିନର ସମ୍ଭାଷଣ ! ଏଇ ଜୀବନର ଆରମ୍ଭ । କମଳଜୀ ମୁହଁକୁ କଥା ଆସିଲାନି ।

ଦିନ ଦିନ ହୋଇ ବଢ଼ିଯାଇଛି । ଅନାଦର, ଅବହେଳା, ଘୃଣା, ଲାଞ୍ଛନା, ଅପମାନ, ଅନୁକ୍ଷଣ, ତାର ପୁନରାବୃତ୍ତି ଭିନ୍ନ ରୂପରେ । ବିବାହିତ ଜୀବନର ସୁମଧୁର ସ୍ମୃତି କାହିଁ; ସେ ସାଇତି ରଖିବ ସ୍ମୃତିର ମଣି ଫରୁଆରେ ? ଏ ଯୁଗରେ କଥାର କାରିଗର ପ୍ରଫେସର ଶାଣିତ କଥାର ଚକୁଆରେ କ୍ଷତ ବିକ୍ଷତ କରିଛି ଅନୁକ୍ଷଣ କମଳଜୀର କଅଁଳ ମନକୁ ! କହିବ ? ଛି—ଲଜ୍ଜା ! ଏଇ ଲଜ୍ଜାର ଘୋଲପାଟିକୁ ଯଦି ଦୃଢ଼ ହାତରେ ସେ ଫିଙ୍ଗିଦେଇ ପାରିଥାଆନ୍ତା; ତା'ହେଲେ ହୁଏତ ଲଗାଇଦେଇ ପାରିଥାଆନ୍ତା ଗୋପନ ଅଭିସାରର କଳୁଷ ରଙ୍ଗ ତାର ସ୍ୱାମୀର ନିର୍ଦ୍ଦୋଷ ମୁଖ ମଣ୍ଡଳରୁ ! ଯଦି ପ୍ରକାଶ କରିପାରିଥାନ୍ତା ସ୍ୱାମୀଙ୍କ ଆଚରଣ ପରିଜନଙ୍କ ଆଗରେ !

ନା—ଥାଉ—ଥାଉ—ଛି—ତାର...

'ହେଲେ କଣ ଅଭାବ ଥିଲା ତା'ର ?

ଏଇ ଆଶ୍ଚର୍ଯ୍ୟ ଅପରୂପ ଦେହଶ୍ରୀ ତରୁଣ ସ୍ୱାମୀଙ୍କୁ ତାର ଅଭିଭୂତ କଲା ନାହିଁ କାହିଁକି ?

ତା ପାଇଁ ତ୍ରିଭୁବନର ସାଇତି ରଖିଛି ଘୃଣା !

ଘୃଣା ନେଇ କାଣ୍ଡ ବଞ୍ଚିପାରେ ନାହିଁ !

କମଳିନୀ ଫେରି ଆସିଛି !

କମଳିନୀକୁ ଗୁହାଁଇଲି, ନିରୀକ୍ଷଣ କଲି; କିନ୍ତୁ ଉତ୍ତର ପାଇଲି ନାହିଁ ।

× × ×

କମଳିନୀ ମୁହଁ ଖୋଲିଲା—ସାଧନା କରିଛି ମୁଁ—ମୁଁ ସ୍ୱାମୀ ଚିତ୍ତ ଜୟ କରିବାକୁ ଚେଷ୍ଟା କରୁଛି । ହେଲେ ତିଳ ତିଳ ହୋଇ କମଳିନୀ ମରି ଯାଉଛି । ସ୍ୱାମୀର ଅନ୍ତରକୁ ସ୍ପର୍ଶ କରିବାର ଶକ୍ତି ମୋର ନାହିଁ । ଅନୁକ୍ଷଣ ଆତ୍ମସଂଯମ ନାମରେ ମୁଁ ଖାଲି କରି ଚାଲିଛି ଆତ୍ମପ୍ରବଞ୍ଚନା । ଧୈର୍ଯ୍ୟର ଶେଷ କେଉଁଠି ? ଅଭିନୟ କରିବାର ଦୃଢ଼ସଂକଳ୍ପ ନେଇ ମୁଁ ତ ଅନେକ ଦିନ ଅଭିନୟ କରି ଆସିଥିଲି···କିନ୍ତୁ ଏ ଫାଙ୍କା ଶୂନ୍ୟ ଜୀବନ ନେଇ ଆଉ କେତେ କାଳ ! କେହି ନ ଜାଣୁ ତ ର ବିଡ଼ମ୍ବିତ ଜୀବନର ଇତିହାସ···

ଅନୁକମ୍ପାର ଗୁହାଣୀ ଯେ ଏକାନ୍ତ ଅସହ୍ୟ । ତା କହିନ କମଳିନୀ ଚିଠି ଆସିଛି ଶାଶୁଘରକୁ । ଥାକ ଥାକ ଚିଠି—"ଆମେ ଖୁବ୍ ଭଲରେ ଅଛୁ । ବହୁତ ବୁଲୁଛୁ । ବେଲ ହେଉନ ତାଙ୍କୁ ଚିଠି ଦେଲେ ମାସ କେତେ ଦିନ ଏ ଧୁଳିବା ?

ଲଜରକ୍ତ ମଧୁ ହସ ଲିଭି ଲିଭି ଯାଇଛି । କୋଟରାଗତ ଚକ୍ଷୁରୁ ଲିଭି ଯାଇଛି ଜ୍ୟୋତି । ଆଖିମେଲି କଣ ଦେଖି ନାହିଁ ତ୍ରିଭୁବନର ତାର ଫୁଲ ଫୁଲ ଆଖିର ସଦ୍ୟସ୍ନାତ ମୁକ୍ତାଧାରା ପରି ଅବିରଳ ଅଶ୍ରୁଧାରା ??

ବାନ୍ଧିପାରିଲାନ କମଳିନୀ ତ୍ରିଭୁବନର କାମନାଗ୍ରସ୍ତ ମନକୁ ! ବିବାହିତ ଜୀବନର ଆଦ୍ୟ ଲଗ୍ନରେ ସଂସାରର ଏ ରୂପ ଦେଖି କମଳିନୀ ଭାଜି ପଡ଼ିଛି ।

ସ୍ୱାମୀ ପାଖରେ ଯାର ସୁଖ ନାହିଁ—ସେ ଅମୃତଲୋକରୁ ଯେ ନିର୍ବାସିତା—ଯେ ଅବଜ୍ଞିତା—ଯେ ଅନାଦରକାଙ୍କ୍ଷୀ—ତାପାଇଁ··ତା ପାଇଁ କି ପାଥେୟ···ବିଶାଳ ଏ ଜୀବନର ଚଲା ପଥରେ ???

ତାପରେ ?? ବିଶାଳ ଏ ଜୀବନ ଯନ୍ତ୍ରଶାଳା !

ତା ପରର କାହାଣୀ ସଂକ୍ଷିପ୍ତ । ଏକାନ୍ତ ସଂକ୍ଷିପ୍ତ··· •

ଆଶ୍ରୟ ଦେଇଛି ଶୈଳବାଳା ମହିଳା କଲେଜ···ଆଦରରେ ଆଲିଙ୍ଗନ କରିଛି ।

× × ×

ସେ ଦିନ କାହିଁକି ସେ ଢାଳିଦେଲା ମୋ ନିକଟରେ ତାର ଅନ୍ତରର ସମସ୍ତ ଆବେଗ ଓ ପ୍ରଶ୍ନବାଚୀ ???

ଉତ୍ତର ଆଶାରେ କି ?

କି ଉତ୍ତର ମୁଁ ଦେଇ ପାରିବି ? ଏ ପ୍ରଶ୍ନର ଉତ୍ତର କ'ଣ ମୁଁ ଦେଇ ପାରିବି ? କିଏ ଜାଣେ ଏଇ ପୂର୍ଣ୍ଣତା ନିମନ୍ତେ ଅହରହ ସଂଗ୍ରାମ କରି ଆସି ସେ ଦେଖିବ ଏ କେବଳ ମୃଗତୃଷ୍ଣା···

ଯୁଗର ଅଗ୍ରଗତିକୁ ମୁଗ୍ଧ ନୟନରେ ଚାହିଁ ପୁଣି ପଛକୁ ଚାଲିଲି ମୁଁ । ଆଜି ଦଶବର୍ଷ ତଳର ଘଟଣା ହୋଇଥିଲେ ହୁଏତ କମଳିନୀ ଚକୋଲି ସେହି ଦୃଶ୍ୟ ପରିବେଶରେ ଚୁକୁଲାଣୀ ଭୂମିକାରେ ଅଭିନୟ କରି ଆସିଥାନ୍ତା । ନଚେତ୍ ଶରୀର ବିକ୍ରୀ କରି ଆଜି କରିଥାନ୍ତା ଟଙ୍କେ ଧାନ୍ଦେ··· ଅପରୂପ ଲାବଣ୍ୟମୟୀ ଦେହର ହୋଇଥାନ୍ତା ଲକ୍ଷକାମନାସ୍ଥଳ !

ମାତ୍ର, ଶିକ୍ଷା ବାଟ ଫିଟାଇ ଦେଇଛି । ସମ୍ଭାବନାର ପଥ··· ବଞ୍ଚିବାର ଶୁଭଙ୍କର ପଥ ।

ମୁକ୍ତିଲାଭର ସଂକଳ୍ପନେଇ ଆଜି ଜୀବନର ମୋଡ଼ ବଙ୍କେଇ ଦେଇଛି କମଳିନୀ । ସେ ବଞ୍ଚିବ, ସୁନ୍ଦର ସୁସ୍ଥ ଜୀବନ ନେଇ ସେ ନାରୀ ଜୀବନର ଆଦର୍ଶ ଅକ୍ଷୁଣ୍ଣ ରଖିପାରିବ ।

ତେବେ ଅଧ୍ୟୟନ ଆଲୋକ କଣ ଜୀବନର ଏ ଅନ୍ଧକାରକୁ ଦୂର କରିଦେଇ ପାରିବ ?

ସେ ପ୍ରଶ୍ନବାଚୀ !

ଏଇ ନାରୀ; ଯିଏ କମଳିନୀର ସୌଭାଗ୍ୟର ଅଧିକାରିଣୀ, ସିଏ ବି ଅଧ୍ୟାପିକା ଉଚ୍ଚଶିକ୍ଷିତା ! ତେବେ ?

ଗୋରୁ ମାଂସ କଂସେଇଖାନାରୁ ବୋହିଆଣେ ଗୋରୁ । ଯିଏ ବୋଲି ସେ ଗୋରୁ କଣ ମାତା ନୁହେଁ ! ସେହି ଗୋରୁ ପୁଣି ଗୋ ମାତା ରୂପେ ବନ୍ଦନୀୟା !

ତେବେ କମଳିନୀ କଣ ପାଇଛି ମରୁଭୂମିରେ ଓଏସିସ୍‌ର ସନ୍ଧାନ ???
କଳ୍ପଲୋକର ସ୍ୱପ୍ନ କଣ ତାର ସଫଳ ହେବ ନା ଏ ଖାଲି ମୃ-ଗ-ତୃ-ଷ୍ଣା ?
ଏ ଚାଲିବାର ଶେଷ କେଉଁଠି କିଏ କହିବ ?



## ● ବନ୍ଧ ଘରର ଗୃହ

ଘଦଓ ଘରଟା ଏକଦମ୍ ପୁରୁଣାକାଳିଆ, ପିଣ୍ଡାଟା ଅସମ୍ଭବ ଭାବରେ ଉଚ୍ଚା, ମାତ୍ର ଯୋଡ଼ିଏ ବଖରା ଘର । ତଥାପି ସେଇ ଅଣଓସାରିଆ ଛଳ ମହଲା କୋଠାଟାକୁ ଦେଖି ବାରମ୍ବାର ଆତ୍ମପ୍ରସାଦରେ ଫୁଲଉଠନ୍ତି ହରିହର ମିଶ୍ରେ !

ସେ କାଳର ଡିଜାଇନର କୋଠା ।

ତାର ସବା ଉପରେ ଜେଣାଟେକ ଉଡ଼ାଯାଉଛନ୍ତି ଦୁଇଟି ପକ୍ଷୀ । ଆଉ ତାର ମଝିରେ ସୁଦକ୍ଷ କାରିଗର ବେଶ କୁଶଳତାର ସହ "ହରିହର" ନାଆଁଟି ଲେଖି ଦେଇଛି ।

"ହରିହର ମିଶ୍ର" ।

ହରିହରଙ୍କ ଯୋଗ୍ୟପୁତ୍ର ଲୋକନାଥ ଆପଣାର ଓକିଲାତି ପଇସାରେ ତା ଉପରେ ଆଉ ଦୁଇଟି ମହଲା ତିଆରି କଲେ ମଧ୍ୟ ସେହି ଗୋଟିକ ନାଆଁ ଦିଶୁଛି, ଦାଉ ଦାଉ ହୋଇ ଜଳୁଛି ମଧ୍ୟ...

ସେ ନାଆଁ "ହରିହର ମିଶ୍ର'ଙ୍କର, ଯିଏ ଏ କୋଠାର ମାଲିକ ।
ଯିଏ ଗର୍ବରେ ପୁରୁଷାକାରର ବଡ଼େଇ କରିବେ ନାହିଁ ?
କେମିତି ନ କରିବେ ?
ସତକୁ ସତ ଆଖି ଦେଖିବା କଥା ଇଏ...
ଏତେ ବଡ଼ ଅନ୍ୟାୟକୁ ସହିନେଲା ଲୋକନାଥ ???
ଓହୋ ! ଲୋକନାଥ ଆଜ୍ଞାଧୀନ ପୁଅ...
କିନ୍ତୁ...
ଛି—ଛି—ଛି—
ଏ କ'ଣ ପୁରୁଷାକାରର ସ୍ୱାକ୍ଷର ?
ନା ବାପଚମଡ଼ା ଯୋଡ଼େଇ ହୋଇଥିବା ଗୋଟିଏ ନିରୀହ ମେଷ ଶିଶୁ ?

ପିତୃଭକ୍ତିର ନାମାବଳୀ ପିନ୍ଧା ଗୋଟିଏ ଅର୍ଥଲୋଭୀ ପିଶାଚ ଯିଏ ଅନୁକ୍ଷଣ ଭଲମଣିଷର ଅଭିନୟ କରିଯାଏ ???

ତେବେ ଲୋକନାଥ କ'ଣ ମେରୁଦଣ୍ଡହୀନ, ଚରିତ୍ରହୀନ ?
କେଜାଣି । ଲୋକେ ଦୋ ଦୋ ପାଞ୍ଚ ହୁଅନ୍ତି...

କିନ୍ତୁ ଲୋକନାଥ ସମ୍ବନ୍ଧରେ ଏତେ ବଡ଼ କଥା କହିବାକୁ କାହାର ଜିଭ ଲେଉଟେ ନାହିଁ…

ଏତେ଼ ଜାକଜମକରେ ବାହାଘର ହୋଇଗଲା । ଅପୂର୍ବ ସୁନ୍ଦରୀ ବୋହୂ । ହେଲେ ଏଭଳି ଅଘଟଣ ଘଟିଲା କେମିତି ?

ବାହାଘରର ମାସ କେଇଟା ନ ଯାଉଣୁ କୁଆଡ଼େ ଅନ୍ତଃସତ୍ତ୍ୱା ବୋହୂଟା ଯେ ବାପଘର ଗଲା ଆଉ ଫେରିଲା ନାହିଁ '

ଆଭିଜାତ୍ୟ ନଥିବା କିଅଁସି ଘର ଝିଅଟା ଆଉ ଏ ଘରକୁ ଫେରିଲା ନାହିଁ ।

ହୁଁ଼, ନ ଫେରୁ ।

ଅବଶ୍ୟ କଥାଟା ସ୍ୱରିଆଡ଼େ ପ୍ରଶ୍ନର ହୋଇଥିଲା ।

ହୁଁ—

କିନ୍ତୁ ସତରେ କ'ଣ କୁମୁଦିନୀ ଫେରି ନ ଥିଲା ?

ତେବେ ?

ତେବେ ସେହି ଛୁଟ ସୁଟ୍‌କେଶଟାର ସ୍ମୃତିକୁ କ'ଣ ଅସ୍ୱୀକାର କରାଯାଇ ପାରେ ?

ମଳଚିଆ ଗର୍ଣ୍ଣିଲରେ ବନ୍ଧା ମୁଆଁ ଆଉ ସେହି ଏକମାତ୍ର ଯୌତୁକ ଛୁଟ ସୁଟ୍‌କେଶ ଓ ହାତର ଧରି ପାତଲା ଦୁର୍ବଳିଆ ଝିଅଟା ହାତରେ ଯେତେବେଳେ ପଥର-ବସା ପକ୍‌କା ଅଗଣାରେ ପାଦ ଦେଲା କୁମୁଦିନୀ, ସେତେବେଳେ ହରିମିଶ୍ରଙ୍କ ବିଧବା ନ ହୋଇ ବିଧବା ହୋଇ ବାପଘରେ ରହିଥିବା ଭଉଣୀ "ମାଗି" ଭୟରେ ଚୋଟାପଣେ ଥରୁଥିଲେ !

ପୁରୁଣା କ୍ଷତରୁ ରକ୍ତ କ୍ଷରଣ…

ଅଶ୍ୱିତ ମନେପଡ଼ିଗଲା ମାଗି ନାନୀର !

ଏ ଝଡ଼ର ଆଘାତ ସେ ପାଇଛୁ । ଆଉ ଏକ ପ୍ରଳୟଙ୍କରୀ ଝଡ଼ର ସୂଚନାରେ ଅକ୍ଷର ପରିଚୟ ଘଟି ନ ଥିବା ମାଗି ନାନୀ ମଧ ତାଙ୍କର ଅନ୍ଧ ନିଷ୍ଠୁର ସ୍ୱଭାବର ଅବ-ସ୍ଥିତିକୁ କଳ୍ପନା କରି କମ୍ପି ଉଠୁଥିଲେ ।

ପାଦତଳେ ମୁଣ୍ଡିଆ ମାରୁଥିବା ବୋହୂଟାକୁ ଉଠେଇ ଦେଇ ନ ଦେଉଣୁ ଏ ଘରେ ଅଘଟଣ ଘଟିଲା…

ସେତେବେଳେ ଲୋକନାଥ ଘରେ ନ ଥିଲେ । କଲିକତା ଯାଇଥିଲେ ।

କିନ୍ତୁ ସବୁ ଦେଖିଛନ୍ତି ମାଗିନାନୀ…

ଷୋଳ ବର୍ଷର ସୁବର୍ଣ୍ଣ ପ୍ରତିମା ଭୂଆସୁଣୀ ବୋହୂଟା ତା'ର ଲୁଡ଼ୁବୁଡ଼ିଆ ଝିଅ ହାତରେ ଯେଉଁ ଜହ୍ନ ରାତିଟାରେ ଏକବସ୍ତ୍ରରେ ଶ୍ୱଶୁର ଘରର ଭିଟାମାଟିରୁ ବିଦା ହୋଇଗଲା !

ବଦା କରି ଦେଇଥିଲେ ଏଇ କୋଠାର ମାଲିକ ହରିମିଶ୍ରେ, ଆଭିଜାତ୍ୟ ଯାହାଙ୍କର ଥିଲାବୋଲି ଯେ ଅହରହ ଗର୍ବକରନ୍ତି !

ଆଉ ମଧ୍ୟ ଅଟକାଇ ପାରି ନଥିଲେ ମାଗି, ସିଏ ଏ ଘରର ବିଧବା ଝିଅ ପରି ମାଟି କାମୁଡ଼ି ପଡ଼ିଛନ୍ତି !

କେମିତି ବା ପାରିଥାନ୍ତେ ସିଏ ?

ସ୍ୱାମୀ ପରିତ୍ୟକ୍ତା ମାଗି···

ଏମିତି କେବଳ ଯୌତୁକ ନ ଦେଇ ପାରିଥିବା ହେତୁ ତାଙ୍କୁ ଘରୁ ତଡ଼ି ଦେଇଥିଲେ ତାଙ୍କର ଶ୍ୱଶୁର ।

ବର ହେଲେ ଫେରାର !

କିଏ କହେ ରେଙ୍ଗୁନ ଗଲେ, କିଏ କହେ ଗଲେ କାଳିମାଟି !

ଆଉ ସହାୟସମ୍ବଳହୀନା ମାଗି ପଡ଼ିରହିଥିଲେ ଆଶ୍ରିତା ହୋଇ, ଏଇମିତି !

ବାରବରଷ ପରେ ହିନ୍ଦୁଶାସ୍ତ୍ରର ନିୟମ ମାନି ବିଧବା ହେଲେ ମାଗି !

ପେଟରୁ ଜନମ ନକରି ସିଏ ମାଆମଲା ଲୋକନାଥର ମାଆ ହୋଇ ପାରିଛନ୍ତି ତାଙ୍କ ଛୁଇଁ କ'ଣ ଫାଟି ପଡ଼ିବ ନାହିଁ ଏଇ ମିଛିମିଛିକା ଆଭିଜାତ୍ୟର ଅତ୍ୟାଚାରରେ ?

କିନ୍ତୁ···

ହେଲେ ପ୍ରତିବାଦର ଭାଷା ତାଙ୍କୁ ଜଣା ନାହିଁ । ପାଦତଳେ ମାଟି ଖୋଳିବା କଥା ସେ କଳ୍ପନା କରିପାରି ନାହାନ୍ତି । ସମସ୍ତ ଶକ୍ତି ଦେଇ ଥରି ଥରି ଫିସ୍ ଫିସ୍ କରି ସେହି ବୋହୂଟାର କାନ ପାଖରେ ଆକୁଳ ହୋଇ କହୁଥିଲେ ମାଗିନାନୀ—" ଯାଆ ଚୋଡ଼ ଯୋଡ଼ାକ ଧରି ଫକା । କହ—ମାର—ସପ— ମୋତେ ପୋଇଲି କରି ରଖ, ହେଲେ ମୁଁ ତ ତୁମର ଘର ବୋହୂ । ଫିଙ୍ଗିଦେଲେ ମାଟିରେ ମିଶିଯିବ ମୁଁ !"

ମାଗିନାନୀଙ୍କ ଦି' ଆଖିରୁ ଦୋଗାଣୀ ପରି ଲୁହଧାର ଝରୁଥିଲା ।

ହେଲେ ସେ ଶକ୍ତ ମଜଭୁତିଆ ମାଇକିନିଆ ଝିଅଟା କ'ଣ କାଳୁଣୀ ? କାଡ଼ ? କିଛି ତାକୁ ଜଣାଗଲା ନାହିଁ ???

କୁମୁଦିନୀ ନାମରେ ଇସ୍ପାତର ଫଳକ ପରି ଦାଉ ଦାଉ ଜଳୁଥିବା ସେ ପତଳା ଗୋରା ତକ ତକ ଝିଅଟା ଆପଣାର କୁହଳିଆ ଭାଇଟାର ଲଡ଼ ଲଡ଼ ହାତଟାକୁ ଖୁବ୍ ଯୋରରେ ଜାବୁଡ଼ି ଧରିଲା । ସେହି ଭାଇଟାର ହାତ ମୁଠାକୁ ଶକ୍ତ କରି ଜାବୁଡ଼ି ଧରିଥିଲା !

କିନ୍ତୁ···

ଶେଷରେ ତାର ଅଣ ନଷ୍ଟୁର ଶ୍ୱଶୁରଙ୍କ ପାଦତଳେ ପ୍ରଣାମ କର କୁମୁଦନୀ କହୁଥିଲ ପଦଏ କଥା '

ଦୃଢତାର ସ୍ୱାକ୍ଷର ବହନ କର ଝରପଡ଼ୁଥିଲ ସେହ ପଦୁଟିଏ କଥା ! ସ୍ୱାଭିମାନ ? ଅହଙ୍କାର—କେଜାଣି ତାର ରୂପ ବାର ହୁଏନା !

"ଆଶୀର୍ବାଦ କରନ୍ତୁ ମୁଁ ଯେପର ଏ ବଂଶର ମର୍ଯ୍ୟାଦା ରଖିପାରେ ।"

ଆଶ୍ଚର୍ଯ୍ୟ !!'

ଶୁଖା ଶୁଖା ବଡ଼ ବଡ଼ ଟଣା ଟଣା ଆଖି ଦୁଇଟାରୁ ଟୋପାଏ ହେଲେ ଲୁହ କ'ଣ ଝରିଲ ନାହିଁ ??

ନିଃସ୍ତବ୍ଧ ଧରେ ମାଗିନାମାଙ୍କୁ ପ୍ରଣାମ କରି ଗ୍ଲଲଗଲ ସିଏ ' ମିଳେଇଗଲ ।

ଆଉ ମାର୍ଗିନାମା ?

ପର୍ବତର ବନ୍ୟାଜଳ ଅବା ଅଗ୍ନିନକ ମାଡିଆସି ବନ୍ଧ ପର୍ଶି ଦେଲ ।

ହେଲେ ପସିଗଲ ନାହିଁ ମିଶ୍ରଙ୍କ ପଦ ଯୁଗଳ !

ମାଗିନାମାଙ୍କର ନିଷ୍ପ୍ରଭ ଆଖିପତାରେ ଏତେ ଲୁହ ?

ପୁରୁଣା କ୍ଷତରୁ ରକ୍ତ କ୍ଷରଣ କ'ଣ ସହଜରେ ବନ୍ଦହୁଏ ?

ପୁରୁଷାକାରର ପ୍ରତୀକ ହରି ମିଶ୍ରେ !

ଦାମ୍ଭିକପି ହରିମିଶ୍ରେ କହଲେ "ତୁନହ, ଗ୍ରେଟଲୋକ ଘରର ଝିଅ ସେ ! ପୁଣି ମୋ ପୁଅକୁ ବାହା କରିବ ? ପିତଳ ହାଣ୍ଡି ଧୋଇଦେଲେ ଶୁଦ୍ଧ ।"

ହେଲେ ପିତଳ ହାଣ୍ଡିକୁ ଧୋଇ ପାରିଥିଲେ କି ?

କିନ୍ତୁ...

ଲୋକନାଥ କ'ଣ କଲିକତାରୁ ଫେର ଏ ସବୁ କିଛୁ ଶୁଣି ନ ଥିଲ ତା ଆବାଲ୍ୟ ଦୁଃଖିନୀ ମାଆଠାରୁ ଲୋକା ପିଉସୀ ମାଗିନାମା ତୁଣ୍ଡରୁ ?

ତେବେ ?

ଲୋକନାଥ କ'ଣ ଆପଣା ଶୋଇବା ଘର କ'ଣରେ ପଡ଼ି ରହିଥିବା ଅଣ ନରିମାଖି ସେହ ହଳଦିଆ ଫୁଲପକା ଟ୍ରଙ୍କ ସୁଟକେଶର ସ୍ଥିତି ଅନୁଭବ କରିପାରି ନଥିଲ ?

ତେବେ ?

ସେ ତ ରାଗରେ ଫିଙ୍ଗିଦେଇ ପାରିଥାନ୍ତା ସେ ଶେଷ ଚହ୍ନକୁ !

ସ୍ୱପ୍ନପରି ପାଶୋରି ଦେଇଥାନ୍ତା ଜୀବନ ଅଧ୍ୟାୟରୁ ସେ ତୁଚ୍ଛ କାହାଣୀକୁ !

ଲୋକନାଥ ପ୍ରତିବାଦ କଲନାହିଁ । ରାଗରେ ଫାଟି ପଡ଼ିଲ ନାହିଁ । ଅଧିକ ଗମ୍ଭୀର ହେଲ ଲୋକନାଥ । ହଁ; ଟଙ୍କା ଆସିଲ ..

ହରମିଶ୍ର ନାମ ଲେଖା ହୋଇଥିବା କୋଠା ଉପରେ ପୁଣି କୋଠା ଠିଆର ହେଲ ।

ମୂଲଦୁଆ ଝାଣ—ବୃନସ୍ତାଦ ଅଛୁ । ପୁଅ ବୋଲମାନୁଛୁ । ଏଥିରେ ଗର୍ବ କରବେନ ହରମିଶ୍ରେ ?

କରବେ ନାହିଁ ଆଭିଜାତ୍ୟର ବଢ଼େଇ ?

ହେଲେ ସେହି ଟିଲର କଣ ଘରଝାରେ ଠିକ୍ ସେହି ନିର୍ଦ୍ଦିଷ୍ଟ ଜାଗାରେ ସେମିତ ଅବଚଳିତ ଭାବରେ ପଡ଼ି ରହିଥିଲ ଫୁଲପକା ସୁଟକେଶ୍ !

ଗୋଟାଏ ରକ୍ତାକ୍ତ ମୃତର ନିର୍ମମ ସ୍ୱାକ୍ଷର···

ଆହୁରି ଆଶ୍ଚର୍ଯ୍ୟ ଯେ ସେହି ଘରଟାକୁ ସବୁବେଳେ ତାଲ ପକାଇ ରଖୁଥିଲ ଲୋକନାଥ ।

ପୁରାପୁରି ତା ନିଜର ଘର । ଅନ୍ୟମାନଙ୍କର ପ୍ରବେଶ ନିଷେଧ, ଯେପରି ସାତରଜାର ସାଇତା ମାଣିକ ରହିଛୁ ।

ତେବେ ଜବରଦସ୍ତ କୁମୁଦନୀ କୋଳରୁ ଝଣା ହୋଇ ଆସିଥିବା ଏ ବଂଶର ଗୌରବ ନିରଞ୍ଜନକୁ କ'ଣ ଦେଖି ନ ଥିଲେ ମାଗି ନାନୀ ?

ଆପଣାର ଶୁଖିଲ ଗୁଡରେ ଚିପି ଧରିଲ ବେଳେ ଚହ୍ନିପାରି ନଥିଲେ ତାଙ୍କ ହାତଗଢ଼ା ଲୋକନାଥର ବିକ୍ଷତ ମନକୁ ?

ବୋହିଯାଉଥିବା ଲୁହଧାରରେ ଖାଲି ଜାଲୁଜାଲୁଆ ଦିଶେ ମାଗିନାନୀକୁ କୁମୁଦନୀର ଅତି ସୁନ୍ଦର ମୁହଁଟା !

ଯାହାର ଗୋଟାଏ ବୋଲି ଫଟ ଏ ଘରେ ନାହିଁ । ଆଉ ତାରି ସଙ୍ଗେ ସଙ୍ଗେ ପଥର ପରି ଭାବଲେଶହୀନ ଗୋଟାଏ ଗମ୍ଭୀର ମୁହଁ ଦେଖିପାରନ୍ତି ମାଗିନାନୀ । ତାଙ୍କର ପୁତୁରାର ଯନ୍ତ୍ରଣାବହୁଳ ମନକୁ ବି ଦେଖିପାରନ୍ତି ନିରକ୍ଷର ମାଗିନାନୀ ! ହେଉପଛେ ଭାବଲେଶହୀନ ସେ ମୁହଁ— ସେ ମୁହଁ ଲୋକନାଥର !

ବାରମ୍ବାର ଗର୍ବରେ ଫୋଟି ହେଉଥିଲେ ମଧ୍ୟ ଆପଣା ପୁଅ ଲୋକନାଥର ସେହି ଗମ୍ଭୀର ମୁହଁକୁ ଚାହିଁ ଭରସିକରି କହି ପାରିଲେ ନାହିଁ ହରମିଶ୍ରେ ଦ୍ୱିତୀୟ ବିବାହ କଥା । ବିବାହ ପ୍ରସ୍ତାବ କହିବେ କହିବେ ହେଉ ହେଉ କେତେ ବେଗେ ଦିନ ଗଡ଼ି ପଡ଼ିଲ ।

ଲୋକନାଥର ଜୀବନ ଅଗଣାରେ ଓହ୍ଲାଇ ଆସିଲ ଅପରାହ୍ଣ । ଲଗ୍ନ ଘନେଇ ଆସିଲ ।

ବୋହୂ ଆସିବ ଏ ବଂଶକୁ । ହେଲେ ଲୋକନାଥ ପାଇଁ ନୁହେଁ ; ଲୋକନାଥର ଏକମାତ୍ର ପୁତ୍ର ନିରଞ୍ଜନ ପାଇଁ···

ସେହି ସୁଯୋଗ୍ୟ ନାତି ନିରଞ୍ଜନ ପାଇଁ ବୁଢ଼ା ବୟସରେ କମ୍ ପରିଶ୍ରମ କରି-ନାହାନ୍ତି ହରିମିଶ୍ରେ ?

ନିରଞ୍ଜନକୁ ବିବାହ ବଜାରରେ ନିଲାମ କରିବାର ସ୍ୱପ୍ନରେ ଯେତେବେଳେ ମାତି ଉଠିଥିଲେ ଲୋକନାଥର ମାମଲତିକାଙ୍କ ପିତା ହରିମିଶ୍ରେ ।

ସେତେବେଳେ ଏଇ ଅଘଟଣ ସତକୁ ସତ ଘଟିଲା !

ଟଳି ପଡ଼ିଲା ଆଭିଜାତ୍ୟ ।

ଚମତ୍କାର ସ୍ୱପ୍ନ ଦେଖୁଥିଲେ ହରିମିଶ୍ରେ ।

ଡେଣା ମେଲି ଉଡ଼ିଯାଉଥିବା ପରି ମଝିରେ ଶୋଭାପାଉଥିବା ହରିମିଶ୍ର ନାମ-ଲେଖା କୋଠାଘର ଉପରେ ପୁଣି ବୃହତ ମହଲ ଘର ହେବ ।

ମୂଳଦୁଆ ଟାଣ ଅଛି । ବୃନ୍ଦାବନ ଭାଙ୍ଗିଯିବ ନାହିଁ । ଆସିବ ଅମାପ ଯୌତୁକ, ଏକଲକ୍ଷ ଟଙ୍କା ।

ଲୋକନାଥ ବାଧ୍ୟ ପୁତ୍ର ।

ହରିମିଶ୍ରେ ଷୋଳ ପ୍ରତିଶତ ସମ୍ପୂର୍ଣ୍ଣ ଭାବରେ କରି ସାରିଥିଲେ ।

ଅଥଚ...

ଏ ସମସ୍ତ ଲୋଭନୀୟ ସମ୍ଭାବନାକୁ ବ୍ୟର୍ଥକରି ଯେତେବେଳେ ଏକାନ୍ତ ନିରାଡ଼ମ୍ବର ଭାବରେ ଲୋକନାଥ ପୁତ୍ରର ମନୋନୀତା ବଧୂକୁ ଏ ଘରକୁ ଆଣିଲେ, ସେତେବେଳେ ହରିମିଶ୍ରେ କ'ଣ ପ୍ରତିବାଦ କଲେ ନାହିଁ ?

ଆକୋଣରେ ଭାଙ୍ଗି ପଡ଼ିଲେ ନାହିଁ !

ସେତେବେଳେ ପ୍ରଥମ ଥରପାଇଁ ବହୁକାଳ ପରେ ଗମ୍ଭୀର ଲୋକନାଥ ଘୋଷଣା କରିଥିଲେ—"ଆଭିଜାତ୍ୟର ସଂଜ୍ଞା ଯୁଗେ ଯୁଗେ ବଦଳେ । ମାତ୍ର ଚିରନ୍ତନ ମୂଲ୍ୟବୋଧ ଅପରିବର୍ତ୍ତିତ ରହେ । ତାଙ୍କ ପୁତ୍ରବଧୂ ପଦ୍ମା ବିଦୁଷୀ, ସଦ୍‌ଗୁଣସମ୍ପନ୍ନା, ଅନୁପମା ! ସେ ସମ୍ଭ୍ରାନ୍ତ ଆଭିଜାତ୍ୟ ଥିବା ପରିବାରରୁ ବୋହୂ ଆସିଛନ୍ତି । ତାଙ୍କର ଧନ ନାହିଁ କିନ୍ତୁ ମନ ଅଛି, ସେ ଧନଠାରୁ ଅନେକ ବଡ଼ !

ସେଦିନ ବହୁକାଳ ପରେ ଛାତ୍ରବୃତ୍ତିର ଅପୂର୍ବ ଆନନ୍ଦରେ ବୋଧହୁଏ ସହସା ଏକାନ୍ତ ବନ୍ଦ ସେହି ବନ୍ଦ ଘରର କବାଟଟା ଖୋଲି ଦେଇଥିଲେ ଲୋକନାଥ !

ସେଠାନେ ସମସ୍ତେ ଆଶ୍ଚର୍ଯ୍ୟ ହୋଇ ଏହି ଗମ୍ଭୀର ମଣିଷଟାକୁ ବହୁକାଳ ପରେ ନୂଆକରି ଦେଖିଲେ...

ଆଉ ଦେଖିଲେ ପାଇପଡ଼ିଶା ମାନେ ବହୁଦିନରୁ ହଜିଯାଇଥିବା ସେ ହାସ୍ୟୋଜ୍ୱଳ ମୁହଁଟାକୁ... ସେ ମୁହଁ ଲୋକନାଥର !

ଆଉ ହରିମିଶ୍ରେ ?

ସେ ଅନୁଭବ କଲେ ସମ୍ଭାବନାର ଡେଣାଟେକ ଉଡ଼ିବାକୁ ଚାହୁଁଥିବା ପକ୍ଷୀମାନେ ହଠାତ୍ ଉଡ଼ିଗଲେ—

ଶୋଇବା ଘରେ ଘାରି ଯାଇଥିବା ଆଭିଜାତ୍ୟର ଶୋକର ସ୍ତୂପ ଆକାଶରେ ରହି ରହି ଖାଲି ହରିମିଶ୍ରେ ଗର୍ଜୁଥିଲେ ।

କିନ୍ତୁ···

ପରଲୋକଗତ ହରିମିଶ୍ରଙ୍କର ଶୋକାଚ୍ଛନ୍ନ ଦିନଟା ଯେ ଲୋକନାଥର ପୁନର୍ଜନ୍ମର ଦିନ । ତାଙ୍କର ପୁତ୍ର ବିକ୍ରମ ଯୌତୁକକୁ ଗୋଡରେ ଆଡ଼େଇ ଦେଇ ବଂଶର ତଥାକଥିତ ମିଥ୍ୟା ବୃନିୟାଦର ପ୍ରତିବାଦ କରି ଲୋକନାଥର ଅନିଚ୍ଛାକୃତ ପାପର ପ୍ରାୟଶ୍ଚିତ କରିଛି । ନିଜ ଜୀବନରେ ସାହସ ଅଭାବରୁ ଯାହା କରି ପାରି ନ ଥିଲେ ସେ ଯୁଗରେ ପିତୃଭକ୍ତ ଲୋକନାଥ; ଆଜି ଅପରିବର୍ତ୍ତିତ ପୃଷ୍ଠଭୂମିରେ ତାହା କରିପାରିଛି ତାଙ୍କର ପୁତ୍ର ବିକ୍ରମ—ଆପଣର ଅପୂର୍ଣ୍ଣ ଇଚ୍ଛା ପୂର୍ଣ୍ଣତା ଲାଭ କରିଛି ପୁତ୍ର ବିକ୍ରମ ମଧ୍ୟରେ । ଲୋକନାଥ ମୁକ୍ତିର ଆନନ୍ଦ ଅନୁଭବ କରୁଛନ୍ତି !

ପୁତ୍ର ମଧ୍ୟରେ ନିଜକୁ ଗମ୍ଭୀର ଭାବରେ ଅନୁଭବ କରୁଛନ୍ତି ଲୋକନାଥ । ଆଉ ଏକ ବିଷାଦକଣ୍ଟିତ, ଚିର ଉଜ୍ଜ୍ୱଳ ଅଭୁଲା ମୁହୂର୍ତ୍ତର ଅନୁକ୍ଷଣ ଆଲୋଡ଼ନ ତାଙ୍କର ସ୍ନାୟୁକେନ୍ଦ୍ରକୁ ବିଚଳିତ କରୁଛି । ସେହି ବନ୍ଦଘରର ସ୍ମୃତିଟାର ଅନୁକ୍ଷଣ କାଳ୍ପନିକ ସ୍ପର୍ଶସୁଖକୁ ସେ ଅସ୍ୱୀକାର କରିବେ କିପରି ?

ସେଦିନ କିନ୍ତୁ ଅସ୍ୱାଭାବିକ ଭାବରେ ଆପଣାର ଅତି ହାତ ପାହାନ୍ତାରେ ସେହି ବନ୍ଦଘରର ସ୍ମୃତିଟାକୁ ଦେଖି ସେହି ସଂଯମୀ ଧୈର୍ଯ୍ୟବାନ୍, ପିତୃଭକ୍ତ ପୁରୁଷ ଲୋକନାଥ ଏତେ ବିଚଳିତ ହୋଇ ପଡ଼ିଲେ କାହିଁକି ?

ସେହି ସହସାଲବ୍ଧ ପରମ ସମ୍ପଦ ପ୍ରାପ୍ତିର ଆନନ୍ଦରେ ଜୀବନର ଅପରାହ୍ନରେ ଗମ୍ଭୀର, ସଂଯମୀ ଲୋକନାଥ ଯଦି ଏକ ଅଭାବନୀୟ ଭ୍ରମ କରି ବସନ୍ତି; ତାଙ୍କୁ କ'ଣ କ୍ଷମା ଦିଆଯାଇ ପାରିବ ନାହିଁ ?

ଠିକ୍ ତ···

ବହୁ ସମୟ ଅନ୍ଧକାରରେ ରହିବା ପରେ ଯଦି ଆଲୋକ ହଠାତ୍ ଜଳିଉଠେ ତେବେ ଆଖି ଝାପସା ହୋଇ ଯିବନି କି ?

ଆଉ ହଠାତ୍ ଜଳିଉଠୁଥିବା ଆଲୋକ ମଧ୍ୟରେ ଯଦି ଜୀବନର ପରମ ଓ ଚରମ କ୍ଷଣର ସହସା ପୁନଃ ଆବର୍ତ୍ତନ ଘଟେ ତେବେ ?

ଅନୁକ୍ଷଣ ତରଙ୍ଗ ତୋଳୁଥିବା ଶବ୍ଦସମ୍ଭାର ଯଦି ନୂଆ 'ଚଳପଚଳ' ରୂପରେ ଧାଇଁଆସେ ତେବେ କ'ଣ ବିଚଳିତ ହେବେ ନାହିଁ ସ୍ଥିତପ୍ରଜ୍ଞ ଲୋକନାଥ ?

× × ×

ଅନ୍ଧକାର ସିନେମା ହଲ୍‌ରେ "ଆଛ ସିନେମା ।" ବହୁକାଳ ପରେ ଆଜ ଆସିଛନ୍ତି ଲୋକନାଥ ସିନେମା ଦେଖି ଅବଶ୍ୟ ବଲମ୍ବରେ । ସିନେମା ଆରମ୍ଭ ହୋଇଯାଇଛି । ପଥପ୍ରଦର୍ଶକ ହାତରେ ଟର୍ଚ୍ଚ ଦେଖି ନଇଦରେ ଆସି କର୍ତ୍ତୃପକ୍ଷଙ୍କ ନର୍ଦ୍ଦେଶିତ ଚୌକିରେ ବସିଗଲେ ଲୋକନାଥ । ଚଳଚ୍ଚିତ୍ରରେ ଅପୂର୍ବ ସ୍ମୃତିର ରୋମନ୍ଥନ । ତାରି ଭିତରେ ହଜି ଯାଇଥିବା ଜୀବନର ଖିଅଟିଏ ପାଇ ନିଜର ଅଜାଣତରେ ବୋଧହୁଏ ଆବେଗରେ ଅତୀତକୁ ଦଉଣ୍ଡୁଥିଲେ ଲୋକନାଥ···

ଆଉ ଏତିକବେଳେ ଯଦି ହଠାତ୍ ହଲ୍‌ର ଲାଇଟ୍‌ଟା ଜଳିଉଠେ ମଧ୍ୟାନ୍ତରର ସଙ୍କେତ ଦେଇ ତେବେ ???

ସେ ଉଜ୍ଜ୍ୱଳ ଆଲୋକ ମୁହାଁମୁହିଁ ହେବା କ'ଣ ଏତେ ସହଜ ?

ସେ ଉଜ୍ଜ୍ୱଳ ଆଲୋକରେ ମୁହାଁମୁହିଁ ହେବା କ'ଣ ଏତେ ସହଜ ? କୁମୁଦିନୀ ସେ ପ୍ରଶ୍ନବାଚୀର ସମ୍ମୁଖୀନ ହେଲେ ।

ନା—

ସେ ଚିରଉଜ୍ଜ୍ୱଳ ଆଲୋକରେ କୁମୁଦିନୀଙ୍କର ଚଷମା କାଚ ଦୋହଲି ଉଠିଲା । ହଠାତ୍ ଦେଖିଲେ କୁମୁଦିନୀ ବହୁ ଯୁଗ ପରେ ଜୀବନରେ ଦ୍ୱିତୀୟଥର ସିନେମାହଲ୍‌ରେ ତାଙ୍କ ପାଖ ଚୌକିରେ ବସିଛନ୍ତି ସିଏ, ସିଏ ଲୋକନାଥ ! କୁମୁଦିନୀର ସ୍ୱାମୀ ! କୁମୁଦିନୀ ସନ୍ତାନର ପିତା ।

ସେ ପ୍ରଖର ଉତ୍ତାପରେ କୁମୁଦିନୀର ଚଷମାକାଚ ସବୁ ଫାଟି ଚକ୍ତି ଝରିଲା ପରି ବୋଧ ହେଲା ।

ଅପୂର୍ବ ଆନନ୍ଦ ଯନ୍ତ୍ରଣା ମିଶ୍ରିତ ଅନାସ୍ୱାଦିତ ଏକ ବିଚିତ୍ର ଅନୁଭୂତିର କମ୍ପନରେ ସେ ଶୋଷାପଡ଼ିଲେ ଥରିଲେ । ଅସମ-ସାହସିନୀ, ନର୍ତ୍ତକୀ, ଅଧ୍ୟାପିକା କୁମୁଦିନୀ ହଠାତ୍ ଏ ଅଭାବନୀୟ ପରିବେଶରେ ନିଜକୁ ଏକାନ୍ତ ଅସହାୟ ବୋଲି ମନେକଲେ ।

ଚଳଚ୍ଚିତ୍ରର କାହାଣୀ ଭିତରୁ ଉଡ଼ି ଯାଉଥିବା ଆପଣା ଜୀବନ କ୍ୟାଲେଣ୍ଡରର ପୃଷ୍ଠାଗୁଡ଼ିକୁ ପ୍ରାଣ ପଣେ ଚେଷ୍ଟାକରି ମଧ୍ୟ ସେ ଓଲଟାଇ ଦେଇପାରୁ ନଥିଲେ ।

ଦୁଇଟି ଯୁଗ ଅତିବାହିତ ହୋଇଯାଇଛି ।

ସେହି ଦାଉ ଦାଉ ହୋଇ ଜଳୁଥିବା ହୋମାଗ୍ନି ପ୍ରଥମ ପ୍ରତିଶ୍ରୁତିର ସାକ୍ଷୀ । ଫସ୍ମୃତି ଓ ପରମ୍ପରାର ଚିରନ୍ତନ ବନ୍ଧନର ପ୍ରତୀକ ସେହି ଅଗ୍ନାଡ଼ୁଆ ସୂତା । ଆଉ ସେହି ଦାଉ ଦାଉ ଜଳୁଥିବା ହୋମାଗ୍ନି ପାଖରେ ନକଲି ସୁନା ଗହଣାର ସଜ୍ଜିତା କୁମୁଦିନୀର ଦୁର୍ବଳ ହାତଟା ଜଣେ ଅଜଣା ତରୁଣରେ ହାତ

ସନ୍ତୁତ ସେଦିନ ଛିନ୍ନହୋଇ ଯାଇଥିଲା । ସେ ବଳିଷ୍ଠ ତରୁଣ ଲୋକନାଥ କୁମୁଦିନୀଙ୍କୁ ଆଶ୍ରା ଦେଇପାରି ନ ଥିଲେ ଏକଥା ସତ୍ୟ କିନ୍ତୁ ସେହି ମର୍ମନ୍ତୁଦ ଲଗ୍ନ ଯେ କୁମୁଦିନୀର ଜୀବନରେ ଅଭୁଲା ପରମ ଲଗ୍ନ ଏକଥା କୁମୁଦିନୀଠାରୁ ଅଧିକ କିଏ ଜାଣେ ?

ଆପଣାର ଗ୍ରନ୍ଥ ଉପରେ ହାତରଖି ଅଧ୍ୟାପିକା କୁମୁଦିନୀ ମିଶ୍ର କ'ଣ କେବେ ଅସ୍ୱୀକାର କରିପାରିବେ ଏହି ଚିରନ୍ତନ ସତ୍ୟକୁ ? ତାଙ୍କର ଏ ଦୀର୍ଘ ବିଡ଼ମ୍ବିତ ଜୀବନରେ ପରମ ଓ ଚରମ କ୍ଷଣର ଆବିର୍ଭାବ ସେହି କ୍ଷୁଦ୍ର ଜୀବନର କେତୋଟି ମୁହୂର୍ତ୍ତର ପରିସର ମଧ୍ୟରେ ଯେ ସୀମାବଦ୍ଧ । ହୃଦୟର ନିଭୃତ କୋଠରିରେ ସେହି ବଳିଷ୍ଠ ତରୁଣର ଅବିରତ ପଦସଞ୍ଚରଣ ଧ୍ୱନିକୁ ସେ ଅସ୍ୱୀକାର କରିବେ କିପରି ?

ହଁ...

ଉତ୍ତରରେ କୁମୁଦିନୀ ମିଶ୍ର ସେ ଦୁର୍ବଳତାରୁ ମୁକ୍ତ ପାଇପାରି ନାହାନ୍ତି । କୁଚକ୍ରୀ ପିତାଙ୍କର ପ୍ରତାରଣାର ସ୍ଥାନକାଳକୁ ଲଙ୍ଘାଇବାକୁ ଯାଇ ଅସୀମ ସାହସିନୀ କୁମୁଦିନୀ ସେଦିନ ପଛକୁ ଫେରି ଚାହିଁ ନ ଥିଲେ ଏକଥା ସତ୍ୟ । ସେ ଫେରି ଆସିଥିଲେ ନିଃସ୍ୱ ବେଶରେ । ପାଦତଳର କ୍ଷେତ୍ର ବାଲିରେ ଆସ୍ଥା ହଜାଇ, ସାହସ କରି ଖୋଜିବାକୁ ଚାହିଁଥିଲେ ପାଦଥୋଇ ଠିଆ ହେବାପାଇଁ ମୁଠାଏ ମାଟି । ସମ୍ଭାବନାର ସାଂସେଠିକା ମାଟି । ଆଖିମେଲି ଦେଖି ନ ଥିଲେ ଆପଣାର ଆତ୍ମଜକୁ; ଯାହାକୁ ଶତ ଅଧିକ ମଧ୍ୟରେ ଦଶମାସ ପେଟରେ ଧରିଥିଲେ କୁମୁଦିନୀ ।

ନିର୍ବନ୍ଧନକୁ ତାଙ୍କଠାରୁ ଜୋର କରି କାଢ଼ିନେବା ପରେ ମନକୁ ଦୃଢ଼ କରିଥିଲେ କୁମୁଦିନୀ । ନିଜ ଗୋଡ଼ରେ ଠିଆ ହେବେ !

ଧୂପର ସୁରଭିରେ ସୁରଭିତ ସେହି ସ୍ମୃତି ! ମଧୁର ହଜିଲା ଦିନର ଅନୁଭୂତିକୁ ମନ କୋଠରିରେ ପୂରାଇ ଦେଇ ସେ ନିଷ୍ଠୁର ହାତରେ କୋଳପର ଚାବିଟାକୁ ମଧ୍ୟ ହଜାଇ ଦେଲେ ।

ବନ୍ଦ ହେଉ ସେ ଅଧ୍ୟାୟ...

ଜୀବନ ବିରାଟ...ବ୍ୟାପକ...ସୀମିତ ନୁହେଁ ।

ଆଦର୍ଶକୁ ଆଗରେ ରଖି ଆଗେଇବାକୁ ଚେଷ୍ଟା କରିଛନ୍ତି କୁମୁଦିନୀ । ସେ ଚାବିଟାକୁ ହଜେଇ ଦେଇ ନ ଥିଲେ, ପିତୃହରା ଗରିବ ଘରର ଝିଅ କୁମୁଦିନୀ ଏତେ ସଂଗ୍ରାମ ଭିତରେ ଏତେ ବାଟ ଆଗେଇ ଆସିପାରିଥାନ୍ତେ ???

ଚମ୍ପୁଲକୁଣ୍ଡାର ନୁଆଁଣିଆଁ ମାଟିପରୁ ଏବେ ସିଏ ଭଞ୍ଜନଗର ହୋଇଛି, ସେଠୁ ସେ ଆସି ପାରିଛନ୍ତି ଭଞ୍ଜବିହାର ଓଡ଼ିଆ ବିଭାଗ ପର୍ଯ୍ୟନ୍ତ ! କିଛି କମ୍ କଣ୍ଟକିତ ପଥ ତ ଏ ନୁହେଁ...

କେତେ ରକ୍ତକ୍ଷରଣର ଚିହ୍ନ ଏବେ ବି ରହିଛି ।

ସେଦିନ କିନ୍ତୁ ବହୁକାଳ ପରେ ଅକସ୍ମାତ ଅନୁଭବ କଲେ କୁମୁଦିନୀ ସେ ବନ୍ଧ ଘରର ଗ୍ରନ୍ଥିଟା ସେ ହଜେଇ ଦେଇପାରି ନାହାନ୍ତି !

ଅତୀତକୁ ମୋଡ଼ିମାଡ଼ି ଝିଙ୍କି ଛିଣ୍ଡେଇ ପୋଲେଇ ଫିଙ୍ଗି ଦେଇ ପାରି ନାହାନ୍ତି । ତାଙ୍କର ବେପଥୁ ହାତରେ ହଜିଯାଇ ପାରି ନ ଥିବା ଗ୍ରନ୍ଥିଟା ଅନୁକ୍ଷଣ ସ୍ପନ୍ଦନ ସୃଷ୍ଟି କରୁଛି । ଆଶା:ଦୀପ ଜାଳୁଛି । ଲୋଭ ସଂଗ୍ରହ କରୁଛି ଚିତ୍ତରେ ।

ହାତ ବଢେଇବାକୁ ମନ ହାଇଁ ପାଇଁ ହେଉଛି !

କ'ଣ କରିବେ କୁମୁଦିନୀ ?

ସମସ୍ତ ଶକ୍ତି ଦେଇ ଏ ହଠାତ ପୋଛି ଆସୁଥିବା ସିନେମା ହଲର ଅନ୍ଧାର ଭିତରେ ସେ ଗ୍ରନ୍ଥିଟାକୁ ସେ ଖୁବ୍ ଦୂରକୁ ଫିଙ୍ଗି ଦେଇ ପାରିବେନି ସେ ??

ପାରିବେ କି ?

ସିନେମା ହଲରେ ନିଘଞ୍ଚ ଅନ୍ଧକାର । ମଧ୍ୟାନ୍ତରର ପରିସମାପ୍ତି ଘଟିଛି । ନାଃତ୍ରବ୍ଧରେ ବହୁକାଳ ଲୋକନାଥ କୁମୁଦିନୀର ଅଙ୍ଗୁଳିହାତର କରୁଣ ଆବେଦନଭୋଳା ଅପୂର୍ବ ସ୍ପର୍ଶ ଅନୁଭବ କଲେ ବହୁ ଯୁଗପରେ ! ସରୀସୃପ ପରି ଲିକ୍ ଲିକ୍ ଅଙ୍ଗୁଳି ଭର୍ତ୍ତି ତାଙ୍କର ବହୁ ଦିନରୁ ଅତିକ୍ରାନ୍ତ ଯୌବନର ବେପଥୁ ସ୍ପର୍ଶ ଅଜାଣତରେ କେଉଁ ମାୟାବଳରେ ବହିଆସିଲା ।

କୁମୁଦିନୀ ରୋମାଞ୍ଚିତ ହେଲେ ।

ଅତୀତର ସେହି ଏକାନ୍ତ କ୍ଷୁଦ୍ର ଜୀବନର କେତୋଟି ଭଙ୍ଗା ଭଙ୍ଗା ଅସଜଡ଼ା କଥାର ତରଙ୍ଗ ଭିତରେ ସେମାନେ ଅକସ୍ମାତ ଚକାଭଉଁରୀ ଖେଳିବାକୁ ଲାଗିଲେ ।

ଅନ୍ଧକାର ଭିତରେ ମଣିଷ ନିଜକୁ ମେଲାଇ ଦେଇ ପାରେ, ବୁଡ଼ାପହଁରା ଦେଇପାରେ, ସ୍ମୃତିର ଅତଳ ସାଗରରୁ ମୁକ୍ତା ଆହରଣ କରିପାରେ···

ଲୋକନାଥର ଚିର ଉପବାସୀ ଅନ୍ତର ଖୋଜୁଥିଲା ସେ ଅନ୍ଧକାରରୁ ଅମୃତ କଣିକାଏ, ମୁକ୍ତା ଖଣ୍ଡେ ।

ଆଉ ନିରସ୍ମୃ କୁମୁଦିନୀ କ'ଣ ପ୍ରାଣ ଖୋଲି ଖୋଜୁ ନ ଥିଲା ?

ଏମିତି ଟିକିଏ ଆଶ୍ରୟ ?

କିନ୍ତୁ··

ଏ ଉଜ୍ଜ୍ୱଳ ଆଲୋକରେ !!!

ସିନେମା ସରିଗଲା, ହଲ୍‌ରେ ଆଲୋକ ଜଳି ଉଠିଲା । ହଠାତ୍ ସ୍ତମ୍ଭିତଭ ହୋଇ ଉଠିଲେ ପ୍ରୌଢ଼ ଲୋକନାଥ ବାବୁ ଓ ଅଧ୍ୟାପିକା ଡକ୍ଟର କୁମୁଦିନୀ ।

ଚଳଚ୍ଚିତ୍ରର ପରିସମାପ୍ତି ପରେ ସିନେମା କର୍ତ୍ତୃପକ୍ଷଙ୍କ ନିର୍ଦ୍ଦେଶିତ ପାଖାପାଖି ଦୁଇଟି ଚୌକି ଛାଡ଼ି ସେମାନେ ଠିଆ ହେଲେ । ଚଷମା କାଢ଼ି ଦୁହେଁ ଆଖି ପୋଛିଲେ । ହଠାତ୍ ସେ ଜନଗହଳି ମଧ୍ୟରେ ସମସ୍ତ ଶକ୍ତି ସଞ୍ଚୟ କରି ନୂଆ ହୋଇ ଶୃଙ୍ଖଳିତ ହୋଇଥିବା ଗମ୍ଭୀର ଲୋକନାଥ ଗୋଟାଏ ଏକାନ୍ତ ଦୁଃସାହସିକ କାର୍ଯ୍ୟ କରି ବସିଲେ । କୁମୁଦିନୀଙ୍କ ହାତରେ ଗଭୀର ସ୍ପର୍ଶ ଦେଇ ସେ ହୁଏତ ନିଃଶବ୍ଦରେ କହୁଥିଲେ ଗୋଟିଏ କଥା—"ଆମେ କ'ଣ ଆଉ ଫେରି ଯାଇପାରିବାନି ସେ ହଜିଲା ଦିନକୁ ?"

ଆଉ କୁମୁଦିନୀଙ୍କର ଅନ୍ତରରେ ସେହି ସ୍ୱର କ'ଣ ତରଙ୍ଗ ତୋଳୁ ନ ଥିଲା ???

